ରବି ପୁହାଣଙ୍କ ଶ୍ରେଷ୍ଠ ଗଳ୍ପ
(ଗଳ୍ପ ସଂକଳନ)


ଗାଳ୍ପିକ : ରବୀନ୍ଦ୍ର ନାଥ ପୁହାଣ

ପ୍ରକାଶିକା : ଅନସୂୟା ଦାଶ
ଚିତ୍ରୋତ୍ପଳା ପବ୍ଲିକେଶନ୍ସ
ବଟେଶ୍ୱର, ସାଲେପୁର, କଟକ-୭୫୪୨୦୨

ପ୍ରକାଶ କାଳ : ଅଗଷ୍ଟ ପନ୍ଦର-୧୯୯୬

ପ୍ରଚ୍ଛଦ : ରଣଜିତ ପରିଜା

ମୁଦ୍ରକ : କେଶବ ଚରଣ ରଥ
ପ୍ରକାଶ ପ୍ରିଣ୍ଟର୍ସ, କଟକ-୯

ମୂଲ୍ୟ—ପଞ୍ଚାବନ ଟଙ୍କା ମାତ୍ର

RABI PUHANAKA SRESTA GALPA

Writer : **Rabindra Nath Puhan**

Publisher : **Anasuya Dash**
**Chitrotpala Publications**
Bateswar, Po. Salipur, Cuttack.
Phone : 0671-742325

1st Edition : August 15th 1996

Price : Rs. 55/- Only

( I.S.B.N.—81—86556—00—1 )

## 'ରବି ପୁହାଣଙ୍କ ଶ୍ରେଷ୍ଠ ଗଳ୍ପ'ର

# ମୁଖବନ୍ଧ

**କିଶୋରୀ ଚରଣ ଦାସ,**
ସଭାପତି, ଓଡ଼ିଶା ସାହିତ୍ୟ ଏକାଡ଼େମୀ

'ରବି ପୁହାଣଙ୍କ ଶ୍ରେଷ୍ଠ ଗଳ୍ପ'କୁ ମୁଁ ଆନ୍ତରିକ ସ୍ୱାଗତ ଜଣାଉଛି । ତା' ସହିତ ମୁଁ ତାଙ୍କୁ ପଚାରିବାକୁ ବାଧ୍ୟ ହେଉଛି ଯେ ଏତେଦିନକେ ସେ ବହିଟିଏ ଛପାଇବାର ପ୍ରଯତ୍ନ କରିଛନ୍ତି । ସେ ନିୟମିତ ଭାବରେ ମଧ୍ୟ ଗଳ୍ପ ଲେଖି ଆସିଛନ୍ତି ବୋଲି ମୋର ମନେ ହେଉନାହିଁ । କାରଣ ତା'ହେଲେ ସେ ଅଜାଡ଼ି ହୋଇ ପଡ଼ୁଥିବା ସର୍ଜନାର ସୁଅକୁ ଥରକୁ ଥର କେଉଁ ଏକ ନିର୍ଦ୍ଦିଷ୍ଟ ସୀମା ସରହଦ ମଧ୍ୟରେ ନିର୍ଣ୍ଣିତ ନ କରି ରହିପାରି ନ ଥାଆନ୍ତେ । ଅବଶ୍ୟ ସେଥିର କିଛି କାରଣ ଥିବ । ସମ୍ଭବତଃ ସେ ସୃଜନର ତାଡ଼ନାକୁ ଏଡ଼ାଇ ଦେବାକୁ ଚେଷ୍ଟା କରୁଥିଲେ, ନାନାଦି ଦୁଃଖ, ବିରାଗ ଅଥବା ଅନାସ୍ଥାଭାବର ବଶବର୍ତ୍ତୀ ହୋଇ । ସେହେତୁ ଜଣେ ବୟୋଜ୍ୟେଷ୍ଠ ଲେଖକ ହିସାବରେ ମୁଁ ତାଙ୍କୁ ଏକ ଭୟଙ୍କର ସତ୍ୟ ଶୁଣାଇବାର ଅନୁମତି ମାଗୁଛି । ଯାହା ମୁଁ ବାରମ୍ବାର ଅନୁଭବ କରିଛି ମୋ ନିଜ ଜୀବନରେ । ତାକୁ ମାତ୍ର ଆପଣ କହିପାରି ଅବା ଲେଖକୀୟ ଆସ୍ପର୍ଦ୍ଧା । ତା'ର ମୂଳକଥା ହେଲା ଏଇ ଯେ ମୁଁ କୌଣସି ପ୍ରହାରକୁ ଡରେନାହିଁ, ତାହା ବିଧାତାର ହେଉ ବା ସମାଜର । କାରଣ ମୁଁ ତାକୁ ଗପଟିଏ ବା ଗୀତଟିଏ କରି ଥୋଇ ଦେଇ ପାରିବି ଏବଂ 'ହେଇ ଦେଖ, ମୁଁ ଜିତିଗଲି' ବୋଲି କହି ପାରିବି । ଜୀବନର ପ୍ରତିଟି ସନ୍ଧିକ୍ଷଣରେ ଆପଣ ଏହିପ୍ରକାର 'ବିଜୟ' ହାସଲ କରନ୍ତୁ ଏବଂ ଆପଣଙ୍କ ଲେଖନୀକୁ କଦାପି ଶୋଇ ପଡ଼ିବାକୁ ଦିଅନ୍ତୁ ନାହିଁ, ମୁଁ ଏହି ଶୁଭକାମନା ଜଣାଉଛି ଏହି ତରୁଣ ଲେଖକଙ୍କ ପାଇଁ । କେବଳ ତାଙ୍କ ନିଜ ଭଲ ପାଇଁ ନୁହେଁ । ଆମ ସାହିତ୍ୟର ସମୃଦ୍ଧି ପାଇଁ ମଧ୍ୟ । କାରଣ ତାଙ୍କର ଏହି ଗଳ୍ପଗୁଡ଼ିକରେ ମୁଁ ତାଙ୍କ ଲେଖକ-ମାନସର କେତୋଟି ପରିଚୟ ପାଇଲି, ଯାହା ମୋତେ ବିଶେଷ ଭାବରେ ଆକୃଷ୍ଟ କରିଛି ଏବଂ ମୋର ବିଶ୍ୱାସ ଯେ ତାହା ଆଧୁନିକ ମନନଶୀଳ ପାଠକ ପାଠିକାମାନଙ୍କୁ ମଧ୍ୟ ଯଥାବିଧି ଆନନ୍ଦ ଦେଇ ପାରିବ । ତାହା ସଂକ୍ଷେପରେ ଏହିପ୍ରକାର :

୧—ମଣିଷର ମନ ଏକ ପରସ୍ପର ବିରୋଧୀ ଏବଂ ଜଟିଳ ସତ୍ତା, ତେଣୁ ସହଜେ ତା' ଉପରେ 'ଭଲ' କି 'ଖରାପ'ର ମୋହର ବାଡ଼େଇ ଦେଇ ହେବନାହିଁ ଏହା ଚିନ୍ତାପ୍ରସୂତ ବିଶ୍ୱାସ । ସେହି ପରିପ୍ରେକ୍ଷୀରେ ଆଜିକାର ହାଇଫାଇ ସଭ୍ୟ ଓ ସଚେତନ ମଣିଷକୁ 'ହିପୋକ୍ରିଟ୍' କୁହାଯାଇ ପାରେ, ଯାହା ତାଙ୍କ ପ୍ରଥମ ଗଳ୍ପର ଶୀର୍ଷକ । କିନ୍ତୁ ମର୍ଯ୍ୟାଦାର ସହ ବଞ୍ଚିବାକୁ ହେଲେ, ନାନାଦି

ବିରୋଧୀ ଦୋଷଗୁଣ ସଂଯୁକ୍ତ ଗୋଟାଏ ପାନେ ତିଆରି କରି ଏଇଥିରେ ହିଁ ମୋଟ ହିତ ବୋଲି ଭାବିବା ଛଡ଼ା ଆଉ କ'ଣ ଗତି ଅଛି ତା'ର ? ତେଣୁ ଆମେ 'ହିପୋକ୍ରିଟ୍'ର କେଳାଙ୍କୁ ନା କେଳୁଣୀକୁ, ଫାଦର୍ ମିଷ୍ଟର ରବର୍ଟଙ୍କୁ ନା ତାଙ୍କର ସ୍ତ୍ରୀ କନ୍ୟାମାନଙ୍କୁ ଦୋଷ ଦେବା ? ନା, କାହାରିକୁ ଦୋଷ ଦେଇ ହେବନାହିଁ । ସେମାନେ ଦାୟୀନାହିଁ; ଏହା ହିଁ ଆଧୁନିକ ମଣିଷର ଦଶା ।

୨—କିନ୍ତୁ ଏହି ପାଠକପ୍ରବଣ ମାନସିକତା ଯେତେ ଦାୟୀନାହିଁ ହେଲେ ମଧ୍ୟ ସ୍ୱାସ୍ଥ୍ୟାସ୍ପଦ ହୋଇପାରେ । ଯେହେତୁ ଶ୍ଳେଷ ଆଧୁନିକ ସାହିତ୍ୟର ଏକ ବିଶିଷ୍ଟ ରସ ରୂପେ ପରିଗଣିତ । 'ହିପୋକ୍ରିଟ୍'ର ନାୟକ ଏବଂ ରଫିକ୍ ସ୍ପଷ୍ଟ ଯେମିତି କାନ୍ଦୁଛନ୍ତି, ହେଲେ ଦୃଢ଼ତାର ସହ କହି ଚାଲିଛନ୍ତି ଯେ କାନ୍ଦିବାଟା ନନ୍‌ସେନ୍‌ସ । 'ଅପଲଗ୍ନ'ର ନାୟକ କହିଲା ପରି, "ନିଜ ନିଜନର ପ୍ରତିଧ୍ୱନି ନିଜକୁ ଅଡ଼ୁଆ ଲାଗେ", ସେଇଥିପାଇଁ ବୋଧହୁଏ ଏଇ ବିଫଳ ସର୍ତ୍ତସର ବାହାନୂଆ । ସେହି ହିସାବରେ ମନକୁ ଆସେ ଯେ 'ଶିକାର' ଗପରେ ଲେଖକ କ'ଣ ପ୍ରକୃତରେ କହିବାକୁ ଚାହାଁନ୍ତି ଯେ ଶେଷକୁ ବେଗମ୍ ରସିଦ୍ ତାଙ୍କ ଉତ୍ତେଜନା ଜନିତ ଦୁଃସାହସ ପାଇଁ ଭଗବାନଙ୍କଠାରେ କ୍ଷମା ମାଗୁଥିଲେ, ନା ସେ ଭିତରି ମନରେ ଆଶା କରୁଥିଲେ ଯେ ଏଭଳି ଦୁଃସାହସ ବିଫଳ ନ ହେଉ ଭବିଷ୍ୟତରେ ?

୩—ତେବେ କେତେକ 'ହିପୋକ୍ରିଟ୍' ଅଛନ୍ତି ଯାହାଙ୍କୁ ଦାୟୀନାହିଁ ବୋଲି କହି ହେବନାହିଁ । କାରଣ ସେମାନଙ୍କର ପାଲିସ୍ ଅନିବାର୍ଯ୍ୟ ନୁହେଁ । ସେମାନେ ଅସହାୟ ନୁହଁନ୍ତି, ହେଲେ ଠାକୁରଙ୍କୁ ଚାହାନ୍ତି ନାହିଁ କି ମଣିଷକୁ ଏବଂ ଉଭୟଙ୍କୁ ଆପଣା ସ୍ୱାର୍ଥର ଉପକରଣ ବୋଲି ମନେ କରନ୍ତି । ହେଲେ ସଚେତନ ଦେଖଣାହାରିମାନେ ମଧ୍ୟ ତାଙ୍କ 'ପୋଷା କୁକୁର ପରି ମାଲିକର ଡାକରେ ଲାଞ୍ଜ ହଲେଇ ହଲେଇ' ତାଙ୍କର ଅନୁଧାବନ କରିବାକୁ ଭଲ ପାଆନ୍ତି, କୁଏତ ସୁବିଧାବାଦୀ ମନୋବୃତ୍ତି ହେଉ, ଏହା ହିଁ ଦୁଃଖର ବିଷୟ । 'ମନ୍ଦିର' ନାମକ ଏହି ସାର୍ଥକ ଗପର ଶେଷ ଧାଡ଼ିଟି ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ଦେଖଣାହାରି ହାରି ମାନିବା ଲୋକ ନୁହେଁ । ସେ ତଥାପି ନିଜକୁ ଆଶ୍ୱାସନା ଦେଉଛି ତା'ର ବୌଦ୍ଧିକ ସମ୍ବେଦନା ପାଇଁ । କହୁଛି—"ଚାରିଜଣଙ୍କ ମଧ୍ୟରୁ କେବଳ ମୁଁ ମନ୍ଦିରରୁ ଫେରୁଥିଲି ।"

୪—ମାନସିକ ଯନ୍ତ୍ରଣା ଓ ଅର୍ଥନୈତିକ ଦୁରବସ୍ଥା ହାତ ଧରାଧରି ହୋଇ ଆସିବାକୁ ଭଲ ପାଆନ୍ତି, ଏକ ଆନର ପରିପୂରକ ପରି, ଇଏ ମଧ୍ୟ ଅନ୍ୟତମ ବାସ୍ତବ ବକ୍ତବ୍ୟ ଏହି ଗଳ୍ପଗୁଡ଼ିକରେ, ବିଶେଷତଃ ଆମର ଏହି

'ବିକାଶଶୀଳ' ଦେଶର ପୃଷ୍ଠଭୂମିରେ । ବୋଧହୁଏ 'ହିପୋକ୍ରିଟ୍' ଗପର ନାୟକ ଏତେ ଯନ୍ତ୍ରଣା ଭୋଗୁ ନ ଥାଆନ୍ତା, ଯଦି ସେ ସ୍ତ୍ରୀଙ୍କ ଶରୀରେ ଠାକ ଯାଇଥାଆନ୍ତା କେଉଁଠି, 'ଅଫଲଗ୍ନ'ର ନିବେଦିତା ଯେଉଁ କୁକର୍ମଟି କଲା ତା'ର କାରଣ ତା'ର ଟଙ୍କା ଦରକାର ଥିଲା, 'ଜୀବନ'ର ଶିକ୍ଷିତ ଓ ଶିକ୍ଷିତା ତରୁଣ ତରୁଣୀ ତାଙ୍କର ଆର୍ଥିକ ଦୁରବସ୍ଥାକୁ ଯୌନ ଉପଭୋଗ କରିଥାରେ ଜିଣିବାକୁ ଚାହୁଁଥାନ୍ତି ବୋଲି ମନେହୁଏ, ହିଂସା ଅଥବା ଅର୍ଥଲୋଭର ଇନ୍ଧନ ଯୋଗାଇ, 'ଅନ୍ଧାର'ରେ ତରୁଲତାର ପ୍ରତ୍ୟାଖ୍ୟାନ ଅଥବା ସ୍ୱାମୀଙ୍କର ଶରୀରେଟ୍ ଲେଟର କେଉଁଟା ଅଧିକ ଦୁଃଖଦାୟକ ବୋଲି କହି ହେବନାହିଁ ଏବଂ 'ଶଳା ବୁଢ଼ି ଆଟା'ରେ ତଥାକଥିତ ବିପ୍ଳବୀ କାରଣୀ କେମିତି ହାରି ମାନିବାକୁ ବାଧ୍ୟ ହେଲା, ତାହା ମଧ୍ୟ ଏକ ଆଧୁନିକ ଟ୍ରାଜେଡି ।

ଭାଷାର ପ୍ରବାହ ପ୍ରାୟଶଃ ସ୍ୱଚ୍ଛନ୍ଦ । କେତୋଟି ଧାଡ଼ି ବିଶେଷ ଭାବରେ ମୋ ଦୃଷ୍ଟିକୁ ଆସିଛି, କାରଣ ତାହା କେବଳ ବର୍ଣ୍ଣନାତ୍ମକ ନୁହେଁ, ମଧ୍ୟ ବ୍ୟଞ୍ଜନାତ୍ମକ, ଉପସ୍ଥିତ ଭାବଧାରାକୁ ଖାପ୍ ଖାଇଲା ପରି । ଯଥା : ଝଡ଼ ସହର ବକ୍ଷରେ ନାଚକୁଦି ଚାଲି ଯାଇଥିଲା ଗୋଟିଏ କୁମାରୀ କନ୍ୟାକୁ ପ୍ରଥମ ସମ୍ଭୋଗ କଲାପରି···"ସକାଳଟା ଖୁବ୍ ଆକର୍ଷଣୀୟ ହୋଇ ଉଠିଛି । ପକ୍ଷୀମାନେ ଚିତ୍କାର କରି ଉଡ଼ି ଯାଉଛନ୍ତି । ଚତୁର୍ଦ୍ଦିଗରେ ଅନେକ ରଙ୍ଗୀନ୍ ଗ୍ରେଟ ଗ୍ରେଟ କୀଟ"···ବର୍ଷାଟା କିଛିକ୍ଷଣ ପୂର୍ବେ ହୋଇଯାଇ ପାଗଟା ଏକ ଶାନ୍ତ କିଶୋରୀ ପରି ନମ୍ର ଥିଲା । ଆକାଶଟା ସନ୍ନିପାତ ରୋଗୀ ପରି ଚାଦରି ଘୋଡ଼େଇ ହୋଇ ଶୋଇ ପଡ଼ିଥିଲା । (ପଞ୍ଚ ପରିବର୍ତ୍ତନ ପରେ) ଆମକୁ ଅନେକ ପଥ ଯିବାକୁ ପଡ଼ିବ, ସଭ୍ୟତାର ନଗରୀରେ ପହୁଞ୍ଚିବା ପାଇଁ । ତେଣୁ ଆମେ ପାଦର ଗତି ଦ୍ରୁତ କରିଦେଇ ଛତା ଖୋଲିଲୁ, କାରଣ ପାଗଟା ବିସ୍ତୃତା କୁମାରୀ କନ୍ୟାପରି 'ହିଷ୍ଟିରିୟା' ରୋଗରେ ଆକ୍ରାନ୍ତ ହୋଇ ସାରିଥିଲା ଏବଂ ବର୍ଷା ଆରମ୍ଭ ହୋଇ ସାରିଥିଲା ।" ଇତ୍ୟାଦି ।

ସମୀକ୍ଷକ ଦୃଷ୍ଟିରୁ ଦେଖିବାକୁ ହେଲେ କେତୋଟି ଦୋଷତ୍ରୁଟି ମଧ୍ୟ ଆଖିରେ ପଡ଼ିବ; କିନ୍ତୁ ତାହା ନଗଣ୍ୟ । ଲେଖକ ଲେଖିକାମାନେ ବହିଟିକୁ ପଢ଼ନ୍ତୁ ଏବଂ ଲେଖକ ଆହୁରି ଆହୁରି ଲେଖନ୍ତୁ ଓ ତାକୁ ବହି ଆକାରରେ ପ୍ରକାଶିତ କରନ୍ତୁ; ତା'ହେଲେ ଆଦାନ ପ୍ରଦାନ କରିଆରେ ତଥା ଏକ ବିଚକ୍ଷଣ ଲେଖକୀୟ ଦାୟିତ୍ୱଶୀଳତା ହେତୁ ସେଗୁଡ଼ିକ ଆପେ ଆପେ ମଉଳିଯିବ ବୋଲି ମୋର ବିଶ୍ୱାସ ।

ଝଟବନସାହି,
କଟକ-୧

**କିଶୋରୀ ଚରଣ ଦାସ**
୧୬ ଜୁଲାଇ ୧୬

# ମାଧ୍ୟମରୁ ମଧ୍ୟସ୍ଥ

ସେ ୧୯୬୫ ସାଲର କଥା । ଗଙ୍ଗାଧର ମେହେର ମହାବିଦ୍ୟାଳୟ ପ୍ରାକ୍ ବିଶ୍ୱବିଦ୍ୟାଳୟ ବିଜ୍ଞାନ ଶ୍ରେଣୀର ଛାତ୍ର-ଛାତ୍ରୀମାନଙ୍କ ସହିତ ନୃସିଂହନାଥ ପୀଠକୁ ବଣଭୋଜିରେ ଯାଇଥିବାବେଳେ ବହୁ ସହପାଠୀଙ୍କ ସହିତ ଜଣେ ଅନ୍ତରଙ୍ଗ ସହପାଠୀ ଆହୁରି ଅନ୍ତରଙ୍ଗ ଭାବେ ଭାବ ବିହ୍ୱଳିତ ହୋଇ ଅନେକ ସ୍ୱପ୍ନର ପସରାମାନ ମେଲି ଦେଇଥିଲି । ତା' ଭିତରେ ମୁଁ ଜଣେ ସ୍ରଷ୍ଟାର ସ୍ୱରୂପ ଆବିଷ୍କାର କଲି । ସ୍ୱଭାବତଃ ମୁଁ ଅତି ଛୁଆବେଳୁ କବିତାର ପୂଜାରୀ ଥିଲି । ଅନେକ କବିତା ଲେଖିଥିଲି । ଦୈନିକ ପ୍ରଜାତନ୍ତ୍ରର 'ମୀନାବଜାର', ଦୈନିକ ମାତୃଭୂମିର 'କିଶୋର ଫଉଜ', ଦୈନିକ କଳିଙ୍ଗର 'ଉଦୟଭାନୁ' ଇତ୍ୟାଦିରେ ମୋର ଲେଖା ବାହାରି ଯାଉଥାଏ । ଗଙ୍ଗାଧର ମେହେର ମହାବିଦ୍ୟାଳୟରେ ପଦାର୍ପଣ କରି ଏକ ସାରସ୍ୱତ ସତ୍ସଙ୍ଗ ଲାଭକଲି 'ଉଦୟନ ସାଂସ୍କୃତିକ ଆଲାପନୀ' ମାଧ୍ୟମରେ । କବି ଗୋପାଳ ରଥ, ପ୍ରଫୁଲ୍ଲ ତ୍ରିପାଠୀ, ଗାଳ୍ପିକ ପୂର୍ଣ୍ଣାନନ୍ଦ ଦାଣୀ ପ୍ରମୁଖ ସ୍ରଷ୍ଟାମାନଙ୍କ ସାନ୍ନିଧ୍ୟ ଲାଭର ସୁଯୋଗ ମିଳିଲା । ସେଦିନ ନୃସିଂହନାଥରେ ହେଉଥିବା ବଣଭୋଜି ଭିତରେ ଆବିଷ୍କାର କରିଥିବା ସ୍ରଷ୍ଟା, ଆଜିର ଏଇ ଗଳ୍ପ ସଂକଳନର ସୃଷ୍ଟିକର୍ତ୍ତା ମୋର ଅନ୍ୟତମ ଅନ୍ତରଙ୍ଗତମ ବନ୍ଧୁ ରବି ପୁହାଣ ।

'ଉଦୟନ ସାଂସ୍କୃତିକ ଆଲାପନୀ'ର ବୈଠକମାନଙ୍କୁ ତାକୁ ଡାକିଛି । ସାହିତ୍ୟ ସଭାମାନଙ୍କରେ ଯୋଗ ଦେଇ ସମ-ସ୍ରଷ୍ଟାମାନଙ୍କ ସହ ଭାବର ଆଦାନ-ପ୍ରଦାନ ପାଇଁ ପ୍ରବର୍ତ୍ତାଇଛି; ମାତ୍ର ରବି କୌଣସି ସଭା, ସମିତି, ସମାବେଶକୁ ଯାଏନା; କିନ୍ତୁ ନିଜ ସୃଷ୍ଟିର ସୌରଭରେ ନିଜେ ହିଁ ହଜି ଯାଇଥାଏ । ମୁଁ ଆଉ ସହି ପାରିଲି ନାହିଁ । ତା'ର ଓଡ଼ିଆ ଅକ୍ଷରଗୁଡ଼ିକ ଏତେ ଭଲ ନ ଥିଲା । ତେଣୁ ମୁଁ ତା'ର ଗୋଟିଏ ଗଳ୍ପକୁ ନିଜ ଅକ୍ଷରରେ ଲେଖି ଦୈନିକ ପ୍ରଜାତନ୍ତ୍ରକୁ ପଠାଇଦେଲି । ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଅଳ୍ପ କିଛି ସପ୍ତାହ ପରେ ତା'ର ସେ ଗଳ୍ପଟି ପ୍ରଜାତନ୍ତ୍ରରେ ପ୍ରକାଶିତ ହୋଇଗଲା । ତାହା ହିଁ ଥିଲା ରବିର ପ୍ରଥମ ପ୍ରକାଶିତ ଗଳ୍ପ ଏବଂ ତାରିଖ ଥିଲା ୧୫ ଅଗଷ୍ଟ ୧୯୬୮ । ସେ ଗଳ୍ପଟି ଏଇ ସଂକଳନର ଶେଷ ଗଳ୍ପ 'ଶେଫାଳି ଓ ହେନାର

ଗଳ୍ପ' । ୧୯୬୮ରୁ ୧୯୯୭—୨୮ ବର୍ଷର ବ୍ୟବଧାନ । କିନ୍ତୁ ମଉଳି ଯାଇନାହିଁ ତା' ସୃଷ୍ଟିର ସ୍ନିଗ୍ଧ ବାସ୍ନା ।

ଏଇପରି ଭାବେ ଗୋଟିଏ ବହେମିଆନ୍ ସ୍ରଷ୍ଟା ମାନସକୁ ଛାପା ଅକ୍ଷର ଭିତରେ ବନ୍ଦୀ କରିବାର ପରିକଳ୍ପନା କାଳବେଳକୁ ସେ ଲେଖମା ଛାଡ଼ିଦେଲା । କାରଣ ପଚାରିଲେ କହେ—"ଯେଉଁ ଫୁଲ କେବଳ ବଗିଚାରେ ଫୁଟେ, ତାକୁ ହିଁ ତୁମେ ସବୁ କ'ଣ ଫୁଲର ସଂଜ୍ଞା ଦେବ ? ଆଉ ଯିଏ ଅପନ୍ତରାରେ ଅନ୍ୟର ଅଲକ୍ଷ୍ୟରେ ଫୁଟେ, ସେ କ'ଣ 'ଫୁଲ' ପଦବାଚ୍ୟ ନୁହେଁ ?"

କିନ୍ତୁ ମୁଁ ଛାଡ଼ିବାର ପାତ୍ର ନ ଥିଲି । ଦୀର୍ଘଦିନ ହେବ ସମ୍ବଲପୁର ଛାଡ଼ି ଆସିଥିଲେ ବି ୧୯୮୭ ସାଲରେ ହଠାତ୍ ସମ୍ବଲପୁରରେ ପହଞ୍ଚି ତା'ର ବିରୋଧ ସତ୍ତ୍ୱେ ଅନେକ ପ୍ରକାଶିତ ଗଳ୍ପମାନ (ଯାହା ସେ ଅବଶ୍ୟ ସାଇତି ରଖିଥିଲା) ଜବରଦସ୍ତ ଗଣ୍ଠିଲି ବାନ୍ଧି କଟକ ନେଇ ଆସିଲି ମୁଁ । ବିନୋଦ-ବିହାରୀସ୍ଥ ଜଣେକ ବନ୍ଧୁ ପ୍ରକାଶକଙ୍କୁ ଦେଇଥିଲି ସେ ଗଣ୍ଠିଲିଟି । ମାତ୍ର ଦୁଃଖର କଥା ଦୀର୍ଘ ୪ ବର୍ଷ ବିତିଗଲା । ପ୍ରକାଶକ ବନ୍ଧୁ ଗଳ୍ପ ସଙ୍କଳନଟି ପ୍ରକାଶିତ କରିବାକୁ ଭୁଲିଗଲେ ।

ହତୋତ୍ସାହ ନ ହୋଇ ମୁଁ ପରିଶେଷରେ ମୋର ସାରସ୍ୱତ-ବନ୍ଧୁ କବି ସଦାଶିବ ଦାଶ, ଯିଏ ଏବେ ଅଣ ବ୍ୟବସାୟୀ ପ୍ରକାଶକ ମଧ୍ୟ ପାଲଟି ଯାଇଛି । ବ୍ୟବସାୟୀ ପ୍ରକାଶକମାନଙ୍କ ଦାଉରେ ଅତିଷ୍ଠ ହୋଇ ମୋ ଅନୁରୋଧରେ ରବି ପୁହାଣର ମାନସ ପୁତ୍ରମାନଙ୍କୁ ଲୋକଲୋଚନକୁ ଆଣିବାର ଦାୟିତ୍ୱ ଗ୍ରହଣ କଲା ଏବଂ ଗୋଟିଏ ଅତ୍ୟନ୍ତ ସୁବାସିତ ଫୁଲ, ଯାହା ବଣ ଭିତରେ ଫୁଟି ନିଜର ବାସ ନିଜେ ହିଁ ଆଘ୍ରାଣ କରୁଥିଲା, ତାକୁ ପାଠକ-ଦେବତାଙ୍କ ଚରଣ କମଳରେ ଅର୍ଘ୍ୟ ସ୍ୱରୂପ ଅର୍ପଣ କରିବାକୁ ଆଗଭର ହୋଇ ବାହାରି ପଡ଼ିଲା ।

ତେଣୁ ରବିର ଏ ମାନସ ପୁତ୍ର, ତା'ଏ ଗଳ୍ପଗୁଚ୍ଛଗୁଡ଼ିକ ଆପଣମାନଙ୍କ ସାମନାରେ ନୈବେଦ୍ୟ ସ୍ୱରୂପ ଅର୍ପଣ କରୁଛି ସାରସ୍ୱତ ମାଳରୂପୀ ସଦାଶିବ । ଆଉ ମୁଁ ମାଧ୍ୟମ ହୋଇ ରବିର ଗଳ୍ପକୁ ନିଜ ହସ୍ତାକ୍ଷରରେ ପ୍ରକାଶିତ କରାଉଁ କରାଉଁ ଆଜି ମଧ୍ୟସ୍ଥ ଭୂମିକା ଗ୍ରହଣ କରିଛି ଏଇ ସଂକଳନର ଆତ୍ମପ୍ରକାଶ ପ୍ରକ୍ରିୟାରେ । ମଧ୍ୟସ୍ଥ ପରଦାର ଅନ୍ତରାଳରେ ରହିଯାଏ । ସେଥିପାଇଁ ମନ୍ଦଛରି ଦୁଃଖ ନାହିଁ ।

ମାତ୍ର ଯଦି ଏ ସଂକଳନର ପ୍ରତିଟି ଗଳ୍ପକୁ ସହୃଦୟତାର ସହ ପାଠକମାନେ ପାଠକର ଏକ ଅନ୍ତର୍ମୁଖୀ ସ୍ରଷ୍ଟାକୁ ମୂଲ୍ୟାୟନ କରି ପାରିବେ, ତେବେ ମୋର ମାଧ୍ୟମରୁ ମଧ୍ୟସ୍ଥ ହେବାର ଭୂମିକା ସଫଳ ହେଲା ବୋଲି ଅନ୍ତତଃ ମୁଁ ଆତ୍ମସନ୍ତୋଷ ଲଭିକରି ପାରିବି । ଲୋକଲୋଚନ ଅଗୋଚରରେ ଏକ ସାରସ୍ୱତ ଜୀବନ୍ତ ଆଗ୍ନେୟଗିରି ରହି ଯାଇଥିଲା, ତାହା ଆତ୍ମପ୍ରକାଶ କରି ପୁନରାୟ କଲମ ଧରି ଓଡ଼ିଆ ଗଳ୍ପ ସାହିତ୍ୟକୁ ରୁଦ୍ଧିମନ୍ତ କରିବ । ଏହି ଆଶା ନେଇ ଅନେକ ଗଳ୍ପର ଜ୍ୱଳନ୍ତ ଲିପି ମାଧ୍ୟମରେ, ଏ ଗଳ୍ପ-ନୈବେଦ୍ୟ ପାଠକ ଦେବତାଙ୍କ ଉଦ୍ଦେଶ୍ୟରେ ସମର୍ପଣ କରୁଛି ରବିର ସାରସ୍ୱତ ପୁନର୍ଜନ୍ମ କାମନା କରି ।

**ହୁସେନ୍ ରବି ଗାନ୍ଧୀ**
ସଭ୍ୟ, ଓଡ଼ିଶା ସାହିତ୍ୟ ଏକାଡେମୀ
ଅମୀନ୍ ଷ୍ଟ୍ରୀଟ୍, ଆଜମ୍‌ଖାଁ ବଜାର
କଟକ-୭୫୩୦୦୧
୧୫ ଅଗଷ୍ଟ ୧୯୯୭






।। ସ୍ୱର୍ଗୀୟ ପିତା ଶ୍ରୀଯୁକ୍ତ ମାଧବାନନ୍ଦ ପୁହାଣ

ଏବଂ

ସ୍ୱର୍ଗୀୟା ମାତା ଶ୍ରୀମତୀ ସଜ ଦେବୀଙ୍କ

ଅମର ସ୍ମୃତି ଉଦ୍ଦେଶ୍ୟରେ

ଉତ୍ସର୍ଗୀକୃତ ।।

—ରବି ପୁହାଣ

# ନିଜକଥା

ଅନେକ ଦିନ ତଳର କଥା । ହୁଏତ ୧୯୬୦ ବା ୧୯୬୧ । ରାଣୀହାଟ ହାଇସ୍କୁଲ କଟକର ଅଷ୍ଟମ ଶ୍ରେଣୀରେ ପଢୁଥିଲି । ହିନ୍ଦୀ ଡ଼ିଟେକ୍ଟିଭ ବହି ସମ୍ବଲପୁରରୁ ମାମୁଁ କଟକ ଯୋଉଥା ସାହି ଘରକୁ ଆଣନ୍ତି ଓ ବଣିଆ ସାହିର ଏକ ପାଠାଗାରରୁ ମୁଁ ଆଣେ ଓଡ଼ିଆ ବହି । ରାତିରେ ଲଣ୍ଠନ ଆଲୁଅ ବା ଡିବିରି ଆଲୁଅରେ ଅନେକ ରାତି ପର୍ଯ୍ୟନ୍ତ ପଢ଼େ । ପଢୁପଢୁ କିଛି ଲେଖିବାପାଇଁ ଆଗ୍ରହ ହେଲା । ଲେଖିଲି ଏବଂ ମୋର ପ୍ରଥମ ଶ୍ରୋତା ଶ୍ରୀ ଶିଶିର କୁମାର ବିଶ୍ୱାଳ, ମୋର ସହପାଠୀ ।

ତା'ପରେ ସେପ୍ଟେମ୍ବର ୨୩, ୧୯୬୩ । କଟକ ଛାଡ଼ି ଚିରଦିନ ପାଇଁ ସମ୍ବଲପୁର ମାଟିରେ ପଦାର୍ପଣ । ଗଙ୍ଗାଧର ମେହେର କଲେଜରେ ପ୍ରଥମ ବନ୍ଧୁମାନଙ୍କ ମଧ୍ୟରେ ଅନ୍ୟତମ ବନ୍ଧୁ ହୁସେନ୍ ରବି ଗାନ୍ଧୀ । ମୋ ହସ୍ତାକ୍ଷର ପଠନଯୋଗୀ ନ ଥିଲା ସେତେବେଳେ । ଲେଖେ ଓ ତାହା ଖାତା ମଧ୍ୟରେ ସୀମାବଦ୍ଧ ରୁହେ । ଦିନେ ବନ୍ଧୁ ମୋ ଲିଖିତ ଏକ ଗପ ପଢ଼ିଲା ପରେ ନିଜ ହସ୍ତାକ୍ଷରରେ ନକଲ କରି ପ୍ରଜାତନ୍ତ୍ର ସାହିତ୍ୟ ବିଭାଗକୁ ପଠାଇଥିଲେ ଏବଂ ସେହି ଗପଟି ଅଗଷ୍ଟ ୧୫, ୧୯୬୮ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ସେ ଗପଟି ମୋର ପ୍ରଥମ ପ୍ରକାଶିତ ଗଳ୍ପ ଓ ତା'ର ଶୀର୍ଷକ ଥିଲା 'ଶେଫାଳି ଓ ହେନାର ଗନ୍ଧ' । ଏ ସଂକଳନରେ ସେଇଟି ସବାଶେଷରେ ସ୍ଥାନିତ ହୋଇଛି ।

ତା'ପରେ ଲେଖିବା ଏକ ନିଶା ହୋଇ ପଡ଼ିଲା । କିଛିଟା ପ୍ରକାଶିତ ମଧ୍ୟ ହେଲା । ଚାଲିଥିଲି ନିଃସଙ୍ଗ ହୋଇ ଏକାକୀ ଏ ସାହିତ୍ୟ ସାଧନା ପଥରେ । ପରିବର୍ତ୍ତନଶୀଳ ଦୁନିଆରେ ଅନେକ ଉତ୍ଥାନ ଓ ପତନ ମଧ୍ୟରେ ମୋର ପଥ ପରିବର୍ତ୍ତନ ହେଲା, କେମିତି ଓ କେବେ, ତାହା ହୁଏତ ମୁଁ କହି ପାରିବି ନାହିଁ । ଯେତେବେଳେ ଚିନ୍ତା କରିବାପାଇଁ ସକ୍ଷମ ହେଲି, ସେତେବେଳେ ଦେଖିଲି ନିଜର ଅନୁଭବ କରିବାର ଶକ୍ତି ମୁଁ ହରାଇ ବସିଛି । ପ୍ରକୃତିର ସୁନ୍ଦରତାକୁ ଉପଭୋଗ କରିବାର ଶକ୍ତି ହରାଇ ବସିଛି । ମୋ ମନର କୋମଳତା ହରାଇ ବସିଛି ଏବଂ ମୋ ଭିତରର ଲେଖକ କେଉଁଆଡ଼େ ହଜି ଯାଇଛି ।

ସେଇ ହଜି ଯାଇଥିବା ଲେଖକକୁ ପୁନର୍ବାର ଖୋଜିବାର ଓ ଲୋକ ଲୋଚନକୁ ଆଣିବାର ବନ୍ଧୁ ହୁସେନ ଓ ବନ୍ଧୁ ସଦାଶିବର କେତେ ସଫଳ ହେବ, ତାହା ହୁଏତ ସମୟ କହିବ ।

ଆପଣମାନଙ୍କୁ ଯଦି ମୋ ଗପ କିଛି ଭାବିବା ପାଇଁ ବାଧ କରେ, ତେବେ ତାହା ହିଁ ମୋର ପାରିଶ୍ରମିକ ।

**ରବି ପ୍ରଧାନ**

୨୪ । ୭ । ୯୭ ଶକ୍ତିନଗର, ବୁଢ଼ାରାଜା, ସମ୍ବଲପୁର-୪

# ସୂଚୀପତ୍ର





# ହିପୋକ୍ରେଟ୍

ଝଡ଼ ଆସିଥିଲା । ସହର ବକ୍ଷରେ ନାଚକୁଦ ଚାଲି ଯାଇଥିଲା ଏବଂ ସହର କ୍ଲାନ୍ତ ହୋଇ ପଡ଼ିଥିଲା । ସହର ଯେମିତି ଏକ କୁମାରୀ କନ୍ୟା । କୁମାରୀ କନ୍ୟା ପ୍ରଥମ ସମ୍ଭୋଗ ପରେ ଯେମିତି କ୍ଲାନ୍ତ ହୋଇ ପଡ଼ି ରହିଛି । ସବୁ ଅସ୍ତବ୍ୟସ୍ତ । ଟେଲିଫୋନ ଖୁଣ୍ଟଗୁଡ଼ାକ ନଇଁ ପଡ଼ିଛନ୍ତି । ମୁଁ ରଫିକ୍ ଚାଚାର ଚା' ଦୋକାନ ବେଞ୍ଚରେ ବସି ଲୁଣ୍ଠିତ ସହରକୁ ଲକ୍ଷ୍ୟ କରୁଥିଲି । ସହରର କୁମାରୀତ୍ୱକୁ ଝଡ଼ ଲୁଟି ନେଇ ଚାଲିଯାଇଛି । ସହରବାସୀ ଭାବୁଥିଲେ ବର୍ଷା ହେବ । କିନ୍ତୁ ଆକାଶର ବାଦଲଗୁଡ଼ାକ ଅନ୍ୟ ସହର ଉପରକୁ ଭାସି ଯାଇଛନ୍ତି । ରଫିକ ଚାଚାର ଦେଶୀ କୁକୁର ବେଞ୍ଚ ପାଖରେ ବସି ସାମ୍ନା କୋଠାର ବାଲ୍‌କୋନୀରେ ବସି ତଳକୁ ଅନେଇଥିବା ବିଦେଶୀ କୁତୀକୁ ଅନେଇ ଉତ୍ତେଜିତ ହୋଇ ଜିଭ ହଲଉଥିଲା । ବୁଢ଼ା ଷଣ୍ଢଟା ରାସ୍ତା ମଝିରେ ଶୋଇ ପଡ଼ିଥିଲା ଏବଂ ଏକ କେଳା ଦମ୍ପତି ରାସ୍ତା ପାରହେବାକୁ ଚେଷ୍ଟା କରୁଥିଲେ ।

ରଫିକ ଚାଚା ମୋ ହାତକୁ ଚା' କପ୍‌ଟା ବଢ଼େଇ ଦେଲା—''ଦେଖ୍‌ଲୁ ! ଶାଲା କୁତ୍ତାକୁ···ବିଲାତି ମାଲ୍ ଦେଖି ପାଟିରୁ କେମିତି ଲାଳ ଗଡ଼େଇଲାଣି ।'' ମୁଁ ହସିଲି । ମିସ୍ ରୋଜି ବାଲ୍‌କୋନୀରୁ ତଳକୁ ନଇଁ ପଡ଼ିଥିଲେ । ମୁଁ ମଧ୍ୟ ଏକ ଦେଶୀ କୁକୁର ପରି ମିସ୍ ରୋଜିଙ୍କୁ ଅନେଇ ରହିଥିଲି । ରାସ୍ତାର ଜନଗହଳି ହଠାତ୍ ବୃଦ୍ଧି ପାଇ ଯାଇଥିଲା । ରାସ୍ତାରେ ଗତ ରାତିର ବର୍ଷା ପାଣି ଜମି ରହିଥିଲା । ଫୁଟ୍‌ପାଥରେ ଲୋକମାନେ ଖୁବ୍ ଦ୍ରୁତ ଗତିରେ ଆଗେଇ ଯାଉଥିଲେ । ମୋ ସାମ୍ନା ଦେଇ ଏକ ନବଦମ୍ପତି ରିକ୍‌ସାରେ ଚାଲିଗଲେ । ମୁଁ ନିଜ ଦାଢ଼ିରେ ହାତ ମାରିଲି ।

ରଫିକ ଚାଚାର ଚା'ଟା ପ୍ରକୃତରେ ଖୁବ୍ ଆରାମଦାୟକ । କ୍ଲାନ୍ତ ଶରୀରରେ ଫୁର୍ତ୍ତି ଆଣିଦେଲା । ମୁଁ ହାତଟେକି ଅଳସ ଭାଙ୍ଗିଲି । ମିସ୍ ରୋଜି ଭିତରକୁ ଚାଲିଗଲେଣି । କେଳା ଦମ୍ପତି ଚା' ଦୋକାନ ପାଖରେ ପହଞ୍ଚିବାକ୍ଷଣି ରଫିକ ଚାଚା ହାତଟେକି ସେମାନଙ୍କୁ ଅଟକେଇ ଦେଲା ।

"ସାପଖେଳ ଦେଖିବୁ ?" ମୋତେ ପ୍ରଶ୍ନକଲା ।

କେଳା ଦମ୍ପତିଙ୍କ ମୁଖ ଉଜ୍ଜ୍ୱଳ ହୋଇ ଉଠିଲା । ସେମାନେ ଉତ୍ସାହିତ ହୋଇ ମୋ ନିକଟକୁ ଚାଲି ଆସିଲେ—"ଅସଲ ସାପ ବାବୁ···ଅସଲ ନାଗ ।"

ମୁଁ ହସିଲି—"ବିଷଦାନ୍ତ ଭାଙ୍ଗିଦେବା ପରେ ସାପର ନିଜତ୍ୱ ଚାଲି ଯାଇଥାଏ ।"

କେଳା ପ୍ରତିବାଦ କଲା—"ସେମାନେ ଭିନ୍ନ ଲୋକ ବାବୁ ! ଠକ । ଆମେ ସେମିତି ନୁହଁ । ଥରେ ଦେଖ ।" ସେ ତା' ପେଡ଼ିପେଟରା ତଳେ ଥୋଇଲା । ଲୋକ ଜମିବାକୁ ଲାଗିଲେ । ସ୍ତ୍ରୀ ଲୋକଟି କହିଲା—"ଥାଉ ସଞ୍ଜ ହେଲାଣି ।" କେଳା କିନ୍ତୁ କିଛି ନ ଶୁଣି ମନକୁ ମନ କହିଲା—"ମୋ କଥାରେ ବାବୁଙ୍କୁ ବିଶ୍ୱାସ କରିବାକୁ ହେବ । ଆମେ କେଳା···ଶବର···ଠକ ନୁହଁ ।" ମୁଁ ସାମ୍ନା ବାଲ୍‌କୋନୀକୁ ଲକ୍ଷ୍ୟକଲି । ମିସ୍ ରୋଜି ଠିଆ ହୋଇଥାନ୍ତି । ଆଗରୁ ନ ଥିଲେ । ଏଇ ସାତ ଦିନ ହେବ ସେମାନେ ନୂଆ ହୋଇ ଏଇ ସହରକୁ ଆସିଛନ୍ତି । ମିଷ୍ଟର ରବର୍ଟ—ରୋଜ୍‌ର ବାପା, କ୍ୟାଥଲିକ୍ ଚର୍ଚ୍ଚର ନୂତନ ପ୍ରିଷ୍ଟ । ଧଳା ପୋଷାକ, ସୌମ୍ୟ ଚେହେରା । ରୋଜ ଯୁବତୀ···ଏବଂ ଆକର୍ଷଣୀୟ ସୁନ୍ଦରୀ ମଧ୍ୟ ।

କେଳା ନାଗର ପାଟି ଖୋଲି ମୋ ସାମ୍ନାକୁ ନେଇ ଆସିଲା—"ଦେଖ ବାବୁ, ସେ ଦୁଇ ଦାନ୍ତକୁ···ଦେଖୁଛ···ସେଇ ହେଲା ଅସଲ ବିଷଦାନ୍ତ ।" ମୁଁ ନାଗର ଭୟଙ୍କରତା ଦେଖି ଥରେ ନିଜ ଅଜାଣତରେ ରୋମାଞ୍ଚିତ ହୋଇ ଉଠିଲି । ରଫିକ ଚିଡ଼ି ପାଟିକଲା—"ହାଁ···ହାଁ···ରଖ···ଭିତରେ ରଖ ।" କେଳା ହସିଲା । ପେଟିରେ ରଖୁ ରଖୁ କହିଲା—"ଏ ନାଗ ଥରେ ଧରିଲେ ଛାଡ଼ିବ ନାହିଁ ।"

ଉପରୁ ମିସ୍ ରୋଜ୍‌ର ବିଦେଶୀ କୁକୁର ଭୁକି ଉଠିଲା ଏବଂ ତା' ସହିତ ତାଳ ଦେଇ ରଫିକ ଘରର ଦେଶୀ କୁକୁର ଫାଟକ ନିକଟକୁ ଯାଇ ତା'ଠାରୁ ଅଧିକ ଉଚ୍ଚ ସ୍ୱରରେ ଭୁକିବାକୁ ଲାଗିଲା । ରଫିକ ଚିଡ଼ି ପାଟିକଲା—"ଚୁପ୍ ଶାଳା···।"

କେଳାର ସ୍ତ୍ରୀଟିକୁ ଅନେଇଲି । ରଫିକ ଘରର ଚା' କପ୍‌ଟିକୁ ହାତରେ ଧରି ସେ ପିଇବାକୁ ଚେଷ୍ଟା କରୁଥାଏ । ଚମତ୍କାର ଦେହ···। ମୁଁ ମିସ୍ ରୋଜର କୋମଳତା ସହିତ କେଳା ସ୍ତ୍ରୀର ଶରୀରକୁ ତୁଳନା କରିବାକୁ ଚେଷ୍ଟାକଲି ।

ଭିଡ଼ ଠେଲି ଦୁଇଟି କନେଷ୍ଟବଲ ଭିତରକୁ ଚାଲି ଆସିଲେ । ସେମାନଙ୍କୁ ଦେଖି କେଳା ଚମକି ପଡ଼ିଲା । ଜଣେ କନେଷ୍ଟବଲ ପାଟିକଲା—"ଚାଲ୍ ଶାଳା ! ତୁ ଆସି ଏଠି । ତୋତେ ଖୋଜି ଖୋଜି ଆମେ ନୟାନ୍ତ । ଚାଲ ଥାନାବାବୁ ଡାକୁଛନ୍ତି ।"

"ଆମେ ଯିବୁନ ।" ସ୍ମୀତି ମନାକଲା ।

"ଶାଳୀ···ସୁଗଲଙ୍କ କରୁଛୁ । ଆଜ ଧରା ପଡ଼ିଲେ ଦୌଡ଼ି ପଳେଇ ଆସୁଛୁ । ଥାନାକୁ ଗଲ ଜଣାଯିବ ସବୁ !" ଦ୍ୱିତୀୟ କନେଷ୍ଟବଲ ସ୍ମୀତିର ହାତଧରି ଟାଣିବାକୁ ଲାଗିଲା ।

"ଡାକୁ ଗୁଣ୍ଡ ବାବୁ ।" କେଳା ହଠାତ୍ ଉତ୍ତେଜିତ ହୋଇ ପଡ଼ିଲା । ଉପସ୍ଥିତ ଜନତାଙ୍କୁ ଲକ୍ଷ୍ୟକରି କହିଲା—"ଥାନାରେ ଖେଳ ଦେଖାଇବା ପାଇଁ ଡାକିଲେ । ସେଠି ମୋ ସ୍ତ୍ରୀକୁ ରାତିରେ ରଖିବା ପାଇଁ କହିବାରୁ ମୁଁ ରାଗି ପଳେଇ ଆସିଲି । ଏବେ ପୁଣି ଥରେ···ଜୋରକରି । ଏଇଟା କଅଣ ନ୍ୟାୟ !"

କେହି କିଛି କହିଲେ ନାହିଁ । ଦୁଇ କନେଷ୍ଟବଲ ଦୁଇଜଣଙ୍କୁ ଟାଣି ଟାଣି ଥାନା ଆଡ଼କୁ ନେଇଗଲେ । ଲୋକମାନେ ନିଜ ନିଜ ମଧ୍ୟରେ ଅସ୍ପଷ୍ଟ ଆଲୋଚନା କରି କିଛି ଘଟି ନ ଥିବାର ଭାବଭଙ୍ଗୀ ନେଇ ଚାଲିଗଲେ । ମୁଁ ଚା' କପ୍‌ଟିକୁ ତଳେ ଥୋଇଲି । ମୋତେ ଜଣେ ବୃଦ୍ଧ ତୀକ୍ଷ୍ଣ ଦୃଷ୍ଟିରେ ଲକ୍ଷ୍ୟକରି ଚାଲିଗଲେ । ମନେ ପଡ଼ିଲା ମୋ ବାପାଙ୍କର ସେ ଜଣେ ବନ୍ଧୁ । ବାପାଙ୍କ ବନ୍ଧୁମାନଙ୍କୁ ମୋତେ ଭଲଲାଗେ ନାହିଁ । ବଡ଼ ବିରକ୍ତ ହେବାକୁ ପଡ଼େ ଏବଂ ତା' ସଙ୍ଗେ ସଙ୍ଗେ ନିଜର ନିଜତ୍ୱକୁ ମଧ୍ୟ ଭୁଲିଯିବାକୁ ହୁଏ । ଥରେ ଥରେ ବାଟରେ ଦେଖି ଅଟକେଇ ପଚାରନ୍ତି—"ତୁ ଅମୁକର ପୁଅ ନା ?" ମୋତେ ମୁଣ୍ଡ ହଲେଇ ସମ୍ମତି ଦେବାକୁ ପଡ଼େ । ତା'ପରେ ସେମାନେ ଟିକେ ହସନ୍ତି— "ମୁଁ ଠିକ୍ ଜାଣୁଥିଲି । ଠିକ୍ ତୋ ବାପା ପରି ଚେହେରା । ବାପା କେଉଁଠି ?" କଅଣ ଦରକାର ? ପଚାରିବାକୁ ଇଚ୍ଛା ଥିଲେ ମଧ୍ୟ ପଚାରି ହୁଏନାହିଁ । ସେମାନେ ଯେପରି ବ୍ୟଙ୍ଗ କରନ୍ତି । ମୁଁ ନିଜକୁ ଭୁଲିବାକୁ ଚେଷ୍ଟା କରୁଥିଲାବେଳେ ସେମାନଙ୍କର ଏଇ ବ୍ୟଙ୍ଗ ମୁଁ ସହି ପାରେନାହିଁ । ମୁଁ ନିଜକୁ ଭୁଲିବା ପାଇଁ ଏତେ ଚେଷ୍ଟା କରୁଛି । ଭୁଲି ହୁଏତ ଯାଇଥାନ୍ତି । ହେଲେ ଏ ପରିଚିତ··· ସେମାନେ ଭୁଲିବାକୁ ମଧ୍ୟ ଦେଉ ନାହାଁନ୍ତି । ଏଇ ପରିଚିତମାନେ ତ କିଛି ବି ଭୁଲିବାକୁ ଦେଉ ନାହାଁନ୍ତି । ସାନ୍ତ୍ୱନା ଦେବା ନାଁରେ, ସହାନୁଭୂତି ପ୍ରଦର୍ଶନ କରିବା ନାଁରେ ଅତୀତକୁ ଖୋଳିତାଙ୍କ ଆଖି ସାମ୍ନାରେ ଥୋଇ ଦିଅନ୍ତି । ସେଥିର ସେମିତି—ବାପାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ମୋତେ ଥରେ ଭଲଭାବେ ଉପରୁ ତଳକୁ ଅନେଇ ଆଶ୍ଚର୍ଯ୍ୟଭରା ସ୍ୱରରେ ପ୍ରଶ୍ନକଲେ—"ତୁମେ ଏମ୍.ଏ. ପଢ଼ୁଥିଲ ନା ?"

"ହଁ ।" ଅନିଚ୍ଛାସତ୍ତ୍ୱେ ଉତ୍ତର ଦେଲି ।

"ପାସ୍ କଲଣି ?"

"ହଁ । କାଲି ଆର୍ଟ କ୍ଲାସ ।" କବିଁକାରଭାବେ ଉତ୍ତର ଦେଲି ।

"ଲ ବ କର୍ଣ୍ଣିଲ୍ୟୁ କରୁଥିଲ ବୋଧେ ?"

"ହଁ । କାଲି ଛାଡ଼ିଦେଲି ମଝିରୁ ।"

"ଏବେ ?" ନିଜ ନୂଆ ଫିଏଟ୍‌ରେ ଗୋଡ଼ ଦେଇ ମୋତେ ଅନେଇଲେ ।

"ମୁଁ ସାମ୍ନା ରାସ୍ତାର ଦୈର୍ଘ୍ୟ ମାପିବା ପାଇଁ ଚେଷ୍ଟାକଲି ।

ସେ ହସିଲେ—"କ୍ୟାରିଅନ୍ ମାଇଁ ବୟ !"

× × ×

ଗତରାତିର ବର୍ଷା ପରେ ବାତାବରଣର ଉଷ୍ମତା ଅନେକ ପରିମାଣରେ କମି ଯାଇଛି । ବର୍ତ୍ତମାନର ଝଡ଼ ପରେ ଆକାଶ ପରିଷ୍କାର ଏବଂ ଷ୍ଟ୍ରୀଟ ଲାଇଟ୍ ଗୁଡ଼ାକ ଜଳି ଉଠିଛନ୍ତି । ରଫିକ ଚାଚା ମୋ ପାଖରେ ବସିପଡ଼ି ଲୁଙ୍ଗିରୁ ବଡ଼ି କାଢ଼ି ମୋ ହାତକୁ ବଢ଼େଇ ଦେଲେ । ମୁଁ ବଡ଼ି ଲଗେଇଲି । ରଫିକ ଚାଚାର ହାତ ମୋ ପିଠିରେ ବୁଲିବାକୁ ଲାଗିଲା—"ଆଜି ତୋର ଇଣ୍ଟରଭ୍ୟୁ ଥିଲା ନା ?" ମୁଁ ମୁଣ୍ଡ ହଲେଇଲି । "କଅଣ ହେଲା ?" ରଫିକ ଚାଚା ଖୁବ୍ ଆଶା-ବାଦୀ । ମୁଁ ହସିଲି । ରଫିକ ଚାଚା ଆଉ କିଛି ନ କହି ଉଠିଗଲା—"ସବୁ ତୋର ନିଜ ଯୋଗୁଁ । ଶଳା କେବେ ତ ଭଲଭାବେ ଖଣ୍ଡେ ସାର୍ଟ ପ୍ୟାଣ୍ଟ ପିନ୍ଧୁ ନାହିଁ । କିଏ ତୋତେ ଚାକିରି ଦେବ ? ନାଇଁ ଶଳା···ତୋର ବସି ବସି ଖାଇବାର ଅଭ୍ୟାସ ହୋଇ ଗଲାଣି । କାଲିଠୁଁ ତୋ ପାଇଁ ଚା' ଉଧାର ବନ୍ଦ । କେତେ ଟଙ୍କା ହେଲାଣି ଜାଣିଛୁ ?" ମୁଁ ତା' କଥାରେ ପ୍ରତିବାଦ କଲିନାହିଁ । ଏମିତି ଅନେକଥର କହିଛି । ହେଲେ ନିଜେ ପୁନର୍ବାର ମୋତେ ଖାଇବାକୁ ଡାକିଛି । ମୋ ବିନା କେବେ ଖାଇପାରି ନାହିଁ ଏକା ।

"ହାଏ—ଦେବଦାସ !"

"ମୁଣ୍ଡ ଟେକିଲି । ଅଶୋକ ସାଇକେଲ ଷ୍ଟାଣ୍ଡ ମାରୁଛି । ରଫିକ ଚାଚାକୁ ଚା' ପାଇଁ କହି ମୋ ପାଖରେ ବସି ପଡ଼ିଲା—"ଆଉ ଶୁଣାଅ ଦେବଦାସ । ଖବର କଅଣ ?"

"ଗ୍ଲାଡ଼ ଶଳାକୁ । ତିନି ମାସ ହେବ ବେକାର ହୋଇ ବସିଛୁ ।" ରଫିକ ଚାଚା ନିଜ ଭିତରର କୋଧକୁ ପ୍ରକାଶ କଲା । ମୁଁ ବିରକ୍ତ ହୋଇ ଚାଚାକୁ ଅନେଇଲି । ସେ ଆଉ ଥରେ ଜୋରରେ ପାଟିକଲା । ମୋତେ ଆଖି ଦେଖାଉଛୁ ? ଠିକ୍ କଥା ତ କହୁଛି ।"

ଅଶୋକ ମୋ କାନ୍ଧରେ ହାତ ଥୋଇ ପଚାରିଲା—"ତୁ ବେକାର ? ତୋର ସେ ଆକାଶବାଣୀ ଚାକିରି ?"

"ଛାଡ଼ିଦେଲି ।"

"କିନ୍ତୁ କାହିଁକି ?"

"ଏମିତି ଭଲ ଲାଗିଲା ନାହିଁ ।"

"ଭଲ ଲାଗିଲାନି ।...ମାନେ ?" ଅଶୋକ ଆଶ୍ଚର୍ଯ୍ୟ ହେଲା ।

"ଶଳା ମିଛ କହୁଛୁ । ସେଠି ଗୋଟାଏ ଝିଅ କାମ କରୁଥିଲା । ତାକୁ ଦେଖି ବାବୁଙ୍କର ଅତୀତ ମନେ ପଡ଼ିଲା ।" ରଫିକ ଟାଟା କେଟଲରୁ ଚା' କପ୍‌ରେ ଢାଳି ଅଶୋକକୁ ଦେଲା । ଅଶୋକ ପଚାରିଲା—"ପିଇବୁ ?"

"ନା...ଥାଉ ।" ମୁଁ ମନାକଲି ।

"ପିପ୍‌ଟି...ଫିଫ୍‌ଟି ।" ତା'ର ଆଗ୍ରହ ।

"ଏଇ ସାଙ୍ଗେ ସାଙ୍ଗେ ପିଇଛି ।"

ଅଶୋକ ନୀରବରେ ଚା' ପିଇଲା ଏବଂ କପ୍ ଥୋଇ ମୋତେ ଅନେଇଲା—"ମୁଁ ବୁଝିପାରୁ ନାହିଁ, କେତେଦିନ ତୁ...। ଆକାଶବାଣୀ ଚାକିରି ଛାଡ଼ିବାର କଅଣ ଦରକାର ଥିଲା ?"

"ତୁ ବୁଝି ପାରିବୁ ନାହିଁ ଅଶୋକ । କାମିନୀକୁ ଦେଖି ମୋର...।"

"ସେଥର ସେ ପ୍ରେସ କାମ ମଧ୍ୟ ଏଇଥିପାଇଁ ଛାଡ଼ିଥିଲୁ । ଏଥରକ ଆକାଶବାଣୀ କାମ । ତୋତେ କଅଣ ସବୁ ଝିଅଙ୍କ ଭିତରେ ବନଲତା ଦେଖା ଯାଉଛି । ତିନି ବର୍ଷ ବିତିଗଲାଣି ତା'ର ଦୁଇଟି ସନ୍ତାନ ହୋଇ ଗଲେଣି । ତଥାପି ତୁ...?"

ମୁଁ ବ୍ୟସ୍ତ ହୋଇ ଉଠିଲି । ପୁଣି ସେଇ ସାନ୍ତ୍ୱନା, ସହାନୁଭୂତି ନାରେ ଅନ୍ତରର ବିଶ୍ଳେଷଣ । କାହିଁକି ସେମାନେ ମୋତେ ସବୁକିଛି ଭୁଲିଯିବାକୁ ଦେଉନାହାନ୍ତି ? ମୁଁ ଯଦି ନିଜର ଏକ ନିର୍ଦ୍ଦିଷ୍ଟ ସୀମାରେଖା ମଧ୍ୟରେ ସନ୍ତୁଷ୍ଟ ହୋଇ ପାରିଲି ତେବେ ଏମାନଙ୍କର ଆପତ୍ତି କରିବାର କଅଣ ଅଛି ? ଏମାନେ ନିଜେ କିଛି ଭୁଲିପାରୁ ନାହାନ୍ତି, ତେଣୁ ଅନ୍ୟକୁ ମଧ୍ୟ ଭୁଲିବା ପାଇଁ ସୁଯୋଗ ଦେଉ ନାହାନ୍ତି । ମୁଖ୍ୟ କଥାହେଲା ଈର୍ଷା । ସାନ୍ତ୍ୱନା କିମ୍ବା ସହାନୁଭୂତି ତ କେବଳ ଏକ ବାହାନା ମାତ୍ର । ଜୀବନରେ ଯଦି ଦୁଃଖ ପାଇଲି ପରେ ମୁଁ ନିଜକୁ ଅଭ୍ୟସ୍ତ କରିନେଲି, ତେବେ ଏମାନଙ୍କର ଆପତ୍ତି କରିବାର ମୁଖ୍ୟ କାରଣ ହେଲା, ଏମାନେ ଚାହୁଁଥିଲେ ମୋ ଆଖିରେ ଲୁହ ଦେଖିବା ପାଇଁ । ଲୁହ

ନ ଦେଖି ଇଙ୍ଗିତରେ ବ୍ୟଙ୍ଗ କରି ଆଘାତ ଦେବାକୁ ଇଚ୍ଛୁକ। ମଣିଷ ଆଘାତ ପାଏ । ଭୁଲିଯାଏ । ସାନ୍ତ୍ୱନା ସହାନୁଭୂତି ନାରେ ପୁଣି ସେଇ ଅଘାତର ଯନ୍ତ୍ରଣାକୁ ମନେପକାଇ ଦିଅନ୍ତି, ଏଇ ବନ୍ଧୁମାନେ । ଏମାନଙ୍କୁ ମୁଁ ଘୃଣା କରେ । ସହାନୁଭୂତିକୁ ମଧ୍ୟ ଘୃଣା କରେ ।

"ଏକ ଝିଅ ପାଇଁ ତୁ ନିଜକୁ ନଷ୍ଟ କରିଦେବୁ ?"

"ଝିଅ ପାଇଁ ନୁହେଁ ଅଶୋକ । ତୁ ମୋତେ ବୁଝି ପାରିବୁ ନାହିଁ ।" ମୁଁ ଯନ୍ତ୍ରଣାରେ ଆହତ ହୋଇ ପ୍ରତିବାଦ କଲି । ଏମାନେ ତ ମଣିଷକୁ ବୁଝି ପାରିବେ ନାହିଁ । ନ ବୁଝି, ହଠାତ୍ ସବୁ ବୁଝି ପାରିବାର ଛଳନା କାହିଁକି ?

"ମୋତେ ତେବେ ବୁଝେଇ ଦେ ।"

"ତୁ ବୁଝି ପାରିବୁନି । ଏତେ ସହଜ ନୁହେଁ ଏ ସବୁ ବୁଝିବା ।"

"ତୁ ଫ୍ରଷ୍ଟ୍ରେଟେଡ୍...ହତାଶ...ବନଲତାର ବିଚ୍ଛେଦ ତୋତେ ସମ୍ପୂର୍ଣ୍ଣ ଭାଙ୍ଗି ଦେଇଛି ।"

"ତୁ ଭୁଲ୍ କହୁଛୁ ଅଶୋକ । ପ୍ରକୃତରେ କହିବାକୁ ଗଲେ ମୁଁ ପରୀକ୍ଷା କରୁଛି ଜୀବନକୁ ନେଇ—ଏକ ଏକ୍ସପେରିମେଣ୍ଟ ।"

"ଏକ୍ସପେରିମେଣ୍ଟ ।"

"ହଁ—ଏକ୍ସପେରିମେଣ୍ଟ...ଏକ ପରୀକ୍ଷା...ଏକ ତିକ୍ତ ଅନୁଭୂତି । ଆଜି ପର୍ଯ୍ୟନ୍ତ ମଣିଷ ଏକ ରୁଟିନବନ୍ଧା ଜୀବନ ମଧ୍ୟରେ ଗତି କରି ଆସିଛି । ସେଇ ପେଟ ଚିନ୍ତା, ପରିବାର ଚିନ୍ତା, ସେକ୍ସ ଚିନ୍ତା, ସନ୍ତାନ ଚିନ୍ତା, କିଛି ଚିନ୍ତା ନ କରି ମଧ୍ୟ ମଣିଷ ବଞ୍ଚି ପାରୁଛି କି ନାହିଁ, ତାହା ମୁଁ ପରୀକ୍ଷା କରିବାକୁ ଚାହୁଁଛି । ଏତେ ଚିନ୍ତା ସତ୍ତ୍ୱେ ମଣିଷ ହସୁଛି । ଆନନ୍ଦରେ ରହିପାରୁଛି । କିନ୍ତୁ ଚିନ୍ତା ନ କରି ମଣିଷ ନିଜ ଜୀବନକୁ ସୁଖରେ କଟାଇ ପାରୁଛି କି ନାହିଁ ।"

"ଏଇଟା ପରୀକ୍ଷା କରୁଛୁ କିଛି ନ କରି...ବେକାର ହୋଇ ?"

"ସମସ୍ତେ କାମ କରୁଛନ୍ତି । ମୁଁ କାମ ନ କରି ବଞ୍ଚି ପାରୁଛି କି ନାହିଁ ପରୀକ୍ଷା କରିଯାଉ । ସମସ୍ତେ ଯାହା କରୁଛନ୍ତି, ତାହା ନ କରି ଅନ୍ୟ କିଛି କଲେ, ତୁମେମାନେ ଏତେ ଈର୍ଷା କାହିଁକି କରୁଛ ?"

ଅଶୋକ ଉତ୍ତର ଦେଲାନାହିଁ । ରଫିକ ହସି ଅଶୋକକୁ ଅନେଇଲା, "ଏଇଟା ପାଗଳ ଅଶୋକ ବାବୁ । ଭଲ କହିଲେ ଖରାପ ବୁଝିବ । ବାପା ମା' ପରିବାରଙ୍କୁ ଛାଡ଼ି ଏଠି ପଡ଼ିଛି । ମୁଁ ନ ଥିଲେ ଯେ ଏହାର କଅଣ ହୁଅନ୍ତା, ଜାଣିନି ।"

"ଙ୍କୁ ତୁ ନ ଥିଲେ ମଧ୍ୟ ମୁଁ ବଞ୍ଚି ପାରିଥାନ୍ତି ।

ରଫିକ ଗୃହ ଆଉ କିଛି କହିଲା ନାହିଁ । ଅଶୋକ ଉଠି ଠିଆହେଲା । "ଓକେ ଦେବଦାସ, ମୁଁ ଚାଲିଲି । ହଁ...ମନେ ପଡ଼ିଲା । ବନଲତାର ସ୍ୱାମୀ ଏଠିକା ପ୍ଲାଣ୍ଟକୁ ଟ୍ରାନସ୍‌ଫର ହୋଇ ଆସୁଛି । ବୋଧହୁଏ ଦୁଇଦିନ ଭିତରେ ସେମାନେ ସମସ୍ତେ ଆସିଯିବେ ।"

× × ×

ମିଷ୍ଟର ରବର୍ଟ କହୁଥିଲେ—"ମଣିଷ ମନରେ ଯଦି ହିଂସା ନାହିଁ, ଦ୍ୱେଷ ନାହିଁ, ଆଶା ନାହିଁ, ଆକାଂକ୍ଷା ନାହିଁ, ତେବେ ସେ ମଣିଷ ନୁହେଁ ।" ପ୍ରତିବାଦ କରି ମୁଁ ପ୍ରଶ୍ନ କରିଥିଲି, "ତେବେ ଫାଦର୍ ମୁଁ କଅଣ ମଣିଷ ନୁହେଁ ?"

ସେ ହସିଲେ । କହିଲେ—"ତୁମେ ମଣିଷ । ମଣିଷର ସ୍ୱଭାବ କେବେ ପରିବର୍ତ୍ତିତ ହୋଇ ପାରିବ ନାହିଁ । କିନ୍ତୁ ତୁମେ ଛଳନା କରୁଛ । ୟୁ ଆର ଏ ହିପୋକ୍ରାଇଟ୍ ।"

ପ୍ରକୃତରେ ମୁଁ କଅଣ ହିପୋକ୍ରାଇଟ୍ ? ଆଶା, ଆକାଂକ୍ଷା କଅଣ ମନରେ ବିଲକୁଲ୍ ନାହିଁ ? ବଞ୍ଚିବା ପାଇଁ ଯେଉଁ ଇଚ୍ଛା, ତା' ବି ତ ଏକ ଆଶା...ବଞ୍ଚିବାର ଆଶା...ଭବିଷ୍ୟତ ପାଇଁ ଆଶା । କିନ୍ତୁ... । ମନେହୁଏ ଫାଦର ଠିକ୍ କହୁଥିଲେ । ପରମୁହୂର୍ତ୍ତରେ ମୁଁ ନିଜକୁ ଦେଖେ...ନିଜ ଚତୁଃପାର୍ଶ୍ୱର ବାତାବରଣକୁ ଦେଖେ...ମନେହୁଏ ଫାଦର ଭୁଲ୍ କହୁଛନ୍ତି । ତାଙ୍କ ଜ୍ଞାନ କେବଳ ଥିଓରେଟିକାଲ ।

ସହର ଛାଡ଼ିଲାବେଳେ ବାପା କହିଥିଲେ—"ତୋର ଏ ଜିଦ୍ ତୋତେ ନଷ୍ଟ କରିଦେବ ।" ମୁଁ ଖାତିର କରି ନ ଥିଲି । ଭାବିଥିଲି ମଣିଷର ଅନ୍ତରକୁ ଯଦି ଚିହ୍ନି ପାରିଲେ ଏ ସମାଜର ବ୍ୟକ୍ତିବିଶେଷ ମାନେ, ତେବେ ଏ ବାହ୍ୟ ଆଡ଼ମ୍ବର କଅଣ ଦରକାର ? ମା' କାନ୍ଦିଥିଲା...ବାପା ଗମ୍ଭୀର ହୋଇ ଯାଇଥିଲେ । ତିନି ମହଲା କୋଠାର ଫାଟକ ପାଖେ ଠିଆହୋଇ ଉପରକୁ ଥରେ ଅନେଇ ମଧ୍ୟ ପାରି ନ ଥିଲି । ପକେଟରେ ଟଙ୍କା ଥିଲା । ପାଦ ଷ୍ଟେସନ ଅଭିମୁଖେ ଆଗେଇ ଚାଲିଥିଲା । ଅତୀତର ପ୍ରତ୍ୟେକ ଚିହ୍ନକୁ ହୃଦୟ ମଧ୍ୟରୁ ବାହାର କରି ଆଗାମୀ ପ୍ରତ୍ୟେକ ପଦକ୍ଷେପ ସହିତ ଫୋପାଡ଼ି ଚାଲିଥିଲି । ଏବଂ ଷ୍ଟେସନ ପ୍ଲାଟଫର୍ମରେ ଠିଆହୋଇ ବର୍ତ୍ତମାନର ସ୍ୱଚ୍ଛନ୍ଦ କ୍ଷଣଗୁଡ଼ାକୁ ଖୁବ୍ ଜୋରରେ ନିଃଶ୍ୱାସ ମାରି ଉପଭୋଗ କରିଥିଲି ।

ପ୍ଲାଟଫର୍ମର ଗହଳି ମଧ୍ୟରେ ଅନେକ ବନ୍ଧୁ ଦେଖାହେଲେ । ପ୍ରତ୍ୟେକ ସନ୍ଦେହଭରା ଚକ୍ଷୁରେ ମୋତେ ଲକ୍ଷ୍ୟ କରୁଥାନ୍ତି । ସେମାନେ ହୁଏତ ଭାବିଥିଲେ

ବନଲତାର ବିବାହ ପରେ ମୁଁ ବ୍ୟର୍ଥ ପ୍ରେମିକ ହୋଇ ଏ ସହରର ହତାଶିଆ ଭାବ ନେଇ ବୁଲିବାକୁ ଚାହୁଁ ନାହିଁ, ତେଣୁ ସହର ଛାଡ଼ି ଚାଲିଯାଉଛି । ପଛରେ ଅନେକ କହୁଥିଲେ, "ଏ ଆତ୍ମହତ୍ୟା କଲାନାହିଁ କେମିତି ?" ମୁଁ ଯେତେବେଳେ ନିଜକୁ କଠୋର କରି ପ୍ରଦର୍ଶିତ କଲି, ସେମାନେ ସେତେବେଳେ ଆଶ୍ଚର୍ଯ୍ୟ ହେଲେ । ଏବଂ ଫାଦର୍ ରବର୍ଟ କହିଲେ—"ୟୁ ଆର ଏ ହିପୋକ୍ରାଇଟ୍ !"

ସତ କହିଲେ ମଧ୍ୟ କେହି ବିଶ୍ୱାସ କରିବେ ନାହିଁ । ମିଛ କହିଲେ ମଧ୍ୟ କେହି ବିଶ୍ୱାସ କରିବେ ନାହିଁ । ସମସ୍ତଙ୍କ ଠାରୁ ଭିନ୍ନ ହେବାକୁ ଚେଷ୍ଟାକରି ମୁଁ ଯେଉଁ ପରୀକ୍ଷା କରିବାକୁ ଯାଉଥିଲି, ତାକୁ କେହି ବୁଝିବାକୁ ଚେଷ୍ଟା ମଧ୍ୟ କଲେନାହିଁ ।

ଆଜି ନୁହେଁ । ଅନେକ ଦିନରୁ ମୋତେ ଲାଗେ ମୁଁ ଏ ବନ୍ଧନ ଭିତରେ କାହିଁକି ? ଏକ ଝୁଣ୍ଟାପରି ତାରମାନଙ୍କର ବନ୍ଧନ ମଧ୍ୟରେ ମୁଁ ଠିଆ କାହିଁକି ହେବି ? ସ୍ନେହ ମମତାର ବନ୍ଧନ ମଣିଷକୁ କାହିଁକି ବାନ୍ଧି ରଖିଛି ? ଏ ବନ୍ଧନ କଅଣ ଛିଣ୍ଡେଇ ହେବନାହିଁ ? ମଣିଷ ଏତେ ଅଣବିଶ୍ୱାସୀ ହୋଇ ପଡ଼ୁଛି ସାମାଜିକ ନିୟମ କାନୁନ ମଧ୍ୟରେ, ତଥାପି ସେ ସେଇ ନିୟମ କାନୁନ, ସମାଜକୁ ମାନି ନେଉଛି କାହିଁକି ? ମୁଁ ବୁଝି ପାରେନା । ବିଦ୍ରୋହ କେହି ନ କଲେ ମୁଁ ହିଁ ଶୁଭାରମ୍ଭ କରିବି ।

ବନଲତା କଥା ତ ପୁରୁଣା ହୋଇଗଲାଣି । ବନ୍ଧୁମାନେ ବ୍ୟଙ୍ଗ କରି ଆହତ କରି ନ ଥିଲେ ଅନେକ ଦିନରୁ ବନଲତାର ସ୍ମୃତିକୁ ସମ୍ପୂର୍ଣ୍ଣ ପାସୋରି ଯାଇ ପାରିଥାନ୍ତି । ସେ ତା'ର ଦୁଇଟି ସନ୍ତାନ ସହ ଏବେ ବେଶ ସୁଖୀ ଅଛି । ମୋତେ ବିବାହ କରିଥିଲେ ଦୁଃଖ ହିଁ ପାଇଥାନ୍ତା । ଝିଅମାନେ ଖୁବ୍ ଦୂରଦର୍ଶୀ । ବନଲତା ନିଜର ଦୂରଦର୍ଶିତା ପାଇଁ ଆଜି ସୁଖୀ । ମୋତେ ହୁଏତ ଭୁଲି ଯାଇଥିବ...ନା ହୁଏତ ଭୁଲିପାରି ନ ଥିବ । ସେଦିନ ଶେଷ କ୍ଷଣରେ ତା' ସହିତ ଦେଖା ନ ହୋଇଥିଲେ ହୁଏତ ଏ ଦ୍ୱନ୍ଦ ମନରେ ଆସି ନ ଥାନ୍ତା । ମୁଁ ନିଶ୍ଚିତ ହୋଇ କହି ପାରିଥାନ୍ତି ଯେ ସେ ମୋତେ ନିଶ୍ଚୟ ଭୁଲି ଯାଇଛି । ଜନ୍ତୁ ଫାଦର୍ କୁହନ୍ତି—"ୟୁ ଆର ଏ ହିପୋକ୍ରାଇଟ୍ ।"

ବିବାହର ପ୍ରାୟ ବର୍ଷେ ପରେ ରଫିକ ଗୁଚ୍ଛର ଦୋକାନ ଆଗରେ ଏକ ସୁନ୍ଦର ଗାଡ଼ି ଅଟକି ଯାଇଥିଲା । ଅନ୍ଧାର ଯୋଗୁଁ ଗାଡ଼ି ଭିତରର ଯାତ୍ରୀମାନଙ୍କୁ ମୁଁ ଦେଖିପାରି ନ ଥିଲି । ପରକ୍ଷଣରେ ଗାଡ଼ିଟି ଚାଲି ଯାଇଥିଲା । ଏବଂ ପ୍ରାୟ ତିରିଶ ମିନିଟ ପରେ ସେଇ ଗାଡ଼ିରେ ବସି ମୁଁ ମିସେସ୍ ତ୍ରିବେଦୀଙ୍କୁ ଦେଖା କରିବା ଉଦ୍ଦେଶ୍ୟରେ ଆଗେଇ ଯାଉଥିଲି । ଡ୍ରାଇଭର ମୋତେ ମିସେସ୍ ତ୍ରିବେଦୀଙ୍କ ପରିଚୟ ଖୁବ୍ ସଂକ୍ଷେପ ଭାବେ ଜଣାଇ ଦେଇଥିଲା ।

ଏକାନ୍ତ କକ୍ଷର ସାଜସଜ୍ଜା ପ୍ରତି ନଜରକୁ ଅରେ ଅଭ୍ୟସ୍ତ କରି ସାମ୍ନାରେ ମୁଁ ବନଲତାକୁ ଦେଖି ପାରିଥିଲି । ଅନେକ ସାମାନ୍ୟ କଥନ ପରେ ନାରୀ ନିଜ ସପକ୍ଷରେ ଯୁକ୍ତି କରିବାକୁ ଆଗ୍ରହ କରି ଦେଇଥିଲା—"ତୁମକୁ ଏ ଅବସ୍ଥାକୁ ଆଣିବା ପାଇଁ ପରୋକ୍ଷରେ ମୁଁ ହିଁ ଦାୟୀ । ମୋତେ କ୍ଷମା କରିଦିଅ ।"

ମୁଁ ଆଶ୍ଚର୍ଯ୍ୟ ହେଲି । ବନଲତାର ଦୋଷ କିଛି ନାହିଁ । ସେ ନିଜକୁ କାହିଁକି ଦୋଷୀ କରୁଛି ।

"ସତ କହୁଛି । ମୁଁ କିଛି ଜାଣି ନ ଥିଲି । ଘରେ ମୋତେ ଲୁଚେଇ ସବୁ ବ୍ୟବସ୍ଥା କରି ଶେଷ ମୁହୂର୍ତ୍ତରେ ଜୋରକରି···।" କଣ୍ଠର ଆର୍ଦ୍ରତା ମୋତେ କିଛି କହିବାକୁ ବାଧ କଲା ।

"ଯାହା କରିଛ ଠିକ୍ କରିଛ । ମୋର ତୁମ ପ୍ରତି ଅଭିଯୋଗ କିଛି ନାହିଁ ।"

"ତେବେ ନିଜ ଘରକୁ ଫେରିଯାଅ । ଏମିତି ନିଜ ଜୀବନକୁ ନଷ୍ଟ କାହିଁକି କରୁଛ ? ତୁମର ଏ ଅବସ୍ଥା ଦେଖି ମୋ ଅନ୍ତର କାନ୍ଦୁଛି ।"

ମୁଁ ହସିଲି । ସେ ବୋଧହୁଏ ବ୍ୟଥିତା ହେଲା । ନିଜ ପ୍ରଥମ ସନ୍ତାନକୁ ଟେକିଧରି କହିଲା—"ହସୁଛ···ବିଶ୍ୱାସ ହେଉନି । ହେଲେ ଥରେ ଏ ଶିଶୁଟିକୁ ଚାହିଁ ଦେଖ···?"

ହଠାତ୍ ମୋର ହସ ବନ୍ଦ ହୋଇଗଲା । ପୁନର୍ବାର ବନ୍ଧନ । ଥରେ ବନ୍ଧନ ମୁକ୍ତ ହେଲା ପରେ ପୁନର୍ବାର ଶିକାରର ଜାଲ ଭିତରେ ମୁଁ ଯେମିତି ଛନ୍ଦି ହୋଇ ପଡ଼ୁଛି । ସେ ମୋତେ ଅନେଇଲା—"ନାରୀମାନଙ୍କୁ ଦୋଷ ଦେବାଟା ଖୁବ୍ ସହଜ । ଆଉ ମୋର ନିଜର କଅଣ ଥିଲା ? ସବୁ ତ ତୁମକୁ ଦେଇଛି । ତା'ର ପ୍ରତିଦାନରେ ପାଇଛି ଏଇ ସ୍ମୃତିଚିହ୍ନ···ଏ ଶିଶୁ । ତୁମେ ସିନା ଜାଣିନ···ଏ ଦୁନିଆ ଜାଣେନି । ହେଲେ ଜାଣିଛି ମୁଁ । ତୁମକୁ ପାଇ ପାରିଲିନି । ତୁମର ଅଂଶ ମୋ ପାଖରେ ରହିଗଲା ଚିରଦିନ ପାଇଁ ।"

ହସି ହସି କହିଲି—"ତୁମ ପାଖରେ ମୋ ଅଂଶ ରହିଗଲା ମାନୁଛି । ହେଲେ ମୋ ପାଖରେ ତ ତୁମର କୌଣସି ଅଂଶ ନାହିଁ । ସ୍ମୃତି ନାହିଁ । ତୁମଠାରୁ ମୁଁ କଅଣ ପାଇଲି ?"

"ଆଉ ପାଇବାକୁ ଯଦି ବାକି କିଛି ଅଛି, ତେବେ ନିଅ···ଏ ଶରୀର ପଡ଼ିଛି ।" ନିଜ ଶରୀରରୁ ଶାଢ଼ୀ ଖୋଲିଦେଇ ମୋ ସାମ୍ନାରେ ଠିଆ ହୋଇଗଲା

ଏବଂ ମୁଁ ସବୁ ଭୁଲିଗଲି । ମନେ ରହିଲା କେବଳ ଏକ କକ୍ଷ···ତା' ଭିତରେ ମୁଁ ଓ ଏକ ନାରୀ, ଯିଏ ମୋ ସନ୍ତାନର ଜନନୀ କିନ୍ତୁ ଅନ୍ୟର ବିବାହିତା ପତ୍ନୀ ।

ଆସିଲାବେଳେ ସେ ବ୍ୟଙ୍ଗ କଲା—"ଏଥର ସବୁ ପାଇଗଲ ତ ?"

ଦ୍ୱିତୀୟ ଦିନ ମାସକ ପାଇଁ ମୁଁ ସହର ଛାଡ଼ି ଦେଇଥିଲି ।

ତାର କଥା ଆଜି ଅଶୋକ ମନେ ପକାଇ ଦେଇଗଲା । ଅତୀତକୁ ପୁଣି ଥରେ ଉଙ୍କିମାରି ଦେଖିବା ପାଇଁ ଖୋରାକ ଯୋଗାଇ ଦେଇଗଲା ।

ସ୍ବର୍ଗ ମୋତେ ହଲେଇ ଦେଲା—"ଦେଖ୍ ବେ, ସେ କେଳା ଦୁଇଜଣଙ୍କୁ । ଆସୁଛନ୍ତି ।"

ମୁଁ ମୁଣ୍ଡ ଉଠେଇ ଅନେଇଲି । କେଳା ହସୁଥାଏ । ସ୍ତ୍ରୀଟିର ମୁହଁ ତଳକୁ ଥାଏ । ମୁଁ ସମୟର ଗତିକୁ ଅଟକେଇ ପାରନି, କିମ୍ବା ଜାଣି ମଧ୍ୟ ପାରନି, କେତେ ସମୟ ବିତିଯାଇଛି ଏହା ଭିତରେ । ସେ ଦୁଇଜଣ ପାଖେଇ ଆସିଲେ । କେଳାଟି ହସୁଥାଏ । ପକେଟରୁ ଦଶ ଟଙ୍କାର ନୋଟ୍‌ଟିଏ ବାହାର କରି ରଫିକ ହାତକୁ ଦେଇ କହିଲା—"ଦୁଇଟା ପାଉଁରୁଟି ଦେ ।" ମୁଁ ସ୍ତ୍ରୀଟିକୁ ଅନେଇଲି । ସେ ମୁହଁ ତଳକୁ କରିଥାଏ । ମୁଁ ତା' ଆଖି ଦେଖିବା ପାଇଁ ଚାହୁଁଥାଏ, ଯେଉଁଥିରେ ମୁଁ ମୋ ମା'ର ଛବି ଦେଖି ପାରିଥିଲି କେତେଘଣ୍ଟା ତଳେ ।

ପାଉଁରୁଟିକୁ ସ୍ତ୍ରୀ'ରେ ବୁଡ଼େଇ ଖାଉ ଖାଉ କେଳା କହିଲା—"ଆଜି ବାବୁ ଭାରି ଭଲ ଲୋକ । ଖେଳ ଦେଖିଲା ଆଉ ଦଶଟଙ୍କା ଦେଲା । ମୋତେ ବଲଦ ମାଲ୍ ଦେଲା । ଆଉ ମୋ ସ୍ତ୍ରୀ···ସେ ଏକ ଦେବୀ । ମୋ ପାଇଁ ସବୁ କରିପାରେ···ନହେଲେ ନାଗୁଣୀ । ମୋ ବିନା ଆଦେଶରେ କିଏ ହାତ ମାରିଦେବ ତା' ଦେହରେ···କଣ୍ଟା ଖାଇଯିବ ।" ହଠାତ୍ ସ୍ତ୍ରୀଟି କାନ୍ଦି ଉଠିଲା । କେଳା ନିର୍ବିକାର ଥାଏ । ମୁଁ ବୁଝିପାରିଲି, ନାଗୁଣୀର ବିଷଦାନ୍ତ ଭାଙ୍ଗି ଯାଇଛି । ବିବାହର ବନ୍ଧନରେ ବାନ୍ଧି ହୋଇ ନିଷ୍ପାପ ସ୍ତ୍ରୀ ନିଜ ସ୍ୱାମୀର ଆଦେଶକୁ ମାନି ନେଇଛି । ପଚାରିଲି—"ତୋ ନାଗର ବିଷଦାନ୍ତ ଭାଙ୍ଗିଲୁ କାହିଁକି ?"

"ପୁରୁଷର ଦମ୍ଭ ଭାଙ୍ଗିବା କଥା ନୁହେଁ ବାବୁ । ସେ କାପୁରୁଷ ହୋଇଯିବ । ଆଉ ଜାଣିଛ ବାବୁ—ପୁରୁଷର ଦମ୍ଭ ଭାଙ୍ଗିଗଲେ ସେ ମଲା ସଙ୍ଗେ ସମାନ । ମୁଁ ଯେମିତି ଅସଲି କେଳା···ମୋ ନାଗ ସେମିତି ଅସଲି ନାଗ । ମୋ ସ୍ତ୍ରୀ ସେ ଦେବୀ···ମୋ ନାଗୁଣୀ ।"

ମୁଁ ହସିଲି—"ତୁ ଅସଲ ନୁହଁ କିମ୍ବା ତୋ ନାଗ ମଧ୍ୟ ଅସଲ ନୁହଁ । ହିଁ ତୋ ନାଗୁଣୀ ଅସଲ, ହେଲେ ତା'ର ବିଷଦାନ୍ତ ତୁ ନିଜେ ଭାଙ୍ଗି ଦେଇଛୁ ।"

ସ୍ତ୍ରୀଟି ଚମକି ଉଠି ମୋ ଓଦା ଆଖିରେ ମୋତେ ଅନେଇଲା । କେଳା କିଛୁ ବୁଝିପାରିଲା ନାହିଁ । ଖାଲି ହୋ ହୋ ହୋଇ ହସି ଉଠିଲା ।

× × ×

ସେକେଣ୍ଡ ଶୋ'ର ଇଣ୍ଟରଭାଲ ଶେଷ ହେଲା । ଗୃହ୍ମ ଦୋକାନ ବନ୍ଦ କରିବା ଆରମ୍ଭ କଲା । ସାମ୍ନା କୋଠାର ଗେଟ୍ ବନ୍ଦକରି ଫାଦର୍ ବାହାରକୁ ବାହାରି ପଡ଼ିଲେ । ମୁଁ ପଚାରିଲି—"ଗୃହ୍ମ ଫାଦର୍ ଏତେ ରାତିରେ କୁଆଡ଼େ ଗଲେ ?"

"ଧର୍ମକର୍ମବାଲା ଲୋକ । ଯାଉଥିବେ କୁଆଡ଼େ ।"

"ହେଲେ ତାଙ୍କ ଘରକୁ ଯେଉଁ ପ୍ରକାରର ଲୋକ ଆସୁଛନ୍ତି, ମୋତେ କାହିଁକି ଥରେ ଥରେ ଭୀଷଣ ସନ୍ଦେହ ହୁଏ ?"

"ସେ ସବୁ ସେଇ ବଲାତ ଟୋକା ଯୋଗୁଁ । ଫାଦର୍ କଅଣ କରିବେ ? ତାଙ୍କ ସ୍ତ୍ରୀ ଘରର ସବୁ । ଫାଦର୍ ବୁଢ଼ାଲୋକ କଅଣ କରିବେ ?"

ମୁଁ ନୀରବରେ ମୁଣ୍ଡ ହଲେଇଲି । ଗୃହ୍ମ ପାଟିକଲା—"ଉଠ, ସେ ବେଞ୍ଚଟା ଭିତରେ ରଖ । ଡେରିହେଲେ ବୁଢ଼୍ ବୁମ ଦୋକାନ ବନ୍ଦ କରିଦେବ ।" ମୁଁ ଉଠି ପଡ଼ିଲି । ବେଞ୍ଚଟା ଭିତରେ ରଖି ଘରଟା ଝାଡ଼ୁ ମାରୁ ମାରୁ ଗୃହ୍ମ ପଚାରିଲା—"ଅଶୋକ ବାବୁ ଗଲାବେଳେ କଅଣ କହୁଥିଲେ ?"

ଦୀର୍ଘନିଃଶ୍ୱାସ ତ୍ୟାଗ କରି କହିଲି—"ବନଲତା ଛଅଦିନ ପରେ ପୁନର୍ବାର ଆସୁଛି ।"

ଗୃହ୍ମ ଚମକି ଠିଆହେଲା । ସନ୍ଦେହଭରା କଣ୍ଠରେ ପଚାରିଲା—"ତୁ ପଳେଇ ଯିବୁନି ତ ?"

"ନାଇଁ ଚାଚା, ମୁଁ ଆଉ କୁଆଡ଼େ ଯିବିନି । ଯାଇ ପାରିବିନି । ଯେଉଁ ବନ୍ଧନକୁ ଛିଣ୍ଡାଇବା ପାଇଁ ମୁଁ ଏତେଦିନ ଚେଷ୍ଟା କରୁଥିଲି, ତାହା ଜଣାପଡ଼ୁଛି ଆଉ ଯେମିତି ଛିଣ୍ଡିବ ନାହିଁ । ଥରକୁଥର ଛିଣ୍ଡିଛି । ତାକୁ ମୁଁ ଥରକୁଥର

ଛଣ୍ଡାଇଛୁ । ହେଲେ ପରମୁହୂର୍ତ୍ତରେ ପୁଣି ତାହା ଯୋଡ଼ ହୋଇ ଯାଇଛୁ । ହାତ ଥକ ଗଲାଣି ଚାଚା ।''

''ପିଲାକୁ ଦେଖିବାକୁ ଯିବୁ ?'' ଚାଚା ହସିଲା ।

''ନାହିଁ ବୃଗୁ...ସେ ମୋର କୁହେଁ...ପର...ତା' ସ୍ୱାମୀର ସନ୍ତାନ ।''

''ମୁଁ କିନ୍ତୁ ଦେଖିବାକୁ ଯିବ ।'' ଗୃଗୁ ଦୋକାନରେ ତାଲା ଦେଲା ।

ପକେଟର ସବୁ ଟଙ୍କା ଓ ଖୁଚୁରା ପଇସାକୁ ମୋ ହାତରେ ଦେଇ ଗୃଗୁ ଦୁଇ ବାହୁ ଟେକ ହାଇ ମାରିଲା । ମୁଁ ହାତର ଟଙ୍କା ଓ ପଇସାକୁ ମୁଠେଇ ଗୃଗୁ ଆଡ଼କୁ ବଢ଼େଇ ଦେଲି । ଗୃଗୁର ଦୁଇ ହାତ ଉପରେ ହିଁ ରହିଗଲା, ''ଏ କଅଣ...ଆଜି ତୋର କଅଣ ହେଲା ?''

''ନାହିଁ ଗୃଗୁ...ଭଲ ଲାଗୁନି । ମୁଁ ତୋର କିଏ ? କାହିଁକି ତୁ ପରିଶ୍ରମ କରି ମୋ ପାଇଁ ଅଯଥାରେ ଖର୍ଚ୍ଚ କରିବୁ ।''

ଲକ୍ଷ୍ୟକଲି ଗୃଗୁର ଆଖିରେ ଲୁହ ଭରିଗଲା । ମଣିଷମାନେ ଏତେ ଭାବପ୍ରବଣ ହୋଇ ପଡ଼ନ୍ତି କାହିଁକି ? ମୁଁ ବୁଝି ପାରେନା...ଏତେ ମାୟା ମମତା, ସ୍ନେହ କୁଆଡ଼ୁ ଆସେ ? ଦୁଇଟି ଅପରିଚିତ ଅଳ୍ପ କେତେଦିନର ପରିଚୟ ପରେ ଏତେ ଘନିଷ୍ଠ କେମିତି ହୋଇ ପଡ଼ନ୍ତି ? ଜଣେ ଜଣକୁ ଭୁଲି ପାରେନାହିଁ କାହିଁକି ? ମୁଁ ତ ନିଜ ବାପା ମା' ସମସ୍ତଙ୍କୁ ଭୁଲି ସାରିଲିଣି । ହେଲେ ମୋତେ କାହିଁକି କେହି ଭୁଲି ପାରୁନାହାନ୍ତି, ତା' ମୁଁ ବିଶ୍ଳେଷଣ କରିପାରୁ ନାହିଁ । ଗୃଗୁ ସହିତ ପରିଚୟ ବା କେତେଦିନର କିନ୍ତୁ ତା'ର ସ୍ନେହ ।

''ମୋର କେହି ନାହାନ୍ତିରେ । ପୁଅ ଥିଲେ ତୋରି ପରି ହୋଇ-ଥାନ୍ତା । ତୋତେ ପାଇ ମୁଁ ଭାବିଥିଲି ମୋତେ ମୋର ପୁଅ ମିଳି ଯାଇଛି । ତୁ ବି ମୋତେ ପର ଭାବୁଛୁ ?'' ସେ ମୋ ହାତ ଧରି ପକେଇଲା, 'ମଲେ ଦୁଇ ମୁଠା ମାଟି କବରରେ ଦେବୁ...ଏତିକି ମୋ କାମନା । ...ମୋ ପାଇଁ କଅଣ ତୁ ମୋ ପାଇଁ କରି ପାରିବୁନି ?'' ସେ ମୋତେ କାତର ହୋଇ ଲକ୍ଷ୍ୟକଲା । ମୁଁ ଆଉ କିଛି କହି ପାରିଲି ନାହିଁ ।

ପଛରୁ କିଏ ଜଣେ ପାଟିକଲା—''ମୁବାରକ୍...ବୃଗୁ ।''

ବୁଲି ଦେଖିଲି ନାରଣା...ପଛେ ଏକେଣ୍ଟ । ବୃଗୁ ପ୍ରଶ୍ନଭରା ଦୃଷ୍ଟିରେ ଚାହିଁଲା । ''ତୋର ଯୋଡ଼ ଆସିଛି । ଟଙ୍କାଏ ଫେଙ୍କିଥିଲୁ...ସକାଳୁ ଅଶି ଟଙ୍କା ପାଇବୁ ।'' ନାରଣା କଥା ଶୁଣି ଗୃଗୁର ମୁହଁରେ ହସ ଖେଳିଗଲା । ମୋ

ହାତକୁ ଧରି କହିଲା, "ତୋର ସାର୍ଟ ଚିରିଗଲାଣି । କାଲି ତୋ ପାଇଁ ଗୋଟିଏ ସାର୍ଟ ଆଣିବାକୁ ହେବ ।"

× × ×

ତା'ପରେ ଆମେ ବୁଲିବାକୁ ଆରମ୍ଭ କଲୁ । ରାସ୍ତାଟା ଶୂନଶାନ୍ ହୋଇ ଯାଇଥାଏ । ଏଇ ସହରରେ ମୁଁ ପାଠ ପଢ଼ୁଥିଲି । ଏଇ ସହରରେ ମୁଁ ନିଜର ଯୌବନକୁ ଅତି ଛିନ୍‌ଭିନ୍ କରି ତା'ର ପ୍ରତିଟି କୋଣରେ ଫିଙ୍ଗି ଦେଇଛି । ଏବେ ମଧ୍ୟ ଖୋଜିଲେ ଚିହ୍ନ ମିଳିବ । କିନ୍ତୁ ଯେଉଁ ଚିହ୍ନକୁ ମୁଁ ଘରୁ ବାହାରିଲାବେଳେ ପ୍ରତି ପଦକ୍ଷେପ ସହିତ ପଛକୁ ଫିଙ୍ଗି ଦେଇ ଆସିଥିଲି, ତାହା ଯେ ପୁନର୍ବାର ମୋ ଗ୍ରୀବା ଭିତରେ ମୋ ଅଜାଣତରେ ଆସି ଲାଗି ଯାଇଛି···ଏବଂ ମୁଁ ଅନୁଭବ କରୁଛି ଯନ୍ତ୍ରଣା ।

"ଗ୍ରହ···ସେ ପୁଣି ଆସୁଛି । ପୁନର୍ବାର ଯନ୍ତ୍ରଣା···ପୁନର୍ବାର ପଳାୟନ··· ।"

"ତାକୁ ଭୁଲି ପାରିବୁନି ?"

"ଚେଷ୍ଟା କରି ମଧ୍ୟ ସଫଳ ହୋଇ ପାରୁନି । ···ନିଜ ବାପା ମା'··· ପରିବାର···କାହାକୁ ତ ଭୁଲି ପାରୁନି । ଫାଦର ଠିକ୍ କହୁଥିଲେ···ମୁଁ ହିପୋକ୍ରାଇଟ···ଛଳନା କରୁଛି ଯାହା ନୁହେଁ ତାହା ଦେଖାଇବା ପାଇଁ ଚେଷ୍ଟା କରୁଛି । ପ୍ରକୃତରେ ଗ୍ରହ ମୁଁ ଭାରି ଦୁର୍ବଳ ।" ପ୍ରଥମ ଥର ପାଇଁ ମୁଁ ନିଜ ଗ୍ରୀବା ଭିତରେ ଅନୁଭବ କରୁଥିଲି କୋହ ।

"ମୁଁ ବି ତ କିଛି ଭୁଲି ପାରିନି । ମୋ ସ୍ତ୍ରୀ···ମୋ ପୁଅ···ମୋର ସମସ୍ତ ପରିବାର···ଏବେ ମଧ୍ୟ ସମସ୍ତେ ମନେ ଅଛନ୍ତି । ଜୀବନ ପଥରେ ଦେଖା ଦେଇଥିବା ପ୍ରତ୍ୟେକ ବ୍ୟକ୍ତି ମୋର ମନେ ଅଛନ୍ତି । ଭାବିଥିଲି ତୋତେ ଦେଖି ସବୁ ଭୁଲିଯିବି । ···ରହମାନ···ମୋ ପୁଅକୁ ଭୁଲିଯିବି । ···ହେଲେ କାହିଁ ? ଆମେ ମଣିଷରେ ପାଗଳ···କିଛି ଭୁଲି ପାରିବାନି । ଭୁଲିଗଲେ ଏତେ ଦୁଃଖ କାହିଁକି ପାଆନ୍ତେ ?"

ସାମ୍ନାରେ ଆମ ହୋଟେଲ । ବୁଢ଼ା ରାମ ବାହାରେ ଆମକୁ ଅପେକ୍ଷା କରି ବସିଥାଏ । ଆମେ ତା'ର ଶେଷ ଗ୍ରାହକ । ଆମର ଖାଇବା ପରେ ସେ ଦୋକାନ ବନ୍ଦ କରେ । ଦୁହେଁ ଭିତରେ ପ୍ରବେଶ କଲୁ । ଭିତରେ ପାଦ ଦେଇ ମୁଁ ଚମକି ପଡ଼ିଲି । ଗ୍ରହ ମଧ୍ୟ ଅବିଶ୍ୱାସଭରା ଚକ୍ଷୁରେ ସାମ୍ନାକୁ ଲକ୍ଷ୍ୟକରି

ରହୁଥାଏ । ଫାଦର ଆମକୁ ଦେଖି ହସିଲେ । ତାଙ୍କ ଟେବୁଲ ଉପରେ ଦେଶୀ ମଦର ବୋତଲ ଓ କମା ରଖା ହୋଇଥାଏ । ତାଙ୍କ ନିକଟରେ ବସିପଡ଼ି ମୁଁ ଆଶ୍ଚର୍ଯ୍ୟରେ ପ୍ରଶ୍ନକଲି, "ଆପଣ ଫାଦର୍‌···ଏଠାରେ··· ?"

ରଫିକ ଗୁଡ୍‌ସ୍‌ କହିଲା, "ହଁ ଫାଦର୍‌···ଆପଣ ଧର୍ମକର୍ମବାଲା···ଏଠି ଭାଟିରେ ?"

ଫାଦର୍‌ ଗ୍ଲାସ ଉଠେଇ ଖାଲିକଲେ । ଓଠ ପୋଛୁ ଆମକୁ ଲକ୍ଷ୍ୟ କଲେ, "ମୁଁ ମଣିଷ ରଫିକ···ମୋର ମଧ୍ୟ ଦୁର୍ଗୁଣ ଅଛି । ମୁଁ ମଧ୍ୟ ଛଳନା କରିପାରେ । ନିଜ ଅଶାନ୍ତ ଆତ୍ମାକୁ ନେଇ ଶାନ୍ତ ଶରୀରର ପୋଷାକ ପିନ୍ଧାଇ ମୁଁ ବେଶ୍‌ ଅଭିନୟ କରିପାରେ । ହେଲେ ଯେତେବେଳେ ଶରୀର କ୍ଳାନ୍ତ ହୋଇପଡ଼େ···ଆତ୍ମା ଯେତେବେଳେ ନିଜର ରୂପ ପରିପ୍ରକାଶ କରିବାପାଇଁ ଉଦ୍ୟମ କରେ, ସେତେବେଳେ ନିଜର ଦୋଷ ଘୋଡ଼ାଇବାପାଇଁ ମୁଁ ଏଇ ଭାଟିକୁ ଚାଲିଆସେ ।" ସେ କମା ଖାଇବା ଆରମ୍ଭ କଲେ ।

ବୃଦ୍ଧ ଟମ ଗୁଡ୍‌ସ୍‌ ସାମ୍ନାରେ ଏକ ବୋତଲ ଓ ଖାଇବାକୁ ରଖିଦେଲା । ମୁଁ ଧିରେ ଗୁଡ୍‌ସ୍‌କୁ କହିଲି, "ଗୁଡ୍‌ସ୍‌ ଆଜି ମୁଁ ବି ପିଇବ ।"

ଚାଚା ହସିଲା—"ଆଜି ତାହାହେଲେ ତୁ ମଣିଷ ହେଲୁ । ତୋର ସବୁ ଚେଷ୍ଟା ନଷ୍ଟ ହୋଇଗଲା । ତୁ ତୋ ନିଜ ପରୀକ୍ଷାରେ ହାରିଗଲୁ ।"

ବୃଦ୍ଧ ଟମ ମୋ ସାମ୍ନାରେ ବୋତଲ ଥୋଇଲା । ମୁଁ ପିଇବା ଆରମ୍ଭ କଲି ଏବଂ ହାରିବାକୁ ଲାଗିଲି । ତିନି ବର୍ଷର ପରୀକ୍ଷା ଓ ଅନୁଭୂତ ମୋ ନିକଟରୁ ଧୀରେ ଧୀରେ ଦୂରେଇ ଗଲେ । ନିଶା ମୋତେ ଘାରି ଆସିଲା । ମୁଁ ଖାଇବା ବନ୍ଦ କରି ମୋ ଚାରିପଟକୁ ଚାହିଁଲି । ଫାଦର କହୁଥାନ୍ତି—"ଆଇ ଏମ୍‌ ଏ ହିପୋକ୍ରାଇଟ୍‌ । ଏ ଦୁନିଆର ପ୍ରତ୍ୟେକ ଗୋଟାଏ ଗୋଟାଏ ହିପୋକ୍ରାଇଟ୍‌ ।"

ଚାଚା ଟେବୁଲ ଉପରେ ବିଧାମାରି କହୁଥାଏ—"ଆପଣଙ୍କ ମନ ଅସ୍ଥିର । ଆପଣ ଲୋକଙ୍କୁ କଅଣ ବୁଝାଉଥିବେ ?"

"ମୁଁ ନିଜେ କିଛି ବୁଝିନି । ଲୋକଙ୍କୁ କଅଣ ବୁଝାଇବି ? ମୁଁ କହୁଥିଲି ନା···ମୁଁ ଏକ ହିପୋକ୍ରାଇଟ୍‌ । ଈଶ୍ବର···ଗଡ୍‌···କିଏ ମୁଁ ଜାଣିନି । ପେଟ ପାଇଁ ଏକ ଉପାୟ । କାମ ନ କରି ଆରାମ କରିବାର ଏକ ସୁବିଧା ଉପାୟ । ବାଇବେଲ୍‌ ଆଜି କିଏ ବୁଝିଛି ? କୋରାନ୍‌ ବା ଗୀତାକୁ ବିଶ୍ଳେଷଣ କିଏ କରିଛି ? ତୁମେ କରିଛ ?"

"କୋରାନ୍ କଅଣ ମୁଁ ଜାଣେନ ।"

"ଗୀତା ମୁଁ କେବେ ପଢ଼ିନ ।"

"ମୁଁ କିନ୍ତୁ ପଢ଼ିଛୁ ।" ଫାଦର କହୁଥାନ୍ତି—"ସବୁ ଧର୍ମଶାସ୍ତ୍ର ପଢ଼ିଛୁ । ସବୁଥିରେ ଅନ୍ଧବିଶ୍ୱାସ···ସୁପରଷ୍ଟିସନ । ଭଗବାନ ନାହିଁ···ଭଗବାନ ଥିଲେ ମୋ ସ୍ତ୍ରୀ ଅନ୍ୟ ପୁରୁଷ ବାହୁରେ ନିଜକୁ ଓ ନିଜ ଝିଅକୁ ସମର୍ପି ଦେଇ ମୋତେ ନୀରବରେ ଘରେ ଶୋଇବାକୁ ଉପଦେଶ ଦେବାକୁ ସାହସ କରି ନ ଥାନ୍ତା । ମୁଁ ଦୁର୍ଘଟଣାରେ ନିଜ ପୌରୁଷତ୍ୱ ହରାଇ ଆଜି ଏକ ନପୁଂସକ ହୋଇ ଏ ଭାଟିରେ ମୁହଁ ଲୁଚାଇ ଦେଶୀ ମଦ ପିଉ ନ ଥାନ୍ତି ।"

"ଫାଦର୍ ଭୁଲିଯାନ୍ତୁ ସବୁ ।" ମୁଁ କହିଲି ।

ସେ ହସିଲେ—"କେହି କିଛି ଭୁଲି ପାରିବେ ନାହିଁ । ଆମେ ମଣିଷ··· ମଣିଷ କେବେ ଭୁଲି ପାରେନ । ମୋତେ ଦେଖ କିଛି ଭୁଲି ପାରିନ । ସବୁ ସ୍ପଷ୍ଟ ମନେଅଛି ।"

"ମୁଁ ମଧ୍ୟ ଫାଦର୍···ମୋ ପୁଅ ରହମାନ···ତାକୁ··· ଜାହିଦା···ମୋ ସ୍ତ୍ରୀ···ତାକୁ···କାହାକୁ ତ ଭୁଲି ପାରିନ ।" ଚାଚା କାନ୍ଦୁଥିଲା ।

ମୋ ଭିତରର କୋହ ହଠାତ୍ ବାଧା ନ ମାନି ବାହାରକୁ ବାହାରି ଆସିଲା ଏବଂ ମୁଁ କାନ୍ଦି ଉଠିଲି । ଆଶ୍ଚର୍ଯ୍ୟ ହୋଇ ଫାଦର୍ ଓ ଚାଚା ମୋତେ ଅନେଇଲେ । ମୋ ସ୍ମୃତିପଟର ଜଞ୍ଜିର ପୁଣି ଥରେ ଯୋଡ଼ି ହୋଇ ଯାଇଥିଲା ଏବଂ ମୁଁ ପୁନର୍ବାର ବନ୍ଦୀ ହୋଇ ସାରିଥିଲି ।

ଚାଚା ଖାଇବା ବନ୍ଦକରି ମୋ ମୁଣ୍ଡକୁ ତା' କାନ୍ଧରେ ରଖି ମୋତେ ବୁଝାଉଥିଲା—"କାନ୍ଦନା···ମେରେ ବଚ୍ଚେ···ରହମାନକୁ ଭୁଲିଛି···କେବଳ ତୋ ମୁହଁକୁ ଚାହିଁ···ତୁ କାନ୍ଦନା···।"

ଫାଦର ହଠାତ୍ ହସି ଉଠିଲେ—"ଏଇଟା ମଧ୍ୟ ସବୁଠାରୁ ବଡ଼ ହିପୋକ୍ରାଇସି ।"



('କଥାକାର', ଅକ୍ଟୋବର ୧୯୭୬)

# ଅସଂଲଗ୍ନ

ଡ୍ରାଇଭର ସଲାମ କଲା—"ଦୀଶା ! ଆଜି ତୁମର ଛୁଟି ।" ଡ୍ରାଇଭରର ଫେରିବାର ଶବ୍ଦ । ପରଦା ଟେକିଲି । ସନ୍ଧ୍ୟା ଅନେକବେଳୁ ନିଜର ଶାନ୍ତ ସୁନ୍ଦର କମନୀୟ ରୂପକୁ 'ବିଉଟି କଣ୍ଟେଷ୍ଟ'ରେ ପ୍ରଦର୍ଶନ କରି ଚାଲିଛି । ବିଚାରକମାନେ ବିରକ୍ତ ହେଲେଣି । କାରଣ ପରବର୍ତ୍ତୀ ପ୍ରାର୍ଥୀ ରାତ୍ରୀ ! ଏଥର ମୋତେ ଯିବାକୁ ପଡ଼ିବ । ସେ ମୋତେ ଅପେକ୍ଷା କରିଥିବ । ବିଳମ୍ବ ହେଲେ ହୁଏତ ଫେରି ଯାଇପାରେ ।

ନିଜକୁ ପ୍ରସ୍ତୁତ କରିନେଲି । କାହାର ପାଦଶବ୍ଦ । କିଏ ହୋଇପାରେ ? ଅମିତା ନୁହେଁ ତ···! ନା ଅମିତାର ମା' ଭୀଷଣ କଠୋର । ଝିଅକୁ ସନ୍ଧ୍ୟା ପରେ ବାହାରକୁ ଛାଡ଼ନ୍ତି ନାହିଁ । ଅମିତାଟା କିନ୍ତୁ ଭାରି ସେଣ୍ଟିମେଣ୍ଟାଲ । ଆଇ ଡୋଣ୍ଟ ଲାଇକ୍ ଇଟ୍ । କିନ୍ତୁ ତା'ର ଚାଲି···! ହ୍ୱାଃ···ଟେରିଫିକ୍ ! ଗ୍ରାଣ୍ଡ··· ବର୍ତ୍ତମାନ ସେ ପୁରୁଣା । ଦୀପ୍ତି ହୋଇପାରେ । ଆବସର୍ଡ ! ମୋର ସ୍ମରଣଶକ୍ତି ନିଶ୍ଚୟ କମି ଆସୁଛି । ଆଜି ଦୀପ୍ତି ଚୌଧୁରୀ ସହ ବମ୍ବେରେ ପହଞ୍ଚି ଯାଇଥିବ । ଦୀପ୍ତି ଶରୀରର ଉଷ୍ଣତା ଖୁବ୍ ଏଞ୍ଜୟବୁଲ । ପ୍ରତ୍ୟେକ ଅଙ୍ଗର କୋମଳତା ଖୁବ୍ ମଧୁର । କିନ୍ତୁ ଯଦି ସେ ଆଉ ଟିକିଏ ସ୍ଲିମ ହୋଇ ପାରନ୍ତା ନା !···ସେ ପଞ୍ଜାବୀ ଝିଅ ଯଶପାଲ ନିଶ୍ଚୟ ! ରବିଶ୍ !! ମୁଁ ଏତେ ଶୀଘ୍ର କଥାଗୁଡ଼ା ଭୁଲି ଯାଉଛି କିପରି ? ଏଇ ଦୁଇଘଣ୍ଟା ପୂର୍ବରୁ ତ ସେ ଫୋନ୍ କରିଥିଲା । ତା' ବଡ଼ଭାଇ ଘରେ ଉପସ୍ଥିତ ଥିବାରୁ ସେ ଆସି ପାରିବ ନାହିଁ, କ୍ଷମାପ୍ରାର୍ଥନା କରିଥିଲା, କଥା ଦେଇ ଆସି ନ ପାରିଥିବା ହେତୁ । ଭଲ ହୋଇଛି । ତା'ର ସେ ବ୍ରଣଭରା ମୁଖ ଆଉ ଭଲ ଲାଗୁନାହିଁ । ଆଉ ବାକି ଅନେକ ତ ଅନେକ ପୁରାତନ କ୍ୟାଲେଣ୍ଡରର ନଗ୍ନନାରୀ ଛବି ପରି । ସାହସ କରିବେନି ଆସିବାକୁ । ତେବେ···?

ମିରର୍‌କୁ ଲକ୍ଷ୍ୟକଲି । ପାଦଶବ୍ଦ ପାଖେଇ ଆସିଲା । ତୀବ୍ର ଏସେନ୍‌ସର ମହକ । ପରଦା ଆଡ଼େଇବାର ଶବ୍ଦ ।

"ବସ୍ !"

ଓଃ ! ନିବେଦିତା !! ମୋ ନୂଆ ଷ୍ଟେନୋ !

"ବସ୍ !"

"ହୁଁଃ !" ଘ୍ରାଣେନ୍ଦ୍ରିୟ ଆଜି ଝିଅ ନିବେଦିତା ଖୁବ୍ ସୁନ୍ଦର । "ହଠାତ୍ ତୁମେ ?"

ଶାଢ଼ୀର ପଣତ ଧୀରେ ଧୀରେ ତଳକୁ ଖସି ପଡ଼ୁଛି । ଚକ୍ଷୁ ଦୁଇଟି ତୀକ୍ଷ୍ଣ ବର୍ଚ୍ଛା । ଓଠରେ ଅସମ୍ଭବ କମ୍ପନ । ସୁଉଚ୍ଚ ବରଫାବୃତ ପାହାଡ଼ ଉପରୁ ବରଫ ସୂର୍ଯ୍ୟ କିରଣରେ ତରଳିବାକୁ ଆରମ୍ଭ କରିଛି । ଆବରଣ ପରସ୍ତ ପରସ୍ତ ହୋଇ ହଟି ଯାଇଛି ।

ବେଡ୍‌ରୁମ୍‌ରୁ ବୁଲିବାକୁ ଆରମ୍ଭ କରିଛି । ଉଜ୍ଜ୍ୱଳ ଆଲୋକ ନିଷ୍ପ୍ରଭ ହୋଇ ଆସିଛି । ମସ୍ତିଷ୍କ ମଧ୍ୟରେ କେତୋଟି ଜ୍ୟାମିତିକ ରେଖା ପରସ୍ପରକୁ ଭେଦ କରି ଚାଲିଛନ୍ତି । ଦୁଇଟି ଗ୍ଲାଇ ବୃତ୍ତରେ ଘରିଧିର କର୍ଡ଼େ କଡ଼େ ଘୂରୁଛନ୍ତି । "ଗ୍ଲାଡ଼ନ୍ତୁ ।" କ୍ଲାନ୍ତ ସ୍ୱରରେ ପ୍ରାର୍ଥନା ।

"କୁଆଡ଼େ ଯିବ ?"

"ବାଥରୁମ୍ !"

"ଯାଅ ।"

"ଏମିତି ?"

"ଓଃ ! ପ୍ଲେସ୍, ଲୁକ...ଦେଖ କାନ୍ଥରେ ତୁମ ନ୍ୟୁଡ଼ର ଗ୍ଲାଇ । ହାଓ ଆର୍ଟିଷ୍ଟିକ ! ଆଣ୍ଡ ଆଇ ଲାଇକ ଆର୍ଟ । ରିୟଲ ଆର୍ଟସ୍...ନାଚୁରେଲ୍ ଆର୍ଟସ୍ ।"

"ବସ୍ !"

"ହୁଃ !"

"କିଛି ଟଙ୍କା ଦରକାର ଥିଲା ।" ତା'ର ନିବେଦନ । ପର୍ସ ପକେଟରୁ କାଢ଼ି ମୁଁ ନିବେଦିତାର ହାତରେ ରଖି ଦେଉଛି । "ଦୁଇ ହଜାର ଅଛି । ମ୍ୟାନେଜ ।"

"ଧନ୍ୟବାଦ ବସ୍ ।" ସେ କୃତଜ୍ଞତାରେ ଓଠ ଲମ୍ବେଇ ଦେଉଛି । ଗୁଡ୍ । ଏଇ ଝିଅଟାର ଅଙ୍ଗଭଙ୍ଗୀ ବେଶ୍ ଆକର୍ଷଣୀୟ । ଧନ୍ୟବାଦ ଦେବାର ଢଙ୍ଗ ମଧ୍ୟ ନୂଆ । ରୁମାଲରେ ମୋ ଓଠରୁ ସେ ଲିପଷ୍ଟିକର ଦାଗ ଛଡ଼େଇ ଦେଉଛି ।

"ବାଏ ବସ୍ ।" କବେଇତାର ସିବା ଶବ୍ଦ । ଓ୍ୟାଲ୍‌କ୍ଲକରେ ସାଢ଼େ ଆଠ । ଘଣ୍ଟାଏ ନଷ୍ଟ ହେଲା । ଯାହାହେଉ ମନ୍ଦ ହୋଇନ । ଏପରି ଅଣ୍ଡା ଘାଉରେ ନବେଦତା ପରି ଝିଅ ହିଁ ମନକୁ ଉଷ୍ଣତା ଦେଇ ପାରିବ । ତଥାପି ମୋ ମନ ମୁତାବକ ନୁହେଁ । ମୁହଁଟା ଅଧା ଗୋଲ । ଠିକ୍ ଜାପାନୀମାନଙ୍କ ପରି ।

ନା···ଆଉ ବିଳମ୍ବ କଲେ ହେବନାହିଁ । ସେ ଯଦି ଫେରିଯାଏ, ତେବେ ଆଜି ଘଡଟା ନଷ୍ଟ ହୋଇଯିବ । ବର୍ତ୍ତମାନ ମୁଁ ନିଜ ପୋଷାକକୁ ଲକ୍ଷ୍ୟ କରୁଛି । ହୁଁ···ଚେଞ୍ଜ ଦରକାର । ···ପ୍ରତି କୋଣରୁ ନିଜକୁ ଲକ୍ଷ୍ୟକଲି । ଓ଼:କେ: । ଏଥର ଠିକ୍ ଅଛି । ଡ୍ରୟାରରୁ କାର୍ ଷ୍ଟିବ ବାହାର କଲି । ଡ୍ରେଜେଷ୍ଟ ଖୋଲିଲି ଏବଂ ଅଳ୍ପ ସମୟ ଖୋଜିଲି ପରେ···ହୁଁ···ଏଇ ପ୍ୟାକେଟଟା । ପକେଟରେ ରଖିଲି ।

ଗୁର୍ଖା ଦରବାନ ଗେଟ୍ ଖୋଲି ସଲାମ କରୁଛି । ନୀରବରେ ମୁଁ ବାଁ ହାତର ପ୍ରଥମ ଅଙ୍ଗୁଳି ହଲାଇ ଦେଇ ଏକସିଲ୍‌ଟେରର ଉପରେ ଡାହାଣ ପାଦର ଚାପ ଦେଉଛି ।

ରାଜପଥରେ ଭୀଷଣ ଭିଡ଼ । ଘଡ଼ିକୁ ଲକ୍ଷ୍ୟକଲି । ନଅଟା । ସାଢ଼େ ନଅଟାରେ ତା' ହଷ୍ଟେଲ ବନ୍ଦ ହୋଇଯାଏ । ହାତରେ ଅଳ୍ପ ସମୟ । ଯଦି ସେ ଫେରିଯାଏ ? ସମ୍ମୁଖରେ ସିଗ୍‌ନାଲ । ଲାଲ୍ ବତୀ । ସିଗ୍‌ନାଲ ନ ମାନି ଆଗକୁ ଚାଲିଛି । ପଛରେ ଟ୍ରାଫିକ ପୋଲିସ ମୋ କାର୍ ନମ୍ବର ଟିପୁଛି । ବ୍ୟାକ ଭ୍ୟୁ ମିରରରେ ଲକ୍ଷ୍ୟକଲି । ପୋଲିସ ସର୍ଜେଣ୍ଟ ମଟର ସାଇକେଲ୍‌ରେ ମୋତେ ଫଲୋ କରୁଛି । ମୁଁ ଟ୍ରାଫିକ ନିୟମ ଭାଙ୍ଗିଛି ।

ଅଳ୍ପ ଦୂରରେ କଫି ହାଉସ । ସହରର ପ୍ରତିଷ୍ଠିତ କଲେଜର ଅତି ନିକଟରେ । କଲେଜ ହତା ମଧ୍ୟରେ ଲେଡ଼ିଜ୍ ହଷ୍ଟେଲ । କଫି ହାଉସରେ ମୋ ପାଇଁ ସବଦା ଟେବୁଲ ରିଜର୍ଭ ଥାଏ । ଆଜି ମଧ୍ୟ ଥିବ । ମୋ ରିଜର୍ଭ ଟେବୁଲରେ ବସିଥିବ ପୁଷ୍ପା···ପୁଷ୍ପା ପଟ୍ଟନାୟକ । ଅନେକ ଧୈର୍ଯ୍ୟ ଧରିବାକୁ ପଡ଼ୁଛି । ଶରୀରରେ ଅସମ୍ଭବ ଉତ୍ତେଜନା··· । ଗତି କମେଇ ଦେଲି । ଠିକ୍ କଫି ହାଉସର ପୋର୍ଟିକୋରେ ବ୍ରେକ୍ ଦେଲି । ଦରବାନ ଚହ୍ଲି ପାରି ସଲାମ କରୁଛି । ପୋଲିସ ସର୍ଜେଣ୍ଟ ମଟର ସାଇକେଲ ଷ୍ଟାଣ୍ଡ କରି ଆଗେଇ ଆସୁଛି ମୋ ନିକଟକୁ । ଚକ୍ଷୁରେ କ୍ରୋଧ···ପଦବୀର ଦମ୍ଭ । ମୁଁ ମୁଣ୍ଡ ଟେକୁଛି ।

"ଆପଣ ।" ଚହ୍ଲି ପାରୁଛି, "କ୍ଷମା କରନ୍ତୁ ।" ସେ ଖୁବ୍ ଲଜ୍ଜିତ ।

"ନେଭର ମାଇଣ୍ଡ ।" ମୁଁ ହସୁଛି । ସର୍ଜେଣ୍ଟ କୃତ୍ୟ କୃତ୍ୟ ହୋଇ ଫେରୁଛି ।

ମ୍ୟାନେଜର ମୋତେ ଇଙ୍ଗିତ କରୁଛନ୍ତି ନମସ୍କାର କରିଯାଇ । ଯା'ର ମାନେ ମୋ ରିଜର୍ଭ କେବିନରେ ମୋତେ ସେ ଏ ପର୍ଯ୍ୟନ୍ତ ଅପେକ୍ଷା କରିଛନ୍ତି । ଆଶ୍ଚର୍ଯ୍ୟ ହେଲି । ଯଦି ଏ ପର୍ଯ୍ୟନ୍ତ ଯାଇନ, ତା'ମାନେ ଆଉ ଯାଇ ମଧ୍ୟ ପାରିବେନି । ଏ ପର୍ଯ୍ୟନ୍ତ କେହି ଯାଇପାରି ନାହାଁନ୍ତି । ଗଣନାରେ ମୋର କେବେ ଭୁଲ୍ ହୋଇନାହିଁ ନେଭର୍ । ମ୍ୟାନେଜର ମୋତେ ପ୍ରଶ୍ନ କରୁଛନ୍ତି ମୋ ଡିନର ବିଷୟରେ । ଅର୍ଡ଼ର ଦେଇ ମୁଁ ଆଗେଇ ଯାଉଛି । ବର୍ତ୍ତମାନ ମୁଁ ଖୁବ୍ ଗମ୍ଭୀର ।

ଅର୍କେଷ୍ଟ୍ରା ବାଜୁଛି । ଡ୍ୟାନସିଙ୍ଗ ଫ୍ଲୋରରେ ମୃଦୁ କମ୍ପନ । କେତୋଟି ମିଳାମିଶା ହୃଦସ୍ପନ୍ଦର ଦୀର୍ଘଶ୍ୱାସ, ହାତ ପାହାନ୍ତାରେ ଜଳ ଥିଲେ ମଧ୍ୟ ତୃଷାର୍ତ୍ତ ପିଇ ପାରିବ ନାହିଁ । କେତେକ ମନ୍ତବ୍ୟ ଦେବେ । ହୁଃ·· ଅଲ୍ ରଟନ୍ ଥିଙ୍ଗସ୍ । ସେଇ ମାତ୍ର ଗୋଟିଏ କଥା । ···ଅତୀତରେ ନାହିଁ, ତେଣୁ ବର୍ତ୍ତମାନରେ ମଧ୍ୟ ହେବନାହିଁ । ଅର୍କେଷ୍ଟ୍ରାର ଉତ୍ତେଜକ ସଙ୍ଗୀତ ସହ ହଲ୍‌ରେ ଗୁଞ୍ଜନ କରୁଥିବା କୋଳାହଳ, ଚନ୍ଦ୍ରାମୁକ୍ତ ହସର ଲହଡ଼ି, ଭିନ୍ନ ଭିନ୍ନ ଶରୀରର ସ୍ୱେଦ ଗନ୍ଧ, ବିଭିନ୍ନ ଦେଶର ଏସେନ୍‌ସରେ ମହକ ମିଶି ଏକ ହୋଇ ଯାଇଛି । ଯଦି ଏହା ମଧ୍ୟରୁ କୌଣସି ଗୋଟିଏକୁ ପୃଥକ କରି ଦିଆଯାଏ ତେବେ ସମ୍ପୂର୍ଣ୍ଣ ଛନ୍ଦଟି ନଷ୍ଟ ହୋଇଯିବ ।

କେବିନ୍ ନିକଟରେ ଠିଆ ହୋଇ ମୁଁ ପରଦା ଆଡ଼େଇଲି । ଦୁଇ ପାପୁଲି ମଧ୍ୟରେ ଗ୍ଲେଟ ମୁହଁଟିକୁ ରଖି ଟେବୁଲ ଉପରେ କହୁଣୀ ଭରା ଦେଇ ସେ ବସିଛି । "ହ୍ୟାଲୋ !" ସେ ଶିକାରୀର ବନ୍ଧୁକ ଦେଖି ଅସହାୟ ଶିକାର ପରି ଭୀତ ଦୃଷ୍ଟିରେ ମୋତେ ଲକ୍ଷ୍ୟ କରୁଛି । ମୁଁ ତା' ନିକଟରେ ବସି ନିଜର ବିଳମ୍ବ ପାଇଁ କ୍ଷମାଭିକ୍ଷା କରୁଛି । ସେ ନୀରବ । "ଓଃ ! ଇଶ୍ୱର · ସେ ସମର୍ଥିଙ୍ଗ !" ମୁଁ ବିଚଳିତ । ଯୁବତୀ ଗମ୍ଭୀର ହେଲେ ମୋତେ ଭଲ ଲାଗେ ନାହିଁ ।

କଣ୍ଢେଇରେ ଗୁଞ୍ଚ ଦେଲେ ଯେପରି ସେ ନାଚେ, ଠିକ୍ ସେଇପରି ସେ କଫି ଢାଳି କଲା ଏବଂ ମୋ ହାତକୁ ବଢ଼େଇ ଦେଇ ନୀରବରେ ବସି ପଡ଼ିଲା ପୂର୍ବପରି । ମୁଁ ଠିକ୍ ଆଶା କରିଥିଲି ଏଇପରି କିଛି । ଏଇଟା ନୂଆ ନୁହେଁ । ଅନେକଥର ଏଇପରି ପରିସ୍ଥିତି ମୋ ସମ୍ମୁଖରେ ମଥା ଟେକିଛି ଏବଂ ପରକ୍ଷଣରେ ହାର ମାନିଛି । ମୁଁ କଥା ଖୁବ୍ କମ୍ କୁହେ । ମୁଁ ଆଗାମୀ ପଦକ୍ଷେପ ପାଇଁ ନିଜକୁ ପ୍ରସ୍ତୁତ କରିନେଲି ।

କଫି ଶେଷ କରି ସିଗାରେଟରେ ଅଗ୍ନି ସଂଯୋଗ କଲି । କେବଳ ଧୂଆଁ । ତା' ମୋ ମଧ୍ୟରେ ଧୂଆଁ ଜାଲକୁ ବିସ୍ତାର କରି ଦେଇଛି । ଧୂଆଁର ଗୋଲମାଳିଆ ବକ୍ରରେଖାମାନଙ୍କ ମଧ୍ୟରେ ମୁଁ ଠିକ୍ ପରିଷ୍କାର ତା' ମୁହଁ ଦେଖି ପାରୁନି । ଓପର ଓଠକୁ ଦାନ୍ତରେ ଚିପିଧରି କିଛି ଗୋଟାଏ ନିଷ୍ପତ୍ତି କରୁଛି ବୋଧହୁଏ । ଧୂଆଁ ତା' ମୁହଁକୁ ଘୋଡ଼ାଇଲା । ବାଦଲ ଖଣ୍ଡେ ଯେପରି ଉଚ୍ଚ ଉଚ୍ଚ ପାହାଡ଼ର ଶିଖରରେ ପିଟିହେଲା । ସେ ମୁହଁ ବୁଲାଇ ନେଉଛି । ସିଗାରେଟ ଗନ୍ଧ ସେ ପସନ୍ଦ କରେନାହିଁ । ତା' ନିକଟରେ ପ୍ରତ୍ୟେକଥର, ଅବଶ୍ୟ ଏହା ପୂର୍ବରୁ, ଛଳନା କରିଛି ସିଗାରେଟ ନ ପିଇବାରେ । ଥରେ ଥରେ ଗନ୍ଧ ଜାଣିପାରି କୁହେ—"କାହିଁକି ସିଗାରେଟ ପିଅ ? ଛାଡ଼ିଦିଅ ସେ ସବୁ ।" ଆଜି କିନ୍ତୁ କିଛି କହିଲା ନାହିଁ । ମୁଁ ଜାଣିଥିଲି । ଆଜି ସେ ତା' ଇଚ୍ଛା ବିରୁଦ୍ଧରେ ମୋର ପ୍ରତ୍ୟେକ ଆଦେଶ ମାନିବ । ମାନିବାକୁ ବାଧ୍ୟ ହେବ । ଯାହା କହିବି ·· ଯାହା କରିବି···କିଛି ଆପତ୍ତି କରିବ ନାହିଁ ।

ମନର ପ୍ରତ୍ୟେକ ଇଚ୍ଛା, କାମନା, ଭାବନାର ଯଦି ମୁଁ ବହୁ ପୂର୍ବରୁ ଗଳାଚିପି ମାରି ଦେଇ ନ ଥାନ୍ତି, ତେବେ ନିଷ୍ଠୁର ଜୀବନ ମଧ୍ୟରେ ଆପଦତା ମୋତେ ବ୍ୟଥିତ କରିଥାନ୍ତା । ଏବେ ତ ଅଭ୍ୟାସରେ ପରିଣତ ହୋଇ ସାରିଲଣି । ସିଜନାଲ୍ ଟିମ୍ବର ଉପରେ ଆଉ କୌଣସି ଋତୁର ପ୍ରଭାବ ପଡ଼ିବ ନାହିଁ । ଏଇ ଜୀବନର ପ୍ରତ୍ୟେକ ଅଂଶରେ ତା'ର ହସ, ଅଭିମାନ, ଅନୁରୋଧ, ଅନୁରାଗ ସବୁ ଖେଳେଇ ହୋଇ ରହିଛି ।

ମୁଁ କିଛି ନିଷ୍ପତ୍ତି କରିଛି ଏବଂ ତାହା କାର୍ଯ୍ୟରେ ପରିଣତ କରିବାକୁ ଯାଉଛି । "ଲୁକ···ଦେଖ ପୁଷ୍ପା, ଏପରି ଚୁପ୍ ହୋଇ ବସି ରହିଲେ, ମୁଁ ତୁମକୁ କିଛି ସାହାଯ୍ୟ କରି ପାରିବି ନାହିଁ । ଆଇ ଆମ୍ ହେଲ୍‌ପଲେସ୍ । ଏମିତି ଚୁପ୍ ହୋଇ ବସିବା ପାଇଁ ତ ମୁଁ ତୁମକୁ ଏଠାକୁ ଡାକି ନ ଥିଲି ।"

"ତାହାହେଲେ ସେ ଚିଠି ତୁମେ ହିଁ ଦେଇଥିଲ ?"

"ଆଉ ଏବେ ବି ସନ୍ଦେହ ଅଛି ?"

"ନା···ତେବେ ପ୍ରଥମେ ବିଶ୍ୱାସ କରିପାରି ନ ଥିଲି ।"

"ଏସ୍ପଲି ?"

"କିନ୍ତୁ ସେ ଚିଠିର ଅର୍ଥ ମୁଁ ଠିକ୍ ବୁଝି ପାରୁନି ।"

"ତେବେ ଏଠାକୁ ଆସିବାର ଅର୍ଥ ?"

ମୋ ପ୍ରଶ୍ନର ଉତ୍ତର ଦେବାପାଇଁ ସେ ଅସମର୍ଥ । ମୋତେ ହସ ଲାଗୁଛି ।

"ହଷ୍ଟେଲରୁ ଅନୁମତି ନେଇ ଆସିଛ ତ ?"

ପୁନର୍ବାର ନୀରବତା । ମୁଁ ହସୁଛି ।

"ମୁଁ ତୁମକୁ ପ୍ରେମକରେ । ତା' କଣ୍ଠରେ ମିନତି ।

"ସବୁ ବୁଝି, ସବୁ ଜାଣି, ପୁନର୍ବାର ଏ ଛଳନା···ଏ ପ୍ରତାରଣା ଆଉ କାହିଁକି ?"

ସେ ମଥାନତ କରିଛି । ତା' ମଥାର କଳାଘନ କୁନ୍ତଳରୁ ଗୋଟାଏ ମୋ କୋଟରେ ଲାଗି ଯାଇଛି । ସେ ମୋ ଦେହରେ ଏଇପରି ନିଜକୁ ହଜାଇ ଦିଅନ୍ତା ଯଦି···। ଶୀହରଣ···ରୋମାଞ୍ଚିତ କରୁଛି । ଅର୍କେଷ୍ଟ୍ରା ନୀରବ ହୋଇ ଗଲାଣି । ମୁଁ ଘଡ଼ିକୁ ଲକ୍ଷ୍ୟ କରୁଛି । ସାଢ଼େ ଦଶ । କଫି ହାଉସ ତାହାହେଲେ ବନ୍ଦ ହେଲାଣି । ମ୍ୟାନେଜର ଆସୁଛି । ପକେଟରୁ ଏକ ଚାବି ମୋ ହାତରେ ରଖି ଶୁଭରାତ୍ରି ଜଣାଇ ଫେରି ଯାଉଛି ।

କଫି ହାଉସର ମେନଗେଟ୍ ବନ୍ଦ ହେବାର ଶବ୍ଦ । ପୁଷ୍ପା ଚମକି ଉଠିଛି । ପୁଷ୍ପା ଜଣେ ଭଲ ଅଭିନେତ୍ରୀ । କଲେଜ ଡ୍ରାମାରେ ଶ୍ରେଷ୍ଠ ଅଭିନୟ କରି ଶ୍ରେଷ୍ଠ ଅଭିନେତ୍ରୀର ପଦକ ପାଇଛି । ମୁଁ ଅଭିନେତା ନୁହେଁ । ମୁଁ ବାସ୍ତବିକ ପ୍ରତ୍ୟେକ ଉତ୍ସବରେ ମୁଁ ବାସ୍ତବିକର ସ୍ଥାନ ପାଏ । ତେଣୁ ପୁଷ୍ପାର ଏଇ ଅଭିନୟ ମୋତେ କାତର···ଦୁର୍ବଳ କରି ପାରିବ ନାହିଁ ।

ଆମେ ଦୁହେଁ ସିଡ଼ି ଦ୍ୱାରା ଉପରେ ପହଞ୍ଚିଲୁ । ମୁଁ ମ୍ୟାନେଜର ପ୍ରଦତ୍ତ ଚାବି ଦ୍ୱାରା ତାଲା ଖୋଲୁଛି । ଲାଇଟ୍ ଜଳାଇ ଦ୍ୱାର ବନ୍ଦ କରୁଛି । ଆମେ ଦୁହେଁ ଦୁହିଁଙ୍କୁ ସ୍ପର୍ଶ କରି ନ ଥିଲେ ମଧ୍ୟ, ଆମ ଦୁହିଁଙ୍କ ଛାଇ ଏକ ହୋଇ ଯାଇଛି । ପୁଷ୍ପାକୁ ଟାଣି ଆଣିଲି । ଆପତ୍ତି କଲାନାହିଁ । କୋଠରୀ ମଧ୍ୟରେ କେବଳ ଦୁଇଟି ଦେହର ନିଃଶ୍ୱାସ ପ୍ରଶ୍ୱାସ ଶବ୍ଦ । ପୁଷ୍ପାର ସରୁ ବେକରେ ଓଠ ଲଗାଇ ଦେଲି । ପାଉଡରର ଗନ୍ଧ ସହ ମଥାର ସାମ୍ପୁ ଗନ୍ଧ, ବେଶ୍ ଉତ୍ତେଜକ । ସେ ଦୁଇ ହାତରେ ମୋତେ ଭିଡ଼ି ଧରିଛି । ତା' ସ୍ୱେଦ ଗନ୍ଧରେ ମଧ୍ୟ ଏକ ମାଦକତା । ଯେତେ ସମସ୍ତ ପର୍ଯ୍ୟନ୍ତ ନିଜକୁ ଆୟତ୍ତ କରିବାର କ୍ଷମତା ଥିଲା, କଲି । ତା'ପରେ ଆଉ ପାରିଲି ନାହିଁ ।

"ଏମିତ ଲାଇଟରେ ।" ସେ ପ୍ରତିବାଦ କଲା ।

"ସୋ, ହ୍ୱାଟ ? ଆଇ ଓ୍ୱାଣ୍ଟ ଟୁ ସି ୟୁ ଆଜ୍ ଏ ନ୍ୟୁଡ୍ ।"

ଆକାଶରେ ବାଦଲ ଖଣ୍ଡମାନ ଦ୍ରୁତ ଗତିରେ ଅପସରି ଗଲେ । ପୁଷ୍ପାର ଶ୍ୟାମଳ ବର୍ଣ୍ଣ ଶରୀର ଉଜ୍ଜ୍ୱଳ ବିଦ୍ୟୁତାଲୋକରେ ପୀତ ବର୍ଣ୍ଣ ଧାରଣ କରିଛି । ମୁଁ ଧିରେ ଧିରେ ତାକୁ ଧରି ପଲଙ୍କ ନିକଟକୁ ନେଉଛି ।

"ମୋ ଜିନିଷ ।"

"ଓଃ ! ସିସ୍ଗୋର ।" ହ୍ୟାଙ୍ଗରରେ ଥିବା ପ୍ୟାଣ୍ଟ ପକେଟ ମଧ୍ୟରୁ ପ୍ୟାକେଟଟି ତା' ହାତକୁ ବଢ଼ାଇ ଦେଲି । ପ୍ୟାକେଟ ଖୋଲି ସେ ଚିଠିଗୁଡ଼ାକ ଦେଖୁଛି । ଯେଉଁ ଚିଠିଗୁଡ଼ାକ ସେ ମୋ ନିକଟକୁ ଲେଖିଥିଲା, ନିଜ ଅନ୍ତରର ସମସ୍ତ ଭାବନାକୁ ଠୁଳ କରି । ମୁଁ ଠିକ୍ ଲକ୍ଷ୍ୟ କରିଛି, ସେ ପ୍ୟାକେଟକୁ ତା' ଭ୍ୟାନିଟି ବ୍ୟାଗରେ ରଖିଛି ।

ମୋ ଚକ୍ଷୁ ସମ୍ମୁଖରେ ପାହାଡ଼, ପର୍ବତ, ଝରଣା, ନଦୀ, ପୋଖରୀ, ଜଙ୍ଗଲ ସମସ୍ତ କ୍ଷଣିକ ମଧ୍ୟରେ ସ୍ୱପ୍ନ ପରି ଦେଖାଦେଇ ଚାଲିଗଲେ । ଦୂର ଆକାଶରେ ସୌର ଜଗତର ଠିକ୍ ନିକଟରେ ଦୁଇଟି ଧୂମକେତୁ ବିପରୀତ ଦିଗରୁ ଆସି ପିଟି ହୋଇଛନ୍ତି । ଏକ ବିରାଟ ବିସ୍ଫୋରଣ । ନିଶ୍ୱାସର ତୀବ୍ର ସ୍ପନ୍ଦନ କକ୍ଷ ମଧ୍ୟରେ । ରୁଦ୍ଧ କକ୍ଷ ମଧ୍ୟରେ...କେତେ ଆଶା, କାମନା... ଭବିଷ୍ୟତ ଜଳୁଛି । ହୃଦସ୍ପର କୋହ, ଶରୀରର ଉତ୍ତେଜନା, ଅଯଥା ବୋଝ୍ ତୀର ବେଗରେ ସ୍ୱାଧୀନ ହେବାକୁ ଛୁଟି ଯାଉଛି । କଙ୍କ୍ରିଟ ଇଟା, ବାଲି, ସିମେଣ୍ଟର କାନ୍ଥରେ ପିଟି ହୋଇ, ଆହତ ହୋଇ ଚତ୍କାର କରୁଛି । ନିଜ ସ୍ପନ୍ଦନର ପ୍ରତିଧ୍ୱନି କାନକୁ ଅଡ଼ୁଆ ଲାଗେ । ମନୁଷ୍ୟର ଏତେ ଚିନ୍ତା...ଏତେ ଦୁଃଖ...ମନୁଷ୍ୟ ମଧ୍ୟରେ ଏତେ ମଇଳା...ତଥାପି... ।

ନିଃଶ୍ୱାସ ପ୍ରଶ୍ୱାସକୁ ଆୟତ୍ତ କରିବାପାଇଁ ମୋତେ ସମୟ ଲାଗିଛି । ନିଜକୁ ପ୍ରସ୍ତୁତ କରି ନେଉଛି । ପୁଷ୍ପା ଅତୀବ କ୍ଳାନ୍ତିରେ ବିଛଣାରେ ପଡ଼ିଛି । ଝରକା ଦେଇ ସକାଳର ସୂର୍ଯ୍ୟ କିରଣ କକ୍ଷଟିକୁ କାଂଚନ ଅଲୋକିତ କରିଛି । ମୁଁ ପୁଷ୍ପାର ଭ୍ୟାନିଟି ବ୍ୟାଗ ଖୋଲୁଛି । ପ୍ୟାକେଟଟିକୁ ପକେଟରେ ରଖୁଛି । ଘଡ଼ି ଦେଖୁଛି...ଛଅଟା । ଏଥର ମୋତେ ଯିବାକୁ ପଡ଼ିବ । ରାତିର ପୁରୁଷ ଭିନ୍ନ...ଦିନର ପୁରୁଷ ଭିନ୍ନ । ପୁଷ୍ପାର ନଗ୍ନ ଶରୀର ଉପରେ ଚାଦର ଘୋଡ଼ାଇ ଦେଉଛି ।

"ଘଣ୍ଟ୍…ହନ୍ନ । ବାଧ୍ୟ ହୋଇ ପ୍ୟାକେଟ୍‌ଟା ନେଇ ଯାଉଛୁ । ଆଇ ଲାଇକ୍ ଇଫ୍ୟୁ । ପୁନର୍ବାର ତୁମେ ଫେରିବ । ଆଉ ଏକ ରାତ୍ରି ପୁନର୍ବାର ଆମେ ନଗ୍ନ ହୋଇ ନିଜକୁ ଅପରର ଆଇନାରେ ଦେଖିବା । ସେଦିନ ହୁଏତ ଏ ପ୍ୟାକେଟ୍‌ଟା ମୁଁ ତୁମକୁ ଫେରାଇ ଦେଇପାରେ…ସ୍ୱିଣ ଦ୍ୟାଟ୍ ।"

ମୁଁ ଦ୍ୱାର ଖୋଲୁଛି ।

× × ×

ଏବଂ କିଛିକ୍ଷଣ ପରେ ମୋ କାର୍ କଫି ହାଉସରୁ ବଙ୍ଗଳା ଉଦ୍ଦେଶ୍ୟରେ ଗତି କରୁଛି । ବର୍ତ୍ତିମାନ ମୁଁ ପୁନର୍ବାର ଭୀଷଣ ଗମ୍ଭୀର ।



(ନବରବି' ଅଗଷ୍ଟ ୧୯୭୧)

# ଶିକାର

ସେଇଟା ଥିଲା ଜଙ୍ଗଲରେ ଆମର ତୃତୀୟ ଦିବସ । ଆଡ଼ଭେଞ୍ଚର ଓ ଶିକାର ଉଦ୍ଦେଶ୍ୟ ନେଇ ଯାଇଥିବା ଦଳ ସହିତ ମୁଁ ଥିଲି ଯେପରି ଏକ ଅଆମନ୍ତ୍ରିତ ଅତିଥି । ଶିକାର ବିଷୟରେ ମୋର ଅଭିଜ୍ଞତା ଶୂନ । ରାଇଫଲ୍ ଦେଖିଲେ ମୋତେ ଭୟ ଲାଗେ ଏବଂ ଜଙ୍ଗଲ ପ୍ରତି ମୋର ଏକ ଅହେତୁକ ଭୟ, ଜାଣେନା କାହିଁକି । ତଥାପି ମୁଁ ଏଇ ଦଳ ସହିତ ଆସିବାକୁ ବାଧ ହୋଇଥିଲି । ଠିକ୍ ବାଧ ନୁହେଁ, ମୁମତାଜ ବେଗମ, ମେଜର ରଶିଦ୍‌ଙ୍କର ତୃତୀୟ ନବ ବିବାହିତା ପତ୍ନୀଙ୍କ ସୌନ୍ଦର୍ଯ୍ୟ ଓ ଯୌବନ ମୋତେ ଏ ଜଙ୍ଗଲ ମଧ୍ୟକୁ ଟାଣି ଆଣିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ଏବଂ ନିଜର ଏଇ ଦୁର୍ବଳତା ଯୋଗୁଁ ମୋତେ ସହର ଛାଡ଼ି, ପଚାଶ ମାଇଲ ଦୂରର ଜଙ୍ଗଲ ମଧ୍ୟକୁ ଆସିବାକୁ ପଡ଼ିଥିଲା ।

କଥା ଆରମ୍ଭ ହୋଇଥିଲା କ୍ଲବ ରୁମ୍‌ରେ । ମେଜର ରଶିଦ୍ ସିଗାର ଧୂଆଁ ଦ୍ୱାରା ଆମ ସମସ୍ତଙ୍କୁ ଆଚ୍ଛାଦିତ କରି ନିଜର ଚିର ପରିଚିତ ଗମ୍ଭୀର ସ୍ୱରରେ କହିଥିଲେ—"ଆପଣମାନେ 'ବୋର୍' ହୋଇ ଯାଉନାହାନ୍ତି ଏଇ ନିୟମିତ ଧରାବନ୍ଧା ରୁଟିନ ପରି ଜୀବନ ଅତିବାହିତ କରି କରି ।" ପ୍ରଶ୍ନଟିକୁ ଆମ ଉପରକୁ ଫିଙ୍ଗିଦେଇ ନିଜର ଦର୍ଶନଭରା ଉକ୍ତିର ପ୍ରତିକ୍ରିୟା ଖୋଜିଲେ ନିଜ ନବବିବାହିତା ପତ୍ନୀଙ୍କ ମୁଖରେ । ମେଜରଙ୍କର ଏଇଟା ତୃତୀୟ ବିବାହ । ପ୍ରଥମ ବିବାହର ତିନିମାସ ପରେ, ପ୍ରଥମ ପତ୍ନୀଙ୍କ ମୁଣ୍ଡକୁ ରମ୍ ବୋତଲ ମଧ୍ୟରେ ଡୁବାଇ ସେ ଦ୍ୱିତୀୟ ବିବାହ କରିଥିଲେ । ଶୁଣିଛି, ଜାହିଦା, ତାଙ୍କ ଦ୍ୱିତୀୟ ପତ୍ନୀ ମାତ୍ର ବର୍ଷକ ମଧ୍ୟରେ ଆତ୍ମହତ୍ୟା କରିଥିଲେ ଏବଂ ତା'ପରେ ନିୟମ କଲା ପରି ଅନେକ ଦିନ ସେ ଅବିବାହିତ ରହି ଯାଇଥିଲେ । ତାଙ୍କ ସହ ମୋର ପରିଚୟ ଅନେକ ଦିନର । ବି.ଏ. ପରେ ସେ ଆଇ.ଏମ୍.ଏ. ଜଏନ କଲେ ଏବଂ ମୁଁ ଲ କଣ୍ଟିନ୍ୟୁ କଲି । ସେ ଯେତେବେଳେ କ୍ୟାପଟେନ୍ ହେଲେ,

ଯେତେବେଳେ ମୁଁ ଲଣ୍ଡନରୁ ବାରିଷ୍ଟର ହୋଇ ଫେରିଲି । ଏହା ମଧ୍ୟରେ ସେ ଦୁଇଟି ବିବାହରେ ଅସଫଳ ହୋଇ ଧନସମ୍ପତ୍ତି ଉଡ଼ାଉଥିଲେ । 'ପିସ୍ ପୋଷ୍ଟିଙ୍ଗ...' ଶବ୍ଦାନାହିଁ । ଆମେ ଅନ୍ତରଙ୍ଗ ବନ୍ଧୁ ଥିଲେ ମଧ୍ୟ ବୟସ, ପଦବୀ ଓ ଭିନ୍ନ ପ୍ରଫେସନ ଆମ ଭିତରର ଅନ୍ତରଙ୍ଗତ୍ୱ ଉପରେ ଏକ ମୋଟା ପରଦା ପକାଇ ଦେଇଥିଲା । ସେଦିନ କ୍ଲବରେ ନିଜ ନବବିବାହିତା ପତ୍ନୀଙ୍କୁ ଆମ ସହ ପରିଚୟ କରାଇ ଦେଇ ହସିଥିଲେ, ଆମର ଆଶ୍ଚର୍ଯ୍ୟ ଦେଖି, ପ୍ରକୃତରେ "ହ୍ୱାଟ ଏ ସରପ୍ରାଇଜ୍ !"

ତାଙ୍କର ପ୍ରଶ୍ନ ଆମେ ଶୁଣିଥିଲୁ । ମୁମତାଜ ବେଗମଙ୍କ ସୌନ୍ଦର୍ଯ୍ୟ ସମସ୍ତଙ୍କୁ ମୂକ କରି ଦେଇଥିଲା । ସୁନ୍ଦରତା...ଏକ ଭୟାନକ ସୀମା ପର୍ଯ୍ୟନ୍ତ ତାଙ୍କ ସୁନ୍ଦରତା, ପ୍ରଥମ ଦର୍ଶନରେ ହିଁ ଅନ୍ୟକୁ ଅଭିଭୂତ କରି ପକାଇବାର କ୍ଷମତା ରଖିଥିଲା । ମଣିଷ ଯେତେ କଳ୍ପନା କରିପାରେ, ତା'ଠାରୁ ମଧ୍ୟ ସେ ଅଧିକା ସୁନ୍ଦରୀ ଥିଲେ । ସମସ୍ତେ ସ୍ଥିର ଦୃଷ୍ଟିରେ ତାଙ୍କୁ ଦେଖି ଚାଲିଥିଲେ । ତେଣୁ ଉତ୍ତର ଦେବାପାଇଁ କେହି ଆଗଭର ହୋଇ ପାରିଲେ ନାହିଁ । ଜଙ୍ଗଲ ମାଲିକ ନଟବର ଦାସଗୁପ୍ତ । ଯୋଜନା କମିଶନର ସେକ୍ରେଟେରୀ ଅଖିଳ ବିହାରୀ ନନ୍ଦ । ସେସନ ଜଜ୍ ପ୍ରତାପ ମହାନ୍ତି ଏବଂ ମୁଁ ବାରିଷ୍ଟର ବିଶ୍ୱଜିତ ଦାସ, ସମସ୍ତେ ମେଜରଙ୍କ ପ୍ରଶ୍ନକୁ ଏଡ଼ାଇ ଦେଇ ବେଗମଙ୍କୁ ଦେଖି ଚାଲିଥିଲୁ । କିନ୍ତୁ ସେ ନୀରବରେ ମୁଣ୍ଡ ତଳକୁ କରି ଫ୍ରୁଟ ଜୁସ ଗିଲାସର ଲାଲ ରଙ୍ଗକୁ ଦେଖୁଥିଲେ । ମୁଁ ଭାବୁଥିଲି, ଏପରି ଏକ ନାରୀ ଯଦି ଜୀବନ ସଙ୍ଗିନୀ ହୁଏ, ତେବେ ବିରକ୍ତ ବୋଧହୁଏ ପୁରୁଷ ପାଖ ମାଡ଼ିବ ନାହିଁ ।

"ମୁଁ ଭାବୁଛି, କିଛିଦିନ ଛୁଟି ନେଇ ଏ ସହର ଛାଡ଼ି ଏକ ଘଞ୍ଚ ଜଙ୍ଗଲ ମଧ୍ୟକୁ ଚାଲିଯିବି ।"

ମେଜର ରଶିଦ୍ ଆସନ୍ତେରେ ସିଗାରକୁ ଦଳି ଦେଇ ଆମକୁ ଅନାଇଲେ । ସେସନ୍ ଜଜ୍ ପ୍ରତାପ ମହାନ୍ତି ହସିଲେ, "ଆଲେନ - ଅରି...।" କଥା ପୂର୍ଣ୍ଣ ନ କରି ସେ ପୁଣି ହସି ଉଠିଲେ । ସେ ଜଣେ ଖୁବ୍ ଗମ୍ଭୀର ବ୍ୟକ୍ତି ଭାବେ ବିଖ୍ୟାତ । ଆଜି ତାଙ୍କ ହସ ଦେଖି ପ୍ରଥମେ ମୁଁ ଆଶ୍ଚର୍ଯ୍ୟ ହେଲି ଏବଂ ପରେ ବେଗମଙ୍କୁ ଅନେଇ ସବୁ ବୁଝିପାରିଲି ।

"ହାଲୋ...ବନ୍ଧୁକ୍ !" ଏକ ପରିଚିତ ସ୍ୱର । ଆମର ଧ୍ୟାନଭଙ୍ଗ ହେଲା । ପ୍ରଫେସର ଚିତ୍ତରଞ୍ଜନ ମହାପାତ୍ର ଆମର ପଛପଟେ ଠିଆହୋଇ ଆମକୁ ଅଭିନନ୍ଦନ ଜଣାଉଥିଲେ । ଆମେ ତାଙ୍କ ପାଇଁ ଚେୟାର ଛାଡ଼ି ଠିଆ ହୋଇଗଲୁ, ତାଙ୍କୁ ସମ୍ମାନ ଦେଖାଇ ।

"ମିଷ୍ଟ୍ ମାଇଁ ସନ୍ ସତ୍ୟଜିତ୍ !" ସେ ଗଦ୍‌ଗଦରେ ଯୁବକ ପିଠିରେ ହାତ ରଖିଲେ, "ଆଜି ସକାଳେ ଷ୍ଟେଟ୍‌ସ୍‌ରୁ ଫେରିଛି ।"

ଯୁବକ ହାତ ଯୋଡ଼ିଲା । ଆମେ ପ୍ରତ୍ୟୁତ୍ତର ଦେଲୁ । ପ୍ରଫେସର୍‌ ବେଗମଙ୍କୁ ପ୍ରଶ୍ନଭରା ଦୃଷ୍ଟିରେ ଚାହିଁଲେ । ମେଜର ପରିଚୟ କରାଇ ଦେଲେ । "ମାଇଁ ୱାଇଫ୍‌...ଆଣ୍ଡ ପ୍ରଫେସର ଶରତରଞ୍ଜନ...ଗ୍ରେଟ୍ ଫିଲୋସଫର ।"

ବେଗମ ମୁଣ୍ଡ ଉଠାଇଲେ । ଆମେ ପୁଣି ହଜିଗଲୁ ତାଙ୍କ ସୌନ୍ଦର୍ଯ୍ୟ ମଧ୍ୟରେ । ହ୍ରଦ ପରି ଆଖି ମଧ୍ୟରେ ବୁଡ଼ିଗଲୁ । ବେଗମଙ୍କ ଚଞ୍ଚଳ ଆଖି ପ୍ରଥମେ ପ୍ରଫେସର ସତ୍ୟଜିତ୍ ଉପରେ ବୁଲି ଆସିଲା ଏବଂ ହଠାତ୍ ଏକ ବିଦ୍ୟୁତ୍‌ର ଚମକ ତାଙ୍କ ଆଖିରେ । ପରକ୍ଷଣରେ ସେ ମଥାନତ କଲେ ।

ବେଗମ ଓ ସତ୍ୟଜିତ୍‌ଙ୍କୁ ବାଦ୍‌ଦେଇ ଆମେ ପ୍ରତ୍ୟେକ ଡ୍ରିଙ୍କ୍ କରୁଥିଲୁ । ମେଜର ଅତ୍ୟଧିକ ଡ୍ରିଙ୍କ୍ କରି ଦେଇଥିଲେ ଏବଂ ଆଖି ବନ୍ଦକରି ଅସ୍ପଷ୍ଟ ସ୍ୱରରେ କହୁଥିଲେ, "ଲାଇଫ୍ ଇଜ୍ ବିକେମିଙ୍ଗ ବୋରିଙ୍ଗ ଆଣ୍ଡ ବୋରିଙ୍ଗ ।"

ତାଙ୍କ ପ୍ରତି କାହାରି ଦୃଷ୍ଟି ନ ଥିଲା । ପ୍ରଫେସର ଏକ ପ୍ରକୃତ ଦାର୍ଶନିକ ପରି କହୁଥିଲେ, "କିଏ କହେ ମଣିଷ ମଲାପରେ ତା'ର ଅସ୍ତିତ୍ୱ ଲୋପ ପାଇଯାଏ ! ମିଛକଥା । ମଣିଷ ବଞ୍ଚେ...ଦେଖିଲୁ...ମୁଁ ମରିଯିବି । ଆଇ ଆମ୍ ବିକେମିଙ୍ଗ ଓଲଡ଼ର ଆଣ୍ଡ ଓଲଡ଼ର । ଆଇ ୱିଲ ଡାଇ ଅଣ୍ଡ ଆଇ ମଷ୍ଟ ଡାଇ । କିନ୍ତୁ ତଥାପି ମୁଁ ବଞ୍ଚିବି । ମାଇଁ ସନ୍ ମୋ ପୁଅ ସତ୍ୟଜିତ । ତା'ର ଭିତରେ ମୁଁ ବଞ୍ଚିବି । ମୋର ଏକ ପ୍ରତିଛାୟା ତ ସତ୍ୟଜିତ । ମୁଁ ମୌଳିକ ନୁହେଁ କିମ୍ବା ସତ୍ୟଜିତ ମଧ୍ୟ ମୌଳିକ ନୁହେଁ । ଆମର ପୂର୍ବପୁରୁଷମାନଙ୍କର ଅସ୍ତିତ୍ୱକୁ ନିଜ ଭିତରେ ଲୁଚେଇ ଆମେ ବଞ୍ଚିଛେଁ ।"

ସମସ୍ତେ କ୍ଳାନ୍ତ ହୋଇ ପଡ଼ିଥିଲେ । ମୁଁ ମୁମତାଜ ବେଗମଙ୍କ ରକ୍ତଭରା ଅଧରକୁ ଦେଖୁଥିଲି । ତାଙ୍କ ସୁନାମି ନାସିକାକୁ ଦେଖୁଥିଲି, କାନ ଫୁଲ ମଧ୍ୟର ହୀରାର ଚକ୍‌ଚକ୍‌କୁ ଦେଖୁଥିଲି ଏବଂ ବିଶେଷକରି ମୁମତାଜ ବେଗମଙ୍କ ଆଖିରେ ନିଜର ଏକ ପ୍ରତିବିମ୍ବ ଖୋଜିବାକୁ ଚେଷ୍ଟା କରୁଥିଲି । ବନ୍ଧୁମାନେ କୁହନ୍ତି, ମୋର ଗାମ୍ଭୀର୍ଯ୍ୟ ଏବଂ ପୌରୁଷ ଦ୍ୱାରା ପ୍ରଭାବିତ ହୋଇ ଯେ କୌଣସି ନାରୀ ନିଜ ଯୌବନ ମୋତେ ଅର୍ପଣ କରି ନିଜକୁ ଧନ୍ୟ ମନେ କରିବ । କିନ୍ତୁ ମୁଁ କାହାକୁ ସେ ସୁଯୋଗ ଆଜି ପର୍ଯ୍ୟନ୍ତ ଦେଇପାରି ନାହିଁ । ମୁଁ ଏବେ ମଧ୍ୟ ଅବିବାହିତ । ତେଣୁ ବନ୍ଧୁଙ୍କର ଉକ୍ତ ଉକ୍ତିର ସତ୍ୟତା ପ୍ରମାଣ କରିବାକୁ ଆଜି ହିଁ ଉଦ୍ୟମ କରିବାକୁ ନିଷ୍ପତ୍ତି କଲି ।

ଆଲକୋହଲର ଗବ୍ର ତରଙ୍ଗ ମୋ ଶରୀରର ପ୍ରତି ଲୋମକୂପରେ ମୁଁ ସ୍ପଷ୍ଟ ଅନୁଭବ କରି ପାରୁଥିଲି । ମୁଁ ଉତ୍ତେଜିତ ହୋଇ ପଡ଼ୁଥିଲି । ମୁଁ ବେଗମଙ୍କୁ ଦେଖୁଥିଲି ଏବଂ ଭାବୁଥିଲି ବେଗମ ମୋତେ ଦେଖୁଛନ୍ତି । କିନ୍ତୁ ସେ ଦେଖୁଥିଲେ ସତ୍ୟଜିତ ମହାପାତ୍ରଙ୍କୁ । ମୋ ବାମ ପାଖରେ ବସିଥିବା ସେଇ ନମ୍ର 'କୋକାକୋଲା' ପିଉଥିବା ପତଳା ଲମ୍ବା ଯୁବକଟିକୁ ଏବଂ ଯୁବକଟି ଶୂନ୍ୟ କୋକାକୋଲା ବୋତଲ ଭିତରେ 'ଷ୍ଟ୍ର'ଟିକୁ ବୁଲାଇ ଘଣ୍ଟାକୁ ଲକ୍ଷ୍ୟ କରୁଥିଲା ।

"ମୁଁ ସତ୍ୟଜିତ ସହିତ ଆସନ୍ତାକାଲି ଶିକାରକୁ ଯାଉଛି ।" ପ୍ରଫେସର କହିଲେ ।

"ତେବେ ମୋ ଜଙ୍ଗଲକୁ ଗ୍ଲନ୍ତୁ···ସମ୍ବର, କୁଟରା, ହରିଣ ସବୁ ପାଇବେ । ମୁଁ ମଧ୍ୟ କାଲି ଜଙ୍ଗଲ ଯିବି ।" ନଟବର ଦାସଗୁପ୍ତ ହଠାତ୍ ଉତ୍ସାହିତ ହୋଇ ଉଠିଲେ—"ଅନେକ ଦିନ ହେଲା ଶିକାର ପାଇଁ ଇଚ୍ଛା ହେଉଥିଲା । ହେଲେ କମ୍ପାନୀ ପାଇଁ ଚିନ୍ତିତ ଥିଲି । ଆପଣ ଯେତେବେଳେ···।" ସେ ହସିଲେ ।

ପ୍ରଫେସର ଜଣେ ଖୁବ୍ ଭଲ ଶିକାରୀ । ଗତବର୍ଷ ଦିଲ୍ଲୀରୁ ଅଖିଳ ଭାରତ ସୁଟିଙ୍ଗ ପ୍ରତିଯୋଗିତାରେ ପ୍ରଥମ ପୁରସ୍କାର ପାଇ ଫେରିଛନ୍ତି । ତାଙ୍କର ଲକ୍ଷ୍ୟ କେବେ ବ୍ୟର୍ଥ ହୁଏନି, ଏଇଟା ତାଙ୍କର ବାକ୍ଯ । ଶିକାର କଥା ଶୁଣି ଶିକାରପ୍ରିୟ ସେକ୍ରେଟାରୀ ଶ୍ରୀ ନନ୍ଦ ଚମକି ଉଠିଲେ—"ଦେନ ଲେଟ ଅସ୍ ମେଡ଼୍ ଏ ପ୍ରୋଗ୍ରାମ । ମୁଁ ଛୁଟି ନେଇ ଯାଉଛି । ସମସ୍ତେ ମିଶିଯିବା । ଭଲ ଏକ ଚେଞ୍ଜ ମଧ୍ୟ ହୋଇଯିବ, କଅଣ କହୁଛନ୍ତି ପ୍ରତାପ ବାବୁ ?"

ପ୍ରତାପ ମହାନ୍ତି କିଛିକ୍ଷଣ ଚିନ୍ତା କଲେ । ଗ୍ଲାସର ଡ୍ରିଙ୍କ ଶେଷକରି ସିଗାରେଟର ଏକ ପଫ୍ ନେଇ ମୋତେ ଅନାଇଲେ—"କଅଣ କହୁଛନ୍ତି ବିଶ୍ୱଜିତ ବାବୁ ! କୋର୍ଟ ତ ସାତଦିନ ବନ୍ଦଅଛି । ଗ୍ଲନ୍ତୁ ବୁଲି ଆସିବା ।"

"କିନ୍ତୁ ମୁଁ କେବେ···।" ସ୍ପଷ୍ଟ ନିଜର ଅସୁବିଧା କହି ପାରିଲି ନାହିଁ ବା କୁହନ୍ତୁ ମୋତେ ସୁଯୋଗ ଦିଆଗଲା ନାହିଁ । ପ୍ରଫେସର ମଝିରୁ କଥା କାଟି କହିଲେ—"ଆପଣ ଡରୁଛନ୍ତି ? ସତ୍ୟଜିତ ଷ୍ଟେଟସ୍‌ର ସୁଟିଙ୍ଗରେ ଗୋଲ୍ଡ଼ ମେଡ଼ାଲ ନେଇ ଆସିଛି । ସୁଟିଙ୍ଗ ଇଜ ହିଜ୍ ହବି । ଗ୍ଲନ୍ତୁ ଦେଖିବେ ··ଭଲ ଏକ ଅନୁଭୂତ ହେବ ।"

ମୁମତାଜ ବେଗମ ସତ୍ୟଜିତଙ୍କୁ ଲକ୍ଷ୍ୟକରି ମେଜରଙ୍କୁ ହଲେଇ ଦେଲେ— "ଶୁଣୁଛି···।" ପ୍ରଥମଥର ପାଇଁ ଆମେ ବେଗମଙ୍କ କଣ୍ଠସ୍ୱର ଶୁଣିଲୁ ।

"ଉଁ !" ମେଜର ସଂଯତ ହୋଇ ଉଠିଲେ ।

"ତୁମେ ଚେଞ୍ଜ ଲାଗି କହୁଥିଲ ନା ! ଶିକାରକୁ ଯିବ ?" ବେଗମ ପୁଣି ଥରେ ସତ୍ୟଜିତକୁ ଅନେଇଲେ । ମୁଁ ମନେ ମନେ ଈର୍ଷାନ୍ୱିତ ହୋଇ ଉଠିଲି ।

"ଶିକାର...ଓଃ । ସିଓର !" ମେଜର ପୁଣି ଏକ ସିଗାରରେ ଅଗ୍ନି ସଂଯୋଗ କଲେ ।

ଏବଂ ଏହାପରେ ମୋର ଆପତ୍ତି କରିବାର ପ୍ରଶ୍ନ ଉଠି ନ ପାରେ । ସର୍ବସମ୍ମତିକ୍ରମେ ଶିକାରର କାର୍ଯ୍ୟକ୍ରମ ସ୍ଥିର ହୋଇଗଲା । ଆଜି ଶନିବାର । ରବିବାର ଦିନ ସକାଳୁ ଦୁଇଟି କାର୍‌ରେ ସମସ୍ତ ଆବଶ୍ୟକୀୟ ଜିନିଷ ନେଇ ନଟବର ଦାସଗୁପ୍ତଙ୍କ ଜଙ୍ଗଲ ଉଦ୍ଦେଶ୍ୟରେ ବାହାରିବାର ନିଶ୍ଚୟ ହେଲା । ପ୍ରଥମେ ନିକଟ ଜଙ୍ଗଲରୁ କିଛିଟା ସାଧାରଣ ଶିକାର୍ କରି ସଞ୍ଜରେ ଦାସଗୁପ୍ତାଙ୍କ ରେଷ୍ଟ ହାଉସରେ ବିଶ୍ରାମ ଏବଂ ତା' ପରଦିନ ଭିତରକୁ...। ତମ୍ବୁର ବ୍ୟବସ୍ଥା ମଧ୍ୟ କରାଯିବ । ପ୍ରତ୍ୟେକଙ୍କ ପାଇଁ ଭିନ୍ନ ଭିନ୍ନ ତମ୍ବୁ । ଦାସଗୁପ୍ତ କହିଲେ— "ଶୁଣିଛି ଏକ ବାଘ ଯୋଡ଼ା ଉପରୁ ଖସି ଆସିଛନ୍ତି । ଗତ ଦୁଇଦିନ ତଳେ ମୋ ଜଙ୍ଗଲରେ କାମ କରୁଥିବା ଏକ ମଜଦୁର ପୁଅକୁ ଉଠେଇ ନେଇ ଯାଇଛି ।"

ମେଜର ଚିତ୍କାର କରି ଉଠିଲେ—"ଇଉରେକା...ତେବେ ତ ବେଶ୍ ଭଲ ହେଲା । ସେ ବାଘଟି ମୋ ବନ୍ଧୁକ ଗୁଳିରେ ମରିବ । ଆଇ ୱିଲ୍ କିଲ୍ ଦ ଟାଇଗର ।"

ପ୍ରଫେସର ଚ୍ୟାଲେଞ୍ଜ ସ୍ୱରରେ କହିଲେ—"ଠିକ୍ ଅଛି, ବାଜି ରହିଲା, ଆପଣ ବାଘ ଯଦି ମାରନ୍ତି ତେବେ ସତ୍ୟଜିତ ବାଘୁଣୀକୁ ମାରିବ ।"

"ଆକ୍‌ସେପ୍‌ଟେଡ୍ ?" ପ୍ରଶ୍ନ କଲେ ମେଜର ସତ୍ୟଜିତକୁ ଚାହିଁ— "ଆଣ୍ଡ ଉନ୍ ।"

ସତ୍ୟଜିତ ମୁଣ୍ଡ ଉଠାଇ ଖାଲି ଟିକେ ହସିଲା ।

ମେଜର ଗ୍ଲାସ ଉଠାଇ ଚିତ୍କାର କରିଥିଲେ—"ଚିୟର୍ସ ଫର୍ ଦ ଟାଇଗର ଆଣ୍ଡ ଟାଇଗ୍ରେସ୍ ।"

ପୂର୍ବ ନିର୍ଦ୍ଧିତ କାର୍ଯ୍ୟକ୍ରମ ଅନୁସାରେ ଆମେ ଦୁଇଟି କାର୍‌ରେ ରବିବାର ଦିନ ସକାଳୁ ସହର ଛାଡ଼ିଥିଲୁ । ଗୋଟିଏ କାର୍‌ରେ ମେଜର ରଣଜିତ୍‌ଙ୍କର ଏବଂ ଅନ୍ୟଟି ଦାସ ଗୁପ୍ତାଙ୍କର । ସାଙ୍ଗରେ ଥିଲା ଆମର ଡ୍ରାଇ ଫ୍ରୁଟସ୍; ଦୁଇଟି ରାଇଫଲ୍, ଗୋଟିଏ ମେଜରଙ୍କର, ଆଉ ଗୋଟିଏ

ଦାସଗୁପ୍ତଙ୍କର ଓ ଅନ୍ୟ ଦୁଇଟି ପ୍ରଫେସର ଓ ସତ୍ୟଜିତଙ୍କର; ଡମ୍ବୁ, ବସ୍କର, ହ୍ୱିସ୍କି, ସ୍କଚଲାଇଟ, ଟର୍ଚ୍ଚ, ପେଟ୍ରୋମାକ୍ସ ଇତ୍ୟାଦି ।

ମୁଁ ଯାତ୍ରା ମଧ୍ୟରେ ସ୍ପଷ୍ଟ ଲକ୍ଷ୍ୟ କରିଥିଲି ସତ୍ୟଜିତ ଏକ ମିତଭାଷୀ ଯୁବକ ଏବଂ ମେଜରଙ୍କ ଅନୁପସ୍ଥିତିରେ ସତ୍ୟଜିତ ନିକଟରେ ବେଗମ ଖୁବ୍ ପ୍ରଗଲ୍‌ଭା ହୋଇ ଉଠୁଥିଲେ । ଗତ ରାତିର ବେଗମ ଓ ସକାଳର ବେଗମଙ୍କ ମଧ୍ୟରେ ଏକ ବିରାଟ ପାର୍ଥକ୍ୟ ମୁଁ ଅନୁଭବ କରି ପାରିଥିଲି । ସେ ଖୁବ୍ ସ୍ପଷ୍ଟ ଓ ସ୍ୱାଭାବିକ ହୋଇ ପଡ଼ିଥିଲେ । ଅପରିଚିତ ପଥ । ଝାଲି ମୋଡ଼ ! ଜଙ୍ଗଲ ରାସ୍ତା । ପିଚ୍ ରାସ୍ତା ଛାଡ଼ି କଚ୍ଚା ଜଙ୍ଗଲ ରାସ୍ତା ଦେଇ ଆମେ ଆଗେଇ ଚାଲିଥିଲୁ, ଦାସଗୁପ୍ତଙ୍କ ରେଷ୍ଟ ହାଉସ ଉଦ୍ଦେଶ୍ୟରେ । ସ୍ୱଚ୍ଛ ବାୟୁ ଏବଂ ଶାନ୍ତ ବାତାବରଣ ଖୁବ୍ ଭଲ ଲାଗିଥିଲା । ଦିନ ବାରଟା ପନ୍ଦରରେ ଆମେ ଦାସଗୁପ୍ତଙ୍କ ରେଷ୍ଟ ହାଉସରେ ପହଞ୍ଚି ଯାଇଥିଲୁ ।

ବିଶ୍ରାମ ଏବଂ ପୁନର୍ବାର ଯାତ୍ରା । ରବିବାର ରାତିଟା ଅତି ସହଜରେ ବିତି ଯାଇଥିଲା । ହଲ୍ ମଧ୍ୟରେ ସତ୍ୟଜିତ ଓ ବେଗମ ରଶିଦ୍‌ଙ୍କ ବ୍ୟତୀତ ଆମେ ସମସ୍ତେ ଡ୍ରିଙ୍କ କରିଥିଲୁ । ସେଇ ବାତାବରଣ ମଧ୍ୟରେ ମୁଁ ଲକ୍ଷ୍ୟ କରିଛି ବେଗମ ସତ୍ୟଜିତର କେମିତି ନିକଟରୁ ନିକଟତର ହେବାକୁ ଚେଷ୍ଟା କରୁଥାନ୍ତି । ସତ୍ୟଜିତ କିନ୍ତୁ ଗମ୍ଭୀର । ଯୁବକର ଏତେଟା ଗମ୍ଭୀରତା ନାରୀ ସମ୍ମୁଖରେ; ପ୍ରକୃତରେ ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ତା'ପରେ ଆଲକୋହଲର ତୀବ୍ର ନିଶା ମୋତେ ଜ୍ଞାନଶୂନ୍ୟ କରି ପକାଇଥିଲା । ମେଜର ରେଷ୍ଟ ହାଉସ ଆସିବା ବାଟରେ ଯେଉଁ କୁଟରାଟିକୁ ଶିକାର କରିଥିଲେ, ତା'ର ମାଂସ ଖୁବ୍ ଚମତ୍କାର ହୋଇଥିଲା ।

ପୁନର୍ବାର ସକାଳ । ସୋମବାର ସକାଳ । ପୂର୍ବ ନିର୍ଦ୍ଧିଷ୍ଟ ପ୍ରୋଗ୍ରାମ ଅନୁସାରେ ଆମେ ସୋମବାର ଦିନ ସକାଳୁ ରେଷ୍ଟ ହାଉସ ଛାଡ଼ି, ସାଙ୍ଗରେ ତିନୋଟି କୁଲିଙ୍କ କାନ୍ଧରେ ଆମର ସବୁ ଆବଶ୍ୟକୀୟ ଉପକରଣ ଲଦି ଘଞ୍ଚ ଜଙ୍ଗଲ ମଧ୍ୟକୁ ବଢ଼ି ଚାଲିଲୁ ।

ଜଙ୍ଗଲଟା ଖୁବ୍ ଆକର୍ଷଣୀୟ ମନେ ହୋଇଥିଲା । ପ୍ରଥମେ ମୁକ୍ତ ବାୟୁ, ପକ୍ଷୀମାନଙ୍କର କଳରବ, ଚତୁର୍ଦ୍ଦିଗର ସବୁଜିମା, ପ୍ରକୃତରେ ମୁଁ ଆତ୍ମହରା ହୋଇ ପଡ଼ିଥିଲି । ଗତ ରାତିର ଅତ୍ୟଧିକ ମଦ୍ୟପାନ ଯୋଗୁଁ ମୁଣ୍ଡଟା ଭରି ଭାରି ଲାଗୁଥିଲେ ମଧ୍ୟ ମୁଁ ପ୍ରଫୁଲ୍ଲ ହୋଇ ଉଠିଥିଲି । ପୁରୁଷ ପାଖରେ ନାରୀ ଥିଲେ, କ୍ଳାନ୍ତି ପାଖ ମାଡ଼େନି ।

"ଏଇଠି ସେ ବାଘ ଯୋଡ଼ା ବୁଲନ୍ତି।" ଜଣେ କୁଲି ଅଟକି ଯାଇ କହିଥିଲି ।

ଏବଂ ଆମେ ସମସ୍ତେ ସେଇଠି ଅଟକି ଯାଇଥିଲୁ । ସେତେବେଳକୁ ଦ୍ୱିପ୍ରହର ବିତି ଯାଇଥାଏ । ଆମ ପାଇଁ ଗ୍ରେଟି ତମ୍ବୁର ବ୍ୟବସ୍ଥା କରା-ଯାଇଥିଲି । ମେଜର ଓ ବେଗମ, ପ୍ରଫେସର ଓ ସତ୍ୟଜିତ, ମୁଁ ଓ ଦାସଗୁପ୍ତ ଏବଂ ପ୍ରତାପ ମହାନ୍ତି ଓ ମିଷ୍ଟର ନନ୍ଦ ।

ଆଜି ମଙ୍ଗଳବାର । ସକାଳଟା ଖୁବ୍ ଆକର୍ଷଣୀୟ ହୋଇ ଉଠିଛି । ପକ୍ଷୀମାନେ ଚିତ୍କାର କରି ଉଡ଼ି ଯାଉଛନ୍ତି । ଚତୁର୍ଦ୍ଦିଗରେ ଅନେକ ରଙ୍ଗୀନ ଗ୍ରେଟ ଗ୍ରେଟ ଜଂଟ । ଅନେକ ବିଷାକ୍ତ । ପ୍ରତାପ ମହାନ୍ତିଙ୍କ ତମ୍ବୁରୁ ଟ୍ରାନ୍‌ଜିଷ୍ଟାର ରେଡ଼ିଓର ଶବ୍ଦ ଭାସି ଆସୁଛି । ସେ ସମ୍ବାଦ ଶୁଣୁଛନ୍ତି । ସତ୍ୟଜିତ ଏକା ଫେରୁଛି । ହାତରେ ଅନେକଗୁଡ଼ାଏ ଜଙ୍ଗଲି ଫୁଲ । ମୋତେ ଦେଖି ଅଟକିଗଲି, "ହାଲୋ ।"

"ହାଲୋ !" ମୁଁ ତା' ଅଭିବାଦନର ପ୍ରତ୍ୟୁତ୍ତର ଦେଲି ।

"ସକାଳଟା ଚମତ୍କାର ହୋଇଛି ।"

ମୁଁ ହସିଲି, ଆଖିରେ ନିଦ ଭରି ରହିଛି । ଗତ ରାତିରେ ପ୍ରାୟ ଶେଷ ପ୍ରହରରେ ଶଯ୍ୟାରେ ଶୋଇବାର ସୌଭାଗ୍ୟ ମିଳିଥିଲା । ସନ୍ଧ୍ୟାରୁ ରାତିର ଶେଷ ପ୍ରହର ଯାଏଁ ଆମେ ବାଘ ଓ ବାଘୁଣୀଙ୍କୁ ଜଙ୍ଗଲ ମଧ୍ୟରେ ଖୋଜି ଖୋଜି ଅସଫଳ ହୋଇ ଫେରିଥିଲୁ । ସମସ୍ତଙ୍କ ଅପେକ୍ଷା ମୁଁ ଅଧିକ କ୍ଳାନ୍ତ ହୋଇ ପଡ଼ିଥିଲି । କାରଣ ବେଗମ ତମ୍ବୁରେ ହିଁ କୁଲିମାନଙ୍କର ତତ୍ତ୍ୱାବଧାନରେ ରହିଥିଲେ ।

ଏ ଦୁଇଦିନ ମଧ୍ୟରେ ସତ୍ୟଜିତ ଓ ବେଗମ ବେଶ୍ ମିଶି ଯାଇଥିଲେ । ଏକା ସଙ୍ଗେ ହସୁଥିଲେ, ବୁଲୁଥିଲେ । ମେଜର ପ୍ରଚୁର ମଦ୍ୟପାନ କରୁ-ଥିଲେ । ସିଗାର ପିଉଥିଲେ । ପ୍ରତାପ ମହାନ୍ତି ଟ୍ରାନ୍‌ଜିଷ୍ଟର ଶୁଣୁଥିଲେ । ମିଷ୍ଟର ନନ୍ଦ ଡାଏରୀ ଲେଖୁଥିଲେ । ପ୍ରଫେସର ନିଜ ଅନୁଭୂତିକୁ ଲିପିବଦ୍ଧ କରି ଚାଲିଥିଲେ । ଦାସଗୁପ୍ତ ସକାଳୁ ନିଜ ଜଙ୍ଗଲ କାମର ଦେଖାରେଖା ପାଇଁ ଚାଲି ଯାଉଥିଲେ ଏବଂ ସନ୍ଧ୍ୟାରେ ମଦ୍ୟ ଓ ଖାଦ୍ୟ ସହିତ ଫେରୁଥିଲେ । ଏବଂ ମୁଁ ସତ କହିବାକୁ ଗଲେ ବିରକ୍ତ ହେଉଥିଲି । ଆମ ମଧ୍ୟରୁ ପ୍ରତ୍ୟେକ ହତାଶ ହୋଇ ଯାଇଥିଲେ । ସେମାନେ ଆସିଥିଲେ ବେଗମଙ୍କ ସାନ୍ନିଧ

ପାଇଁ । କିନ୍ତୁ ମୁଁ ଠିକ୍ ଲକ୍ଷ୍ୟ କରୁଛି, ବେଗମ ଅନ୍ୟମାନଙ୍କ ଉପସ୍ଥିତି ସହ୍ୟ କରିପାରୁ ନ ଥିଲେ ଓ ସତ୍ୟଜିତ ନିକଟରେ ବେଶ୍ ସ୍ପଷ୍ଟ ହୋଇ ଉଠିଥିଲେ । ତେଣୁ ପ୍ରତ୍ୟେକ ହତାଶ ହୋଇ ଅନ୍ୟ କାମରେ ମନୋନିବେଶ କରିଥିଲେ । ବାତାବରଣଟା ଭାରି ଉଷ୍ମ ଓ କଠୋର ହୋଇ ଉଠିଥିଲା ।

"ନଟବର ବାବୁ ବୋଧହୁଏ ଚାଲିଗଲେଣି ?" ସତ୍ୟଜିତ ପ୍ରଶ୍ନକଲା ।

ମୁଁ ମନାକଲି । ନଟବରବାବୁ ଯିବା ପାଇଁ ପ୍ରସ୍ତୁତ ହେଉଥିଲେ । ହଠାତ୍ ବାହାରକୁ ଆସି ସତ୍ୟଜିତକୁ ଅଭିନନ୍ଦନ କଲେ । ସତ୍ୟଜିତ ପ୍ରତ୍ୟୁତ୍ତର ଦେଇ କହିଲା—"ଆପଣ ଫେରିଲାବେଳେ ଗୋଟାଏ ମେଣ୍ଢା କିମ୍ବା ଛେଳି ନେଇ ଆସିବେ ।"

ମୁଁ ପ୍ରଶ୍ନକଲି—"ସେ ଯୋଡ଼ା ମିଳିବେ ?"

"ନିଶ୍ଚୟ । ବାଘୁଣୀକୁ ମୋତେ ଆଜି ହିଁ ସୁଟ୍ କରିବାକୁ ହେବ ।" ସ୍ୱରରେ ତା'ର ଭରି ରହିଥିଲା ଆତ୍ମବିଶ୍ୱାସ । ମୁଁ ନୀରବ ରହିଲି ।

ନଟବର ବାବୁ ଚାଲିଗଲେ । ମୁଁ ପଚାରିଲି—"ଫୁଲ କାହାପାଇଁ ?"

ସତ୍ୟଜିତ ମୁହଁ ତଳକୁ କଲା । "ବେଗମ ରଶିଦ୍‌ଙ୍କ ପାଇଁ ନୁହେଁ ତ ?" ମୁଁ ପ୍ରଶ୍ନକଲି ।

"ହଁ । ସେ ଫୁଲକୁ ଭାରି ଭଲପାନ୍ତି ।"

"ନାରୀମାନେ ହିଁ ଫୁଲକୁ ଭଲପାନ୍ତି ।" ମୁଁ ହସିଲି । ସତ୍ୟଜିତର ମୁହଁ ଲାଲ ହୋଇ ଉଠିଲା । ମୁଁ ତା' ମୁହଁରେ ଏକ ଫୁଲର ଗ୍ଭଇ ଖୋଜୁଥିଲାବେଳେ ମେଜର ରଶିଦ୍‌ଙ୍କ ମୁହଁରେ କଣ୍ଟାର ପ୍ରତିଛବି ଦେଖି ମୁଁ ଚମକି ପଡ଼ିଲି । ନାରୀମାନେ କଣ୍ଟାକୁ ଭୟ କରନ୍ତି । ସେମାନେ ଭାରି ସ୍ୱାର୍ଥପର । ନିଜେ ରେଶମ ପରି ଏବଂ ଚାହାଁନ୍ତି କୋମଳ କିନ୍ତୁ ଶକ୍ତ ହୃଦୟ ।

ଦ୍ୱିପ୍ରହର ପର୍ଯ୍ୟନ୍ତ ଆମେ ରାତିର ଶିକାର ପ୍ରସ୍ତୁତିରେ ଅତିବାହିତ କଲୁ । ନଟବର ବାବୁ ଠିକ୍ ସାଢ଼େ ଚାରିରେ ଦୁଇଟି ମେଣ୍ଢା ନେଇ ଫେରିଲେ ଏବଂ ଆମେ ବେଗମଙ୍କୁ ଦୁଇଜଣ କୁଲିଙ୍କ ସୁରକ୍ଷାରେ ଗ୍ଭଡ଼ି ଜଙ୍ଗଲ ଭିତରକୁ ଆଗେଇ ଚାଲିଲୁ । ଗୋଟାଏ ସ୍ଥାନରେ ହଠାତ୍ ପ୍ରଫେସର ଅଟକିଗଲେ—"ଏଇ ଆଖପାଖରେ କେଉଁଠି ନିଶ୍ଚୟ ସେମାନେ ଅଛନ୍ତି । ମୁଁ ଗନ୍ଧ ଠିକ୍ ଜାଣି ପାରୁଛି ।"

ତା'ପରେ ପ୍ରଫେସରଙ୍କ ନିର୍ଦ୍ଦେଶକ୍ରମେ ଏକ ଗଛତଳେ ଦୁଇ ମେଣ୍ଢାଙ୍କୁ ବାନ୍ଧି ଦିଆଗଲା । ପରେ ଆମେ ଅନ୍ୟ ଏକ ଗଛରେ ବସି ବାଘ ଓ ବାଘୁଣୀଙ୍କ ଆଗମନକୁ ପ୍ରତୀକ୍ଷା କରି ରହିଲୁ ।

ପ୍ରତୀକ୍ଷା ଏବଂ ପ୍ରତୀକ୍ଷା । ମୁଁ ବିରକ୍ତ ହୋଇ ଧୀରେ ଧୀରେ ଢୁଳେଇବାକୁ ଆରମ୍ଭ କଲି ଏବଂ ତା'ପରେ ଶୋଇ ପଡ଼ିଲି । ହଠାତ୍ ରାତ୍ରି କେତେ ହେବ କେଜାଣି, ମୁଁ ଚମକି ପଡ଼ିଲି । ବାଘର ଚିତ୍କାର ଏବଂ ଗୁଳି ଫୁଟିବା ଶବ୍ଦ । ସମସ୍ତେ ଆନନ୍ଦରେ ଚିତ୍କାର କରି ଉଠିଲେ । ମୁଁ ଆଖିମଳି ଦେଖିଲି, ପ୍ରଫେସର ଗର୍ବ ଓ ଆନନ୍ଦରେ ସତ୍ୟଜିତର ହାତକୁ ଧରି ମେଜରଙ୍କୁ କହୁଛନ୍ତି—"ଆପଣ ହାରିଗଲେ ମେଜର ।"

ତା'ପରେ ଆମେ ମୃତ ବାଘୁଣୀର ଶରୀରକୁ ତମ୍ବୁ ନିକଟକୁ ଆଣିବାର ବ୍ୟବସ୍ଥା କରି ଫେରି ଆସିଲୁ । ମେଜର ଖୁବ୍ ଗମ୍ଭୀର ଥାନ୍ତି, କାହା ସହିତ କଥା ମଧ୍ୟ କହୁ ନ ଥାନ୍ତି । ମୁଁ ପଛେ ଜାଣିଲି, ଠିକ୍ ସମୟରେ ମେଜରଙ୍କ ଲକ୍ଷ୍ୟ ବ୍ୟର୍ଥ ହୋଇଗଲା ଏବଂ ସତ୍ୟଜିତ ଜିତିଗଲା ।

ରାତ୍ରିର କ୍ଲାନ୍ତି ଯୋଗୁଁ ମୁଁ ଶୋଇପଡ଼ିଲି ଏବଂ ନିଶ୍ଚିନ୍ତ କଲି ଯେ ଆସନ୍ତା କାଲି ସକାଳୁ ନଟବର ବାବୁଙ୍କ ସହିତ ଫେରିଯିବି ସହରକୁ । ମୁଁ ଶିକାରୀ ନୁହେଁ । ତେଣୁ ଶିକାରର ଆନନ୍ଦ ମୁଁ ଉପଲବ୍ଧି କରି ପାରିଲି ନାହିଁ । ବରଂ ଅଯଥା କ୍ଲାନ୍ତି ।

ସନ୍ଧ୍ୟାରେ ଉଠି ଦେଖିଲି ବାତାବରଣରେ ଏକ ଅସମ୍ଭବ ନିସ୍ତବ୍ଧତା । ତମ୍ବୁ ବାହାରେ ଏକ ଗଛତଳେ ସତ୍ୟଜିତ ଓ ବେଗମ ବସିଥାନ୍ତି । ମୋତେ ଦେଖି ବେଗମ ସତର୍କ ହୋଇ ଉଠିଲେ ।

"ବାକିମାନେ କୁଆଡ଼େ ଗଲେ ?" ମୁଁ ପଚାରିଲି ।

"ବାଘ ଶିକାରକୁ ।" ସତ୍ୟଜିତ ହସିଲା ।

"ଆଉ ଆପଣ ?" ମୁଁ ତାକୁ ପରୀକ୍ଷା କରିବା ଦୃଷ୍ଟିରେ ଲକ୍ଷ୍ୟକଲି ।

"ମୋ ବାଁ ପାଦରେ କଣ୍ଟାଟାଏ ପଶି ବଡ଼ କଷ୍ଟ ହେଉଛି । ତେଣୁ ଆଜି ଆଉ ଯାଇ ପାରିଲି ନାହିଁ । ମେଜରଙ୍କ ଏକା ଜିଦ୍ ସେ ଯେମିତି ହେଲେ ଆଜି ବାଘ ଶିକାର କରିବେ । ବାଜି ହାରିବେ ନାହିଁ । ଦିନ ତିନିଟାରୁ ସମସ୍ତଙ୍କୁ ନେଇ ଚାଲି ଗଲେଣି ।"

"ମୋତେ ଉଠାଇଲେ ନାହିଁ ।"

"ଆପଣଙ୍କ ପାଇଁ ମୁଁ ମନାକଲି ।" ସେ ହସିଲା ।

"ଆପଣ ମନାକଲେ · କିନ୍ତୁ କାହିଁକି ?" ମୁଁ ଆଶ୍ଚର୍ଯ୍ୟ ହେଲି ।

"ଆପଣ ଶିକାରକୁ ଯାଇ ବିରକ୍ତ ହେଉଛନ୍ତି । ତା'ପରେ ମୁଁ ଏଠି ଏକା ।" ସେ ଅଟକି ଗଲେ । ତା'ପରେ ଆମେ ତିନିଜଣ ରମି ଖେଳିଲୁ । କଫି ପିଇଲୁ । ବେଗମ ଖୁବ୍ ଚମତ୍କାର କଫି ତିଆରି କରନ୍ତି । ମୁଁ ସତ୍ୟଜିତଙ୍କୁ ସିଗାରେଟ ଅଫର୍ କଲି । ସେ ସଂକୋଚବୋଧ କରି ଖଣ୍ଡେ ସିଗାରେଟ ଉଠାଇ ନେଲା—"ମୁଁ ଖାଏନି କେବେ···ଖାଲି ଆପଣ କହିଲେ ବୋଲି ··।"

ଜଙ୍ଗଲରେ ରାତି ଖୁବ୍ ଶୀଘ୍ର ଆସେ ଏବଂ ଆସେ ଖୁବ୍ ଘନ ହୋଇ । ସବୁକିଛି ଲୁଚିଯାଏ । ଗ୍ୟାସ୍ଲାଇଟ ତମ୍ବୁ ଓ ପେଟ୍ରୋମାକ୍ସ ଲାଇଟର ଆଲୋକ ଖୁବ୍ ଅସ୍ୱାଭାବିକ ମନେ ହେଉଥାଏ ଉକ୍ତ ଘଞ୍ଚ ଜଙ୍ଗଲ ମଧ୍ୟରେ । ଆମର ସାଥିମାନେ କେଉଁଠି ବାଘର ସନ୍ଧାନରେ ବୁଲୁଥିବେ କେଜାଣି । ଆଜି ଯଦି ଏଇ ସମୟରେ ବାଘ ତା' ବାଘୁଣୀର ସନ୍ଧାନରେ ଏଠି ପହଞ୍ଚିଯାଏ, ତେବେ ? ମୁଁ ଭୟଭୀତ ହୋଇ ପଡ଼ିଲି । ରାତି ପ୍ରାୟ ଆଠଟା ହୋଇଥିଲା । ହ୍ୱିସ୍କି ବୋତଲ ଖୋଲି ଡ୍ରିଙ୍କ ଆରମ୍ଭ କଲି । ଭୟ କମି ଆସିଲା । କିଏ ଜଣେ ଆସୁଛି ବୋଧହୁଏ । ପାଦର ଶବ୍ଦ ଓ ପତ୍ରମାନଙ୍କର ଖସ୍ଖାସ୍ ଶବ୍ଦ ।

"ଆପଣଙ୍କୁ ଡିଷ୍ଟର୍ବ କରୁନାହିଁ ତ ?" ସତ୍ୟଜିତ ତମ୍ବୁର ପରଦା ଟେକି ପ୍ରଶ୍ନ କଲା ।

"ନା···ନା···ଆସନ୍ତୁ···।"

"ମୋତେ କାହିଁକି ଭୟ ଲାଗୁଛି ।" ସତ୍ୟଜିତର ଆଖି ଯୋଡ଼ାକରେ ଭୟର ଚିହ୍ନ ମୁଁ ସ୍ପଷ୍ଟ ଦେଖି ପାରିଥିଲି ।

"ଭୟ !" ମୁଁ ପଚାରିଲି ।

"ହଁ । ସେ ବାଘୁଣୀ ଯେମିତି ଜୀବନ୍ତ ହୋଇ ମୋ ଉପରକୁ ଲମ୍ଫ ଦେଉଛି ।" ସତ୍ୟଜିତର ଆଙ୍ଗୁଳିଗୁଡ଼ାକ କମ୍ପୁଥିଲେ ।

ତା'ପରେ ମୁଁ ତାଙ୍କୁ ସାନ୍ତ୍ୱନା ଦେଲି । ଭିନ୍ନ ଭିନ୍ନ କଥା ପରେ ସେ ଶୁଭରାତ୍ରି ଜଣାଇ ନିଜ ତମ୍ବୁକୁ ଚାଲିଗଲା । ରାତି ଏଗାରଟା ହୋଇଥିଲା । ରେଡ଼ିଓ ସିଲୋନ ବନ୍ଦ ହେବାର ଘୋଷଣା ବେଗମଙ୍କ ତମ୍ବୁରୁ ଶୁଭୁଥିଲା ।

ଅବଶେଷରେ ମୁଁ ଶୋଇ ପଡ଼ିଲି, ଡର, ଭୟ, ଆଶଙ୍କା ସବୁକିଛିକୁ ଭୁଲି ।

ହଠାତ୍ ଏକ ଚିତ୍କାର୍···"ବାଘ···ବାଘ···ବାଘ ।"

ଚିତ୍କାରଟା ସତ୍ୟଜିତର ତମ୍ବୁରୁ ଆସୁଥିଲା ଏବଂ ଦ୍ରୁତଗତିରେ ଦୌଡ଼ି ଚାଲିଯିବାର ପାଦ ଶବ୍ଦ । ମୁଁ ଅତି ଶୀଘ୍ର ଗାଉନର ଫିତା ବାନ୍ଧି ପେଟ୍ରୋମାକ୍ସଟା ଧରି ବାହାରକୁ ଆସିଲି । ଅନ୍ଧାରରେ ଦେହ ଥରୁଥାଏ । ଭୟରେ ମୋ ଛାତି ଭିତରଟା କମ୍ପୁଥାଏ । ତଥାପି ନିଜର ଏକ ସାଥିର ବିପଦଭରା ଚିତ୍କାର ଶୁଣି ମୁଁ ନିଜକୁ ଅଟକାଇ ପାରିଲି ନାହିଁ ।

ସତ୍ୟଜିତ ନିଜ ତମ୍ବୁ ଦ୍ୱାରରେ ଠିଆ ହୋଇଥିଲା । ମୋତେ ଦେଖି ଚିତ୍କାର କଲା—"ମିଷ୍ଟର ବିଶ୍ୱଜିତ···ବାଘ ଆସିଥିଲା···ଏଇ ତମ୍ବୁ ଭିତରେ ପଶି ମୋ ଉପରେ ଚଢ଼ି ଯାଇଥିଲା ।"

ସେ ଥରୁଥାଏ । ତା' ହାତର ରାଇଫଲ୍‌ଟା ମଧ୍ୟ ଥରୁଥାଏ । ତାକୁ ନେଇ ମୁଁ ତା' ତମ୍ବୁ ଭିତରେ ପ୍ରବେଶ କଲି । ସେ ଚେୟାର ଉପରେ ବସି ନିଜ ଆଖିକୁ ବନ୍ଦକରି ନିଜ ନିଃଶ୍ୱାସ ପ୍ରଶ୍ୱାସକୁ ଆୟତ୍ତ କରିବାକୁ ଲାଗିଲା ।

ହଠାତ୍ ମୁଁ ଚମକି ପଡ଼ିଲି । ତମ୍ବୁର ଚଟାଣରେ ପଡ଼ିଥିବା ଏକ ବସ୍ତୁକୁ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇ ପଡ଼ିଲି ।

ହଠାତ୍ ବାହାରେ କୋଳାହଳ । ଉକ୍ତ ବସ୍ତୁଟିକୁ ମୁଁ ଗାଉନ ପକେଟରେ ଭରି ବାହାରକୁ ଚାଲି ଆସିଲି । ବନ୍ଧୁମାନେ ଫେରି ଆସିଥାନ୍ତି ହତାଶ ହୋଇ । ସେମାନେ ସତ୍ୟଜିତର ତମ୍ବୁ ମଧ୍ୟକୁ ପ୍ରବେଶ କଲା ପରେ ମୁଁ ବେଗମଙ୍କ ତମ୍ବୁ ମଧ୍ୟରେ ପ୍ରବେଶ କଲି । ସେ ଶଯ୍ୟାରେ ପଡ଼ି ଦ୍ରୁତଗତିରେ ନିଃଶ୍ୱାସ ଛାଡ଼ୁଥାନ୍ତି । ମୋତେ ଦେଖି ଉଠିପଡ଼ି ପ୍ରଶ୍ନକଲେ—"ଆପଣ ?"

ପକେଟରୁ ପଟେ ଚପଲ ବାହାର କରି ତାଙ୍କ ହାତକୁ ବଢ଼େଇ ଦେଇ କହିଲି—"ଏଇଟା ସତ୍ୟଜିତର ତମ୍ବୁରେ ଛାଡ଼ି ଆସିଥିଲେ ।" ଏବଂ ତମ୍ବୁର ଗୋଟିଏ କୋଣରେ ପଡ଼ିଥିବା ବାଘ ଚମଡ଼ାର ଏକ କୋଟ୍ ଦେଖି ମୁଁ ତାଙ୍କୁ ଅନେଇ ହସିଲି । ସେ ଆଖି ତଳକୁ କଲେ । ତାଙ୍କ ଦେହରେ କମ୍ପନ···ଲାଲ୍ ଅଧରରେ କମ୍ପନ ।

"ଆପଣ ସତ୍ୟଜିତଙ୍କୁ ଆଗରୁ ଇନ୍‌ଫର୍ମ କରି ପାରିଥାନ୍ତେ ।" ମୁଁ କହିଲି ଏବଂ ଦ୍ରୁତଗତିରେ ବାହାରକୁ ଚାଲି ଆସିଲି ।

ସତ୍ୟଜିତକୁ ଘେରି ସମସ୍ତେ ବାଘ ବିଷୟରେ ପ୍ରଶ୍ନ କରୁଥାନ୍ତି । ମେନନ ହାତମୁଠା କରି ମାଟିରେ ପିଟୁଥାନ୍ତି ।

"ବାଘ ଏଠାକୁ କେମିତି ଆସିଲା ? ଆମେ ତ ତାକୁ ଜଙ୍ଗଲ ସାରା ଖୋଜୁଥିଲୁ ।"

"ବାଘ ନୁହେଁ ! ବାଘୁଣୀ ଆସିଥିଲା ।" ମୁଁ କହିଲି ।

ସମସ୍ତେ ଆଶ୍ଚର୍ଯ୍ୟ ହେଲେ—"ବାଘୁଣୀ···! ସେ ଯେ ମୃତ । ତୁମେ ଭୁଲ୍ କହୁଛ—ବାଘ ଆସିଥିବ—ବାଘ ।"

"ନା—ବାଘ ନୁହେଁ । ବାଘ ତ ନିଜ ସଙ୍ଗିନୀ ହରାଇ ହୁଏତ ଏ ଜଙ୍ଗଲ ଛାଡ଼ି ଦୂରକୁ ଚାଲି ଯାଇଥିବ ।" ମୁଁ ଦୃଢ଼ ସ୍ୱରରେ କହିଲି ।

"ଆଶ୍ଚର୍ଯ୍ୟ ! ତୁମେ କହିବାକୁ କଅଣ ଚାହୁଁଛ ?" ପ୍ରଫେସର ପ୍ରଶ୍ନ କଲେ ।

"ବାଘୁଣୀ ଆସିଥିଲା···ତା'ର ଆତ୍ମା ଆସିଥିଲା । ନିଜ ମୃତ୍ୟୁର ପ୍ରତିଶୋଧ ନେବାପାଇଁ, ଅଥବା ନିଜ ତୃଷାର୍ତ୍ତ ଆତ୍ମାକୁ ଶାନ୍ତି ପ୍ରଦାନ କରିବା ପାଇଁ ।"

ମୋ କଥା କେହି ବୁଝି ପାରିଲେ ନାହିଁ, ମୋ କଥାକୁ ଖଣ୍ଡନ ମଧ୍ୟ କେହି କଲେନାହିଁ ଏବଂ ମେଜରଙ୍କ ସହିତ ପ୍ରଫେସର ଓ ନଟବର ଦାସଗୁପ୍ତ ପୁଣି ଥରେ ଜଙ୍ଗଲ ଭିତରକୁ ଚାଲିଗଲେ । ପ୍ରତାପ ମହାନ୍ତି ଓ ମିଷ୍ଟର ନନ୍ଦ ହାତରେ ରାଇଫଲ୍ ଧରି ତମ୍ବୁ ନିକଟରେ ସକାଳ ପର୍ଯ୍ୟନ୍ତ ପହରା ଦେଲେ ।

ସେତେବେଳକୁ ସତ୍ୟଜିତ ଶୋଇପଡ଼ିଥିଲା । ବେଗମ୍ ରଶିଦ୍ ଉତ୍ତେଜନାର ଉପଶମ ପାଇଁ ହୁଏତ ସବଂଶକ୍ତିମାନ । ଈଶ୍ୱରଙ୍କ ନିକଟରେ କ୍ଷମାଭିକ୍ଷା କରୁଥିଲେ । ଏ ପ୍ରକାର ଦୁର୍ବଳତା ଆଉ କେବେ ତାଙ୍କୁ ଦୁଃସାହସ କରିବା ପାଇଁ ବାଧ୍ୟ ନ କରୁ—ସେ ହୁଏତ ମନେ ମନେ ପ୍ରତିଜ୍ଞା କରୁଥିଲେ ଏବଂ ସଙ୍ଗିନୀ ବିହୀନ ବାଘ ଜଙ୍ଗଲର ସୀମା ପାରକରି ଏକ ଅଜଣା ପଥ ଉଦ୍ଦେଶ୍ୟରେ ଆଗେଇ ଚାଲିଥିଲା ।

ଏବଂ ମୋର ଶିକାରୀ ବନ୍ଧୁମାନେ ଜଙ୍ଗଲ ମଧ୍ୟରେ ତାକୁ ଖୋଜୁଥିଲେ ।



('କଥାକାର' ଜୁଲାଇ ୧୯୭୩)

# ଜୀବନ

ଝର୍କା ଦେଇ କିମ୍ବା ଦ୍ୱାର ଦେଇ ରାସ୍ତାକୁ ଲକ୍ଷ୍ୟକଲେ ଆଖିରେ ପଡ଼େ ଭିଡ଼ । ଅସରନ୍ତି···ସମୁଦ୍ର ଲହଡ଼ି ପରି ଭିଡ଼ । ଯା'ର ଆରମ୍ଭ ନାହିଁ କିମ୍ବା ଶେଷ ମଧ୍ୟ ନାହିଁ । ଯେ ପର୍ଯ୍ୟନ୍ତ ମୁଁ ଘର ଭିତରେ ସେ ପର୍ଯ୍ୟନ୍ତ ମୁଁ ମାନେ ମୁଁ—ନିରଞ୍ଜନ ସାମନ୍ତ । ଭିଡ଼ଠାରୁ ଦୂରରେ ଥିଲା ପର୍ଯ୍ୟନ୍ତ ମୁଁ ମାନେ ମୁଁ । ହେଲେ ଘର ବାହାରେ ମୁଁ ଆଉ ମୁଁ ହୋଇ ନ ରହି ଭିଡ଼ର ଏକ ଅଂଶ ହୋଇପଡ଼େ ।

ଝର୍କାଟା ବନ୍ଦକଲି । କବାଟରେ ତାଲା ପକାଇ ସିଡ଼ି ଦେଇ ତଳକୁ ଓହ୍ଲାଇ ଆସିଲି । ବାପ୍ ! ଆଖି ଆଗରେ ଭିଡ଼ର ସମୁଦ୍ର । ଥରେ ଥରେ ଏଇ ଭିଡ଼ର ସମୁଦ୍ର ଭିତରେ ହଜିଯାଇ ଲୁପ୍ତ ହୋଇଯିବାକୁ ଇଚ୍ଛା ହୁଏ । କିନ୍ତୁ ହଜି ହୁଏନି । କିଏ ଜଣେ ପଛରୁ ଡାକିଦିଏ, "କିଓ ନିରଞ୍ଜନ—କୁଆଡ଼େ ଚାଲିଲ ?"

ଶଙ୍କର ଏଯାଏଁ ଫେରିନି । ଫେରିବ କି ନାହିଁ କିଛି ଠିକ୍ ନାହିଁ । ଗତ ରାତିରେ ମଧ୍ୟ ଫେରି ନ ଥିଲା । ମୁଁ ରାସ୍ତାକଡ଼ରେ ଠିଆହୋଇ ମୋ ଆଖି ଆଗରେ ଥିବା ସହରକୁ ଚାହିଁଲି । ଚତୁର୍ଦ୍ଦିଗରେ ମଣିଷ ଏବଂ ମଣିଷ । ସାଇକେଲ, ରିକ୍ସା, ମଟର ଇତ୍ୟାଦିଙ୍କ ଭିତରେ ଉପରେ ମଣିଷ । ବାଁପଟେ ଗୋଟାଏ ପଞ୍ଜାବୀ ଲୋକମାନଙ୍କ ଭିଡ଼ ଲଗାଇ ପୁରୁଷତ୍ୱର ଔଷଧ ବିକୁଛି । ଏମାନଙ୍କ କଥା ଶୁଣିବାକୁ ଖୁବ ଭଲ ଲାଗେ । ମନ ନେଇ କଥା କୁହନ୍ତି ଏମାନେ । କିନ୍ତୁ ସମସ୍ତେ ଠକ । ଏଇ ପଞ୍ଜାବୀ ଏତେ ଲୋକଙ୍କୁ 'ଭାରତ କି ଦଓ୍ୱା' ବିକୁଛି, ହେଲେ ନିଜେ ଏକ ନପୁଂସକ । ତା' ସ୍ତ୍ରୀ ନିଜେ ଶଙ୍କରକୁ ଏ କଥା କହିଛି ।

ଛୁଟି ଦିନଗୁଡ଼ାକ ସତରେ ଖୁବ ବିରକ୍ତିକର । ଶଙ୍କର ମଧ୍ୟ ଏତିକିବେଳେ କୁଆଡ଼େ ଚାଲି ଯାଇଛି । ହରିଣ ତା' ଗାଁକୁ ଗଲାଣି ତିନିଦିନ

ହେଲି । ଦିନକରେ ଫେରିବ କଥା ଯାଇଥିଲି । ଏଯାଏଁ ଫେରିନି । ମୁଁ ନିଜକୁ ହଠାତ୍ ଖୁବ୍ ଏକାକୀ ଅନୁଭବ କଲି । ମୋ ଚତୁର୍ଦ୍ଦିଗର ଚିତ୍କାର, କୋଳାହଳ, ଶବ୍ଦ କ୍ଷଣିକ ମଧ୍ୟରେ ବନ୍ଦ ହୋଇଗଲା । ହଠାତ୍ ଏକ ଜନ୍ତ୍ରବ୍ୟଥତା ଇଲେକ୍‌ଟ୍ରିକ ଫୁଲ୍ ଭଲ୍ୟୁମରେ ବାଜୁଥିବା ରେଡ଼ିଓ ଯେମିତି ନୀରବ ହୋଇଯାଏ ।

ଏ ବିରାଟ ଭିଡ଼, ଏତେ ଲୋକଙ୍କ ମଧ୍ୟରେ ମୁଁ କେବଳ ଦୁଇଜଣଙ୍କୁ ଜାଣେ, ଯେଉଁମାନେ ବର୍ତ୍ତମାନ ମୋ ନିକଟରେ ନାହାଁନ୍ତି, ଏ ସହରରେ ନାହାଁନ୍ତି । ଏ ସହରର କାହାକୁ ମୁଁ ଚିହ୍ନିନାହିଁ, ମୁଁ ମନେ ମନେ ଭାବିଲି ଏବଂ ଭିଡ଼ ଭିତରେ ହଜିଯାଇ ନିଜର ଅସ୍ତିତ୍ୱକୁ ଭିଡ଼ର ଅସ୍ତିତ୍ୱ ମଧ୍ୟରେ ଲୀନ କରି ଦେବାକୁ ଇଚ୍ଛାକଲି ।

ଏବଂ ପରକ୍ଷଣରେ ମୁଁ ଭିଡ଼ ଭିତରେ ହଜିଗଲି । ଭିଡ଼ର ଏକ ଅଂଶ ହୋଇଗଲି ।

ଠିକ୍ ସେଇପରି ସମୟରେ ମୁଁ ତାଙ୍କୁ ଦେଖିଲି । ପ୍ରଥମେ ତାଙ୍କ ପଣତ କାନି, ତା'ପରେ ପର୍ସ ଏବଂ ପରେ ପରେ ତାଙ୍କ ରିଷ୍ଟୱାଚ, ବେଣୀ, ବେଣୀର ଫୁଲ, ଗାଲ, ନିତମ୍ବ, ପିଠି, ପତଳା ବ୍ଲାଉଜ ତଳୁ ବ୍ରେସିଅରର ଫିତା, ବକ୍ଷ ଏବଂ ସମ୍ପୂର୍ଣ୍ଣ ମୁଖ ସହ କଳା କୁଙ୍କୁମ ବିନ୍ଦୁ ।

ସେ ନିଜ ସହିତ ଚବିଶ କିମ୍ବା ପଚିଶଟି ବର୍ଷର ସମସ୍ତ ଋତୁମାନଙ୍କୁ ଧରି ଚାଲୁଥାନ୍ତି । ସେ ଯେମିତି ସେ ନୁହଁନ୍ତି । କେବଳ ଚବିଶ/ପଚିଶ ବର୍ଷର ସମସ୍ତ ଋତୁ । ମୁଁ ତାଙ୍କ ପଛେ ପଛେ ତାଙ୍କ ବେଣୀର ଫୁଲକୁ ଦେଖି ଦେଖି, ତା'ର ଗନ୍ଧ ଶୁଙ୍ଘି ଶୁଙ୍ଘି, ତାଙ୍କୁ ଅନୁଧାବନ କରୁଥାଏ ।

ଏ ସମ୍ପୂର୍ଣ୍ଣ ଭିଡ଼, ଏ ଚିତ୍କାର ସତ୍ତ୍ୱେ ସେ ଚାଲିଥାନ୍ତି ଏବଂ ମୋର ଅନ୍ୟ କିଛି କରିବାର ନ ଥିବାରୁ, ଶଙ୍କର ଓ ହରିଣ ନ ଥିବାରୁ, ଭିଡ଼ ଭିତରେ ହଜି ଯିବାର ଇଚ୍ଛାରେ, ତାଙ୍କୁ ଦେଖି, ତାଙ୍କ ପ୍ରତି ଆକର୍ଷିତ ହୋଇ ତାଙ୍କୁ ଏକରକମ କୌଣସି ଉଦ୍ଦେଶ୍ୟ ନ ଥାଇ ଫଲୋ କରୁଥିଲି ।

ଝାଲରେ ତାଙ୍କ କାଖତଳ ବ୍ଲାଉଜ ଭିଜି ଯାଇଥାଏ । ପଛପଟେ ବେଣୀଟା ହଲୁଥାଏ । ଫୁଲର ପାଖୁଡ଼ାଗୁଡ଼ିକ ଗୋଟିଏ ଗୋଟିଏ ହୋଇ ଝଡ଼ି ପଡ଼ୁଥାନ୍ତି । ମୋର ଅଦମ୍ୟ ଇଚ୍ଛା ହେଉଥାଏ, ସେଗୁଡ଼ିକ ରାସ୍ତାରୁ ଗୋଟାଇ, ସଂଗ୍ରହ କରି ତାଙ୍କୁ ଦେଇ ଦେବାକୁ ।

ସେ ଗ୍ଲୁଥାନ୍ତି କାହା ପ୍ରତି ଦୃଷ୍ଟି ନ ଦେଇ, ମୁଁ ଗ୍ଲୁଥାଏ, ତାଙ୍କ ନିତମ୍ବର ଦୋଳନକୁ ଲକ୍ଷ୍ୟ କରି କରି । ବେଳେବେଳେ ଇଚ୍ଛା ହେଉଥାଏ, ଭିଡ଼ ଦେଖି ପଛଆଡ଼ୁ ଦାବି ଦେବି କି ?

ହଠାତ୍ ମୋର ମନେହେଲା, ତାଙ୍କୁ କେଉଁଠି ଦେଖିଛି । ତାଙ୍କ ଗାଲର ତିଲ ଚିହ୍ନଟା ଯେମିତି ମୋର ଅତି ପରିଚିତ । ତାଙ୍କର ସେ ଗୋରା ହାତ, ଗୋଲପି ନଖ ଓ ଷ୍ଟୋୟାର ଓ୍ୱାଚ ଯେମିତି ମୋର ଅତି ପରିଚିତ···କିନ୍ତୁ··· ।

ଆଉ କିଛି ଭାବିବା ପୂର୍ବରୁ ସେ ମୋ ସାମ୍ନାରେ ଠିଆ ହୋଇଗଲେ । ଏଥରକ ଆଖି ପୂରାଇ ମୁଁ ତାଙ୍କୁ ଦେଖିଲି । ସେ ବସ୍ ପାଇଁ କ୍ୟୁରେ ଠିଆ ହୋଇ ମୋତେ ଥରେ ଗ୍ଲହିଁଲେ । ମୁଁ ତାଙ୍କୁ ଗ୍ଲହିଁଲି । ମୋ ଗ୍ଲତି ଭିତରୁ କିଏ ଜଣେ କହିଲା—"ମାରି ଦେ ଆଖି" ଏବଂ ଆପେ ଆପେ ମୋ ବାଁ ଆଖିଟା ଝଟ୍‌କିନି ବନ୍ଦ ହୋଇ ପୁଣି ଖୋଲିଗଲା । ସେ ପ୍ରଥମେ ଆଶ୍ଚର୍ଯ୍ୟ ପରେ ବିରକ୍ତି ଓ ଘୃଣାରେ ଗ୍ଲହିଁ ମୁହଁ ଆରପଟକୁ ବୁଲାଇ ନେଲେ ।

ମୋ ସାମ୍ନାରେ ଭିଡ଼ । ଏକ ଗତିମାନ ଭିଡ଼ । ବାଁରୁ ଡାହାଣକୁ ଡାହାଣରୁ ବାଁକୁ । ପୂର୍ବରୁ ପଶ୍ଚିମକୁ । ପ୍ରତି କୋଣରୁ ପ୍ରତି ଦିଗକୁ । ପ୍ରତି ଦିଗରୁ ପ୍ରତି କୋଣକୁ । ଭିଡ଼ ଯେମିତି ଆମକୁ ମାନେ ବସ୍ ପାଇଁ କ୍ୟୁରେ ଠିଆ ହୋଇଥିବା ବ୍ୟକ୍ତିମାନଙ୍କୁ ଦୁଇ ହାତ ପ୍ରସାରିତ କରି ଅଭ୍ୟର୍ଥନା କରୁଥିଲା, ନିଜ ମଧ୍ୟରେ ବିଲୀନ କରିଦେବା ପାଇଁ ଡାକୁଥିଲା । ମୁଁ ତାଙ୍କ ନାକରେ ଓ ନାକ ତଳେ କ୍ଲାନ୍ତି ଯୋଗୁଁ ଜମି ଯାଇଥିବା ଝାଳ ବିନ୍ଦୁମାନଙ୍କୁ ଦେଖୁଥିଲି ।

ଶଙ୍କର ଗତକାଲି ନିଚୁ ସାହୁର ଗଞ୍ଜେଇ ଓ ଚରସ ନେଇ ବାହାରକୁ ଯାଇଛି । କିଏ ଜାଣେ, ଶଳା ଧରା ପଡ଼ିଲା କି ନାହିଁ । ଧରା ପଡ଼ିଥିଲେ ଯିବ ଦୁଇମାସ । ଧରା ନ ପଡ଼ିଲେ କିନ୍ତୁ ସାତଦିନ ଆରାମରେ ବିତିଯିବ । ମାଂସ ଓ ମଦ । ବାଃ ! ମୁଁ କଳ୍ପନା କଲି ଏବଂ ପ୍ରାର୍ଥନା କଲି, "ହେ ଭଗବାନ, ଶଙ୍କର ଧରା ନ ପଡ଼ୁ । ଭଲ ଭାବେ ସେ ତା' କାମ ସମାପ୍ତ କରି ଏଠି ପହଞ୍ଚୁ ।"

ଖୁବ୍ ଗରମ । ଏଇଟା ଆରମ୍ଭ ମାତ୍ର । ଏଥର ଖୁବ୍ ଗରମ ହୋଇ-ପାରେ । ଲାଇନ୍‌ରେ ପ୍ରାୟ ପନ୍ଦର ଜଣ ଲୋକ ଠିଆ ହୋଇଛନ୍ତି । ଖରା ଧିରେ ଧିରେ କମି ଆସୁଛି । ମୋ ସାମ୍ନାରେ ରାସ୍ତା, ରାସ୍ତାରେ ଭିଡ଼, ଭିଡ଼ ଆରପଟେ ଫୁଟପାଥ ଏବଂ ତା' ପାଖରେ ଲମ୍ବା ବିସ୍ତୀର୍ଣ୍ଣ ପ୍ରାନ୍ତର । ପିଲାମାନେ ଖେଳୁଛନ୍ତି । ଯୁବକ ଯୁବତୀ, ପ୍ରେମିକ ପ୍ରେମିକା, ସ୍ୱାମୀ ସ୍ତ୍ରୀ, ବୃଦ୍ଧବୃଦ୍ଧା

ପଡ଼ିଆରେ ବସି ଗପୁଛନ୍ତି, ପ୍ରେମାଳାପ କରୁଛନ୍ତି, ହସୁଛନ୍ତି ଏବଂ ସେମାନଙ୍କ ମୁକ୍ତ ହସ ଯେପରି ଆମେ ଏ ପଟେ ଠିଆ ହୋଇଥିବା ବ୍ୟକ୍ତିମାନଙ୍କୁ ଉପହାସ କରୁଛନ୍ତି । ଯେମିତି କହୁଛନ୍ତି, "ଆମେ ହସୁଛୁ···କାରଣ ଆମେ ହସି ଜାଣିଛୁ । ତମେ କାନ୍ଦୁଛ···କାରଣ ତମେ ହସି ଜାଣିନ ।"

ଏ ସହରର ବର୍ଷ ଠିକ୍ ଏଇପରି । ସମୟର ଠିକ୍ ନାହିଁ । ମୁଁ ଘଡ଼ିକୁ ଲକ୍ଷ୍ୟକଲି । ପାଞ୍ଚଟା ତିରିଶ । ଝଡ଼ କମି ଆସୁଛି । ପଶ୍ଚିମ ଦିଗଟା ଲାଲ୍ ହୋଇ ଆସୁଛି । ମୁଁ ଠିଆ ହୋଇ ବଡ଼ ବ୍ୟସ୍ତ ହୋଇ ପଡ଼ିଲି । ଇଚ୍ଛା ହେଲା ତାଙ୍କ କାନ୍ଧରେ ହାତ ଦେଇ ତାଙ୍କ ଗାଲରେ ମୁହଁ ଲଗାଇ, ସେ ବ୍ୟବହାର କରୁଥିବା ପାଉଡ଼ରର ବ୍ରାଣ୍ଡ ଜାଣିବା ପାଇଁ । ତାଙ୍କ ଏସେନ୍ସର ମହକ ଶୁଙ୍ଘିବା ପାଇଁ । ବାଁ ଆଖି ବନ୍ଦକରି ଖୋଲିବା ପରଠାରୁ ସେ ଆଉ ମୋତେ ଚାହୁଁ ନ ଥିଲେ ବା ନ ଚାହିଁବାର ଛଳନା କରୁଥିଲେ । ମୁଁ କିନ୍ତୁ ଠିକ୍ ଦେଖୁଥିଲି, ସେ କଣେଇ କଣେଇ ଚାହୁଁଥିଲେ ମୋତେ, ମୋର ଅଙ୍ଗଭଙ୍ଗୀକୁ । ମୁଁ ଜାଣେ ସବୁ ନାରୀ ଏଇପରି । ସେମାନେ ନିଜକୁ ଅତ୍ୟନ୍ତ ଭଦ୍ର ବୋଲି ପ୍ରମାଣିତ କରିବେ । 'ଟଚ୍ ମି ନଟ୍' । ଦେଖାଇବେ ଯେମିତି ସେମାନେ ସେକ୍ସକୁ ଘୃଣା କରନ୍ତି । ଏ ପ୍ରକାରର ଏଣ୍ଟରଟେନମେଣ୍ଟକୁ ଘୃଣା କରନ୍ତି । କିନ୍ତୁ ଏକାନ୍ତରେ ଶ୍ରୀତିରେ ହାତରଖି ଓଠରେ ଓଠ ଲଗାଇ ଦେଲେ, ଠିକ୍ ଏକ ଗଣ୍ଡିକଟା ଗଛ ପରି ଖଟ ଉପରେ ପଡ଼ି ଲମ୍ବା ଲମ୍ବା ନିଃଶ୍ୱାସ ମାରିବେ···ଆଉ ତା'ପରେ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରିଦେଇ କହିବେ—"ଏ କଅଣ କଲ ତୁମେ ?"

ତାଙ୍କ ପଛରେ ଲାଗିବା ପାଇଁ ମୋର ଆଗ୍ରହ ନ ଥିଲା । କେବଳ ଏମିତି ଏକ ଖିଆଲ । କାମ ତ କିଛି ନାହିଁ । ଏମିତି ଭାବେ ସନ୍ଧ୍ୟାଟାକୁ ଉପଭୋଗ କରିଯାଉ । ନୂତନ ଏକ ଅନୁଭୂତି ହେବ । କ୍ଷତି କଅଣ ? ଏଇ ଖିଆଲ୍ ମନ ନେଇ ମଣିଷ କେତେ କଅଣ କରି ଚାଲିଛି । ତେଣୁ ହଠାତ୍ ମନର ଏଇ ଖିଆଲକୁ ମୁଁ କାଟି ପାରିଲି ନାହିଁ । ମୁଁ ଭୁଲିବାକୁ ଚେଷ୍ଟାକଲି ଯେ ମୁଁ ନିରଞ୍ଜନ ସାମନ୍ତ, ଜଗଦୀଶ ସେଠଙ୍କ ଲୁଗା ଦୋକାନର ମୁଁ ଏକ ଚପରାଶୀ ବା ଦରଓ୍ୟାନ । ଆଜି ଛୁଟି । ଛୁଟି ଦିନମାନଙ୍କରେ ଜଗଦୀଶ ସେଠର ଚପରାଶୀ ଅଥବା ଦରଓ୍ୟାନ ନିରଞ୍ଜନ ସାମନ୍ତର ମୃତ୍ୟୁ ହୁଏ ଏବଂ ଜନ୍ମ ହୁଏ ନୂଆ ଏକ ନିରଞ୍ଜନର; ମୁଁ ସେଇ ନୂଆ ନିରଞ୍ଜନ । ଯାହାର ବାଁ ପକେଟରେ ଗୁଡ଼ାଏ କାଗଜ । ଡାହାଣ ପକେଟରେ ଏକ ରୁମାଲ । ବ୍ୟାକ ପକେଟରେ ମାତ୍ର ପାଞ୍ଚ ଟଙ୍କା ।

ହଠାତ୍ ଭିଡ଼ ଭିତରେ ତାଙ୍କୁ ଦେଖି ନ ଥିଲେ ମୁଁ କେବେ ତାଙ୍କ ପଛରେ ଲାଗି ନ ଥାନ୍ତି କମ୍ବା ଘର ଭିତରୁ ବାହାରିଲା ସମୟରେ ଭିଡ଼ ବିଷୟରେ ମୋ ମନ ଭିତରେ ଏକ ଦାର୍ଶନିକ ପ୍ରତିକ୍ରିୟା ସୃଷ୍ଟି ହୋଇ ନ ଥିଲେ, ମୁଁ ତାଙ୍କୁ କେବେ ଦେଖି ନ ଥାନ୍ତି ।

ମୁଁ ନିଶ୍ଚୟ କରି ସାରିଥିଲି, ଆଜି ସେ ଯୁଆଡ଼େ ଯିବେ, ତାଙ୍କ ପଛେ ପଛେ ମୁଁ ମଧ୍ୟ ଯିବି । ତାଙ୍କୁ ମୁଁ ଚିହ୍ନି ନ ଥିଲି କମ୍ବା ତାଙ୍କ ନାଁ ମଧ୍ୟ ଜାଣି ନ ଥିଲି । ସେ ଏତେ ସୁନ୍ଦରୀ ମଧ୍ୟ ନ ଥିଲେ । ତଥାପି ମୁଁ ତାଙ୍କ ବେଣୀର ଫୁଲକୁ ଦେଖୁଥିଲି । ଗାଲର ତିଲ ଚିହ୍ନକୁ ଦେଖୁଥିଲି । ପାଦର ଅଲତାକୁ ଦେଖୁଥିଲି ।

ସେ ବ୍ୟସ୍ତ ହୋଇ ବୁଲି ପଡ଼ିଲେ । ତାଙ୍କ ଦେହର ନରମ ସ୍ପର୍ଶରେ ମୁଁ ଚମକିପଡ଼ି ତାଙ୍କୁ ଚାହିଁଲି । ସେ ଗରମରେ ଅତିଷ୍ଠ ହୋଇ ଉଠିଥାନ୍ତି । ମୁଁ ଟିକେ ହସିଲି । ମୋ ହସର ପ୍ରତିକ୍ରିୟା ତାଙ୍କ ମୁହଁରେ ମୋ ସପକ୍ଷରେ ହେଲା ସେ ମଧ୍ୟ ହସିଲେ ।

"ଭୀଷଣ ଗରମ ଆଜି !" ତାଙ୍କ ମନ ନେଇ ମୁଁ କହିଲି ।

ସେ କିଛି କହିଲେ ନାହିଁ । ଆମ 'କ୍ୟୁ'ର ଆଗରେ କେତେକ ବୃଦ୍ଧ ଖବର କାଗଜ ପଢ଼ୁଥାନ୍ତି । ନୂଆ ବଜେଟ ବିଷୟରେ ଆଲୋଚନା କରୁଥାନ୍ତି । ଦରଦାମ ବୃଦ୍ଧି ବିଷୟରେ ଉଚ୍ଚ ସ୍ୱରରେ ଯୁକ୍ତିତର୍କ କରୁଥାନ୍ତି । ଏ ବୟସରେ କେବଳ ଆଲୋଚନା ଓ ଯୁକ୍ତିତର୍କ ହିଁ କରିହେବ । ହାରି ଯାଇଥିବା ଯାତ୍ରୀମାନେ କେବଳ ବିଶ୍ଳେଷଣ ହିଁ କରି ପାରିବେ । ଅତୀତକୁ ଚନ୍ଦ୍ରାକରି ବନ୍ଦିରେ ଅନିଦ୍ରା ହୋଇ କେବଳ କାନ୍ଦି ପାରିବେ । କରି କିଛି ପାରିବେ ନାହିଁ । ତାଙ୍କ ପଛରେ କେତେକ ଅଫିସ ଫେରନ୍ତା ପ୍ରୌଢ଼ । ଯେଉଁମାନେ ଏ ଦେଶ, ଜାତି, ସହର, ରାଜନୀତି ବିଷୟରେ କିଛି ଜାଣନ୍ତି ନାହିଁ । ସେମାନେ କେବଳ ସୀମାବଦ୍ଧ ତାଙ୍କ ପରିବାର, ପିଲାମାନଙ୍କର ଅଳି ଅଭିଯୋଗ, ସ୍ତ୍ରୀର ଅଭିମାନ, ଅଭିଯୋଗ ଓ ଉପରିସ୍ଥ କର୍ମଚାରୀମାନଙ୍କର ଆଦେଶ ଅଥବା ଗାଳି ମଧ୍ୟରେ । ତାଙ୍କ ସୀମା ବାହାରେ କଅଣ ହେଉଛି, ସେମାନେ ତାହା ଜାଣନ୍ତି ନାହିଁ । ଜାଣିବାକୁ କେବେ ଚେଷ୍ଟା କରନ୍ତି ନାହିଁ । ସକାଳୁ ଉଠି ନିତ୍ୟକର୍ମ ସାରି ଅଫିସ ଓ ତା'ପରେ ଘର ଏବଂ ରାତିରେ ସ୍ତ୍ରୀର ନଗ୍ନ ଶରୀରକୁ ଅଣ୍ଡାଳି ବର୍ଷ ଶେଷରେ ସନ୍ତାନର ଜନକ ହୋଇ ସେମାନେ ଖୁସି ହୁଅନ୍ତି । ସେଇଟା ତାଙ୍କ ପାଇଁ ଜୀବନ । ଏମାନଙ୍କୁ ମୋର ଖୁବ୍ ଦୟା ଲାଗେ । ଥରେ ଥରେ ସେମାନଙ୍କୁ ସନ୍ତୁଷ୍ଟ ଦେଖି ରାଗରେ ଚିତ୍କାର କରିବା ପାଇଁ ଇଚ୍ଛା ହୁଏ, "ଆବେ ଶଳେ··· ଏଇଟା ଜୀବନ ନୁହେଁ । ତୁମେମାନେ ଯେମିତି ଭାବେ ବଞ୍ଚୁଛ ତାହା ଜୀବନ

ନୁହେଁ; ମୃତ୍ୟୁ ଏକ ଅଭିଶାପ । ଜୀବନର ଅର୍ଥ ଏଇଟା ନୁହେଁ । କିନ୍ତୁ କହି ପାରେନି । ଆଖି ଆଗରେ ମୋ ବାପାଙ୍କ ମୁହଁଟା ଭାସିଉଠେ । ସେ ମଧ୍ୟ ଏଇପରି ଭାବେ ଜୀବନକୁ ସ୍ୱୀକାର କରି ନେଇଥିଲେ ଏବଂ ମୁଁ ତାଙ୍କ ଯୌନକ୍ଷୁଧା ନିବାରଣ ବେଳର ଏକ ଅଦରକାରୀ ସୃଷ୍ଟି, ବର୍ତ୍ତମାନ ସବୁ ବିଶ୍ଳେଷଣ କରି ନୀରବରେ ଚିତ୍କାର କରୁଛି—"ହେ ମୋର ପୂଜ୍ୟ ପିତା ! ମୋତେ ସୃଷ୍ଟି କାହିଁକି କଲ ? ସେଇ ଚରମ ମୁହୂର୍ତ୍ତିଟିରେ 'ନିରୋଧ' ବ୍ୟବହାର କରିଥିଲେ ତୁମର କ୍ଷତି କଅଣ ହୋଇଥାନ୍ତା ?" ତାଙ୍କ ପଛକୁ କେତେକ ସ୍ୱପ୍ନ ବିଭୋର ଯୁବକ ଯୁବତୀ ଓ ତା'ପରେ ସେ ଏବଂ ତାଙ୍କ ପଛରେ ମୁଁ···ଶ୍ରୀମାନ ନିରଞ୍ଜନ ସାମନ୍ତ ।

ହରିଶ ବିଗୁଡ଼ି ହାରିଗଲା । ସମସ୍ତ ପ୍ରକାର ଚେଷ୍ଟା କରି ମଧ୍ୟ ସେ ହାରିଗଲା । ଏ ଭିଡ ଭିତରେ ସେ ହଜିଗଲା ଏବଂ ଯେତେବେଳେ ଆମେ ତାକୁ ଖୋଜି ଖୋଜି ପାଇଲୁ, ସେତେବେଳକୁ ତା'ର ସଂସାର ନଷ୍ଟ ହୋଇ ସାରିଥିଲା । ଲ' ପାସ୍ କଲାପରେ ବଡ଼ ସହରରେ ଶୁଭାରମ୍ଭ କରିବା ଆଶାରେ ଭିଡ଼ ଓ ସହର ସହିତ ସଂଗ୍ରାମ କରି ଆରମ୍ଭ କରିଥିଲା । କଳା କୋଟ୍ ଫାଟି ଖଣ୍ଡ ଖଣ୍ଡ ହେଲା ପର୍ଯ୍ୟନ୍ତ ସେ ସଂଗ୍ରାମରେ ହାରିଯାଇ ନ ଥିଲା । ଦୁଇ ମାଇଲ ବାଟ ଚାଲିଚାଲି ସେ କୋର୍ଟ ଯାଉଥିଲା । ଦୀର୍ଘ ଦୁଇବର୍ଷ ଭିତରେ ସେ ମୋତେ ଓ ଶଙ୍କରକୁ ସର୍ବଦା ନିଜ ଅନ୍ତରାତ୍ମା ସହିତ ସଂଗ୍ରାମ କରିବାପାଇଁ ସାହସ ଓ ଧୈର୍ଯ୍ୟ ଦେଇ ଆସିଛି । ହେଲେ ଅବଶେଷରେ ହେଲା କଅଣ ? ଛନଛନ ହେଲା ଗାଁକୁ ଯାଇଛି । କେବେ ଫେରିବ କିଏ ଜାଣେ ?

"ନିହାତି ବୋରିଙ୍ଗ ।" ସେ କହିଲେ ରାସ୍ତାକୁ ଲକ୍ଷ୍ୟକରି ।

ମୁଁ ନୀରବ ରହିଲି । କାରଣ ହଠାତ୍ କଅଣ କହିଲେ ସେ ଖୁସି ହେବେ ତା' ମୁଁ ଭାବି ପାରିଲି ନାହିଁ । 'କ୍ୟୁ'ର ବୃଦ୍ଧ, ପ୍ରୌଢ଼ ଓ ଯୁବକ ଯୁବତୀମାନେ ସମସ୍ତ ପ୍ରକାରର ଆଲୋଚନା ତ୍ୟାଗ କରି ବସ୍‌ର ଅନିଶ୍ଚିତତା ବିଷୟରେ ଆଲୋଚନା କରୁଥାନ୍ତି ।

ରାସ୍ତା ଆରପଟ ପଡ଼ିଆରେ ଜନଗହଳି ଖୁବ୍ ବୃଦ୍ଧି ପାଇ ଯାଇଥାଏ ଏବଂ ମୋର ମନେ ହେଉଥାଏ, ଯେମିତି ରାସ୍ତା ଭିଡ଼ର ଏକ ଅଂଶ ଛିଣ୍ଡିଯାଇ ପଡ଼ିଆ ମଧ୍ୟରେ ନିଜର ଆସ୍ଥାନ ଜମାଇ ଦେଇଛି । ମନେ ମନେ ମୁଁ ବିରକ୍ତ ହେଲି । ଏତେ ଭିଡ଼ କାହିଁକି ? ଲୋକମାନେ ସବୁବେଳେ ଗଡ଼ି କାହିଁକି କରୁଥାନ୍ତି ।"

ମୋ ପଛରେ ଅନେକ ବସ୍ ପ୍ରାର୍ଥୀ । ସେମାନଙ୍କର ଉଦ୍‌ବେଗ୍ନତା ଯୋଗୁଁ ମୁଁ ଥରେ ଥରେ ମୋ ସାମ୍ନା ଗୋଟି ମହିଳାଙ୍କ ଦେହରେ ଧକ୍‌କା ଖାଇବାକୁ ବାଧ୍ୟ ହେଉଥାଏ । ପଛରୁ ସେମାନେ ମୋତେ ଠେଲୁଥାନ୍ତି । ଷ୍ଟ୍ରୀଟ୍ ଲାଇଟ ଜଳି ଉଠିଥାଏ । ଉକ୍ତ ଲାଇଟ୍‌ରେ ସେ ଉତ୍କଣ୍ଠା ଅଥବା ଉତ୍ତେଜତା ପରି ଜଣା ପଡୁଥାନ୍ତି । ମୁଁ ଖାତିର କଲିନାହିଁ । ମୋ ପାଖରେ କିଛି କାମ ନାହିଁ, ତେଣୁ ମୁଁ ତାଙ୍କ ପଛରେ । ଏ ସହରରେ କିଏ କଅଣ କରୁଛି, କେହି ଧ୍ୟାନ ଦିଅନ୍ତି ନାହିଁ ।

କ୍ୟୁରେ ଠିଆ ହୋଇଥିବା ବ୍ୟକ୍ତିମାନେ, "ବସ୍...ବସ୍...ବସ୍...।" ବୋଲି ଚିତ୍କାର କରୁଥିବାବେଳେ ବସ୍ ଆସି ପହଂଚିଲା ଏବଂ ଠେଲାପେଲାର ଯୁଦ୍ଧ ମଧ୍ୟରେ ମୁଁ ଉକ୍ତ ମହିଳାଙ୍କ ପଛେ ପଛେ ବସ୍ ଭିତରେ ପ୍ରବେଶ କରି ତାଙ୍କରି ପାଖ ସିଟ୍‌ରେ ବସି ପଡ଼ିଲି । ସେ ମୋତେ ଅର୍ଥଭରା ଦୃଷ୍ଟିରେ ଚାହିଁଲେ ଏବଂ ମୁଁ ହସିଦେଲି । ସେ ମୁହଁ ୱିଣ୍ଡୋ ପଟକୁ ବୁଲାଇ ନେଲେ ।

"ଟିକେଟ !" କଣ୍ଡକ୍‌ଟର ଆମ ପାଖରେ ଠିଆହେଲା ।

"ଇଡ଼େନ ଗାର୍ଡ଼େନ ଗୋଟାଏ ।" ସେ ଟଙ୍କାଟିଏ କାଢ଼ି ତା' ହାତକୁ ବଢ଼େଇ ଦେଲେ ।

କଣ୍ଡକ୍ଟର ଗୋଟାଏ ଟିକେଟ ଓ ଖୁଚୁରା ପଇସା ତାଙ୍କୁ ଫେରାଇ ଦେଇ ମୋତେ ଲକ୍ଷ୍ୟକଲା, "ମିଷ୍ଟର୍...ଆପଣଙ୍କ ଟିକେଟ ?"

"ଇଡ଼େନ ଗାର୍ଡ଼େନ ଗୋଟାଏ ।" ମୁଁ ପାଞ୍ଚ ଟଙ୍କାର ନୋଟ୍‌ଟା ବଢ଼େଇ ଦେଲି ।

କଣ୍ଡକ୍ଟର ମୋତେ ଥରେ ଚାହିଁଲା । ସେ ଚମକି ପଡ଼ିଲେ ବୋଧହୁଏ । କଣ୍ଡକ୍ଟର ଟିକେଟ ଓ ବାକି ପଇସା ଫେରାଇ ଦେଇ ଚାଲିଗଲା ପରେ ସେ ମୋତେ ରୋଷଭରା ନୟନରେ ଚାହିଁଲେ ଯେମିତି କିଛି କହିବେ । କିନ୍ତୁ କିଛି କହିଲେ ନାହିଁ । କଅଣ ବା କହିଥାନ୍ତେ ?

ବସ୍ ଚାଲିଥିଲା । ମୁଁ ବସ୍‌ର ଦୋଳନ ସହ ଜାଣି ଜାଣି ତାଙ୍କ ଦେହକୁ ଆଉଜି ପଡ଼ୁଥିଲି । ବସ୍ ରାସ୍ତାର ଭିଡ଼କୁ ଚିରି ଦ୍ରୁତ ଅଥବା ମନ୍ଥର ଗତିରେ ଆଗେଇ ଚାଲିଥିଲା । ବସ୍ ଭିତରେ ଅନେକ ଲୋକ ଠିଆ ହୋଇ ରହିଥିଲେ ।

ଆଗରେ ହାଇକୋର୍ଟ । ଏଠାକୁ ଗଡ଼ି ଦୁଇବର୍ଣ୍ଣ ଧରି ହରଶତ୍ ପ୍ରତିଦିନ ଟୁଲି ଟୁଲି କଳାକୋଟ ଓ ଏକ ଛିଣ୍ଡା ଫାଇଲ ଧରି ଆସୁଥିଲା ଏବଂ ଫେରୁଥିଲା ।

ଦୁଇବର୍ଷ ଭିତରେ ଯାହା ସେ ଓକିଲାତିରୁ ରୋଜଗାର କରିଥିଲି, ସେତକ ତା’ ନିଜର ଭରଣ ପୋଷଣ ପାଇଁ ଯଥେଷ୍ଟ ନ ଥିଲା । କେବଳ ଶଙ୍କର ଥିଲା ବୋଲି ସେ-ମୁଁ ଆମେ ସମସ୍ତେ ଚଳି ଯାଉଥିଲୁ । ଏବେ ବିଚରା ଗାଁରେ । ତା’ ଭଉଣୀ ଆତ୍ମହତ୍ୟା କରିଛି ଗତ ସାତଦିନ ତଳେ । ଟେଲିଗ୍ରାମ ପାଇ ସେ ଯାଇଛି । ଫେରିନାହିଁ । ଫେରିଲେ ଆତ୍ମହତ୍ୟାର କାରଣ ଜଣା ପଡ଼ିବ । କିନ୍ତୁ ତା’ ଗଲା ପରେ ଶଙ୍କର ଯାହା କହୁଥିଲା ତା’ ମଧ୍ୟ ସତ ହୋଇପାରେ ।

ବସ୍ ଅଟକିଲା । ଏଇଟା ଇଡ଼େନ ଗାର୍ଡ଼େନ । ଛୁଟିଦିନ ଥିବାରୁ ଭୀଷଣ ଭିଡ଼ । ମଞ୍ଚ ଉପରେ ଅର୍କେଷ୍ଟ୍ରା ବାଜୁଛି । ଅନେକ ଏଇଠି ଓହ୍ଲାଇ ପଡ଼ିଲେ । ସେ ଓ ମୁଁ ମଧ୍ୟ ଓହ୍ଲାଇ ପଡ଼ିଲୁ । ବସ୍ ଚାଲିଗଲା । ଗାର୍ଡ଼େନ ବାହାରେ ପାର୍କିଂ ଜାଗାରେ ଅନେକ ଗାଡ଼ି । ଏ ଗାଡ଼ିଗୁଡ଼ାକର ପମ୍ପ ଖୋଲିଦେଲେ କେମିତି ହୁଅନ୍ତା, ମୁଁ ଭାବିଲି । ସେ ଗାର୍ଡ଼େନ ଭିତରକୁ ନ ଯାଇ, ପାଚେରୀ କଡ଼େ କଡ଼େ ଆଗକୁ ଚାଲି ଯାଉଥିଲେ । ମୁଁ ଗାଡ଼ିମାନଙ୍କର ପମ୍ପ ଖୋଲିବା ଭାବନା ବନ୍ଦକରି ତାଙ୍କ ପିଛା ଧରିଲି ।

ହଠାତ୍ ସେ ଅଟକିଗଲେ । ଯେଉଁଠି ସେ ଅଟକିଗଲେ, ସେଠି ସାମାନ୍ୟ ଅନ୍ଧାର । ଅର୍କେଷ୍ଟ୍ରାର ସ୍ୱର ସ୍ପଷ୍ଟ ଶୁଭୁଥାଏ । ସେ ଅଟକିଯାଇ ମୋତେ ଚାହିଁଲେ । ମୁଁ ଅଟକିଯାଇ ପାଚେରୀ କାନ୍ଥରେ ଲେଖା ହୋଇଥିବା ରାଜନୈତିକ ପାର୍ଟିର ସ୍ଲୋଗାନ ପଢ଼ିବାକୁ ଚେଷ୍ଟାକଲି ।

"ତୁମେ ମୋ ପିଛା କାହିଁକି କରୁଛ ?" ସେ ମୋ ନିକଟକୁ ଚାଲିଆସି ପ୍ରଶ୍ନକଲେ । ଠିକ୍ ଯେମିତି ଷ୍ଟଣ୍ଟ ଫିଲ୍ମର ନାୟିକା ନାୟକକୁ ପିଛା କରୁଥିବାର ଦେଖିଲେ ପ୍ରଶ୍ନକରେ ଏବଂ ମୁଁ ଗତ ସପ୍ତାହରେ ଦେଖିଥିବା ଏକ ଷ୍ଟଣ୍ଟ ଫିଲ୍ମର ଏଇପରି ଦୃଶ୍ୟରେ ନାୟକର ସଂଳାପକୁ ମନେ ପକାଇବା ପାଇଁ ଚେଷ୍ଟା କରୁଥିଲି ।

"ଉତ୍ତର ଦିଅ । ମୁଁ ଠିକ୍ ମାର୍କ କରିଛି । ତୁମେ ରାସ୍ତାରୁ ମୋ ପଛରେ ଲାଗିଛ । କାହିଁକି ?" ତାଙ୍କ ସ୍ୱର ଧୀରେ ଧୀରେ ଉତ୍ତେଜିତ ହୋଇ ଉଠୁଥିଲା ।

"ଏକ ପୁରୁଷ ନାରୀର ପିଛା କରେ କାହିଁକି ?" ମୁଁ ଅଣ୍ଡାରେ ହାତଦେଇ ଓଲଟି ପ୍ରଶ୍ନକଲି ।

ମୋର ଏ ପ୍ରକାର ପ୍ରଶ୍ନରେ ସେ ହଠାତ୍ ମୂକ ହୋଇଗଲେ । କିନ୍ତୁ ପରମୁହୂର୍ତ୍ତରେ ନିଜକୁ ସଂଯତ କରି ଦୃଢ଼ କଣ୍ଠରେ କହିଲେ—"ଜାଣିଛ...ମୁଁ ତୁମକୁ ପୋଲିସରେ ଦେଇପାରେ ।"

ମୁଁ ହସିବା ପାଇଁ ଚେଷ୍ଟାକଲି—"ହୁଁଃ ! ପୋଲିସ…!!" ମୁଁ ନିଜକୁ ବେପରୱା ଦେଖାଇବା ପାଇଁ ଚେଷ୍ଟା କରି ଚାଲିଥାଏ ଏବଂ ଏଇଟା ମୋତେ ଭଲ ମଧ୍ୟ ଲାଗୁଥାଏ । ଦେଖାଯାଉ କଅଣ ହେଉଛି ।

"ମୁଁ ସେମିତକା ଝିଅ ନୁହେଁ । ମୁଁ ଶିକ୍ଷିତା, ସଭ୍ୟା । ଯଦି ତୁମର ବିଶେଷ କିଛି ଅର୍ଥ ଥାଏ, ମୋତେ ପିଛା କରିବାର, ତେବେ ମିଷ୍ଟର ତୁମକୁ ନିରାଶ ହେବାକୁ ପଡ଼ିବ । ବରଂ ଭଲ ହେବ ସୋଜାସାଜି ଚାଲିଯାଅ ।" ସେ ବ୍ୟଙ୍ଗ କଲେ ।

ମୁଁ ଉତ୍ତ୍ୟକ୍ତ ହୋଇ ଉଠିଲି—"ଶିକ୍ଷା ! …ତୁମେ ଶିକ୍ଷିତା ! …କଅଣ ପଢ଼ିଛ ?"

"ମୁଁ ଗତ ମାସରେ ବି ଏ. ପାସ୍ କରିଛି ।"

"ହୁଁଃ !" ମୁଁ ପୁନର୍ବାର ଭିଡ଼ ଭିତରୁ ବାହାରି ଆସି ଏକ ମରୁଭୂମି ମଧ୍ୟରେ ଠିଆ ହେବାକୁ ବାଧହେଲି । ସେଇ ଏକାକୀତ୍ୱ, ସେଇ ସ୍ତବ୍ଧତା । ଚତୁର୍ଦ୍ଦିଗରେ କେହି ନାହାଁନ୍ତି । ଶିକ୍ଷା, ସଂସ୍କୃତି, ସଭ୍ୟତା କିଛି ନାହିଁ । ହରିଶ, ଶଙ୍କର କେହି ନାହାଁନ୍ତି । ମୁଁ ଯେପରି ସମସ୍ତଙ୍କ ପାଇଁ ସମ୍ପୂର୍ଣ୍ଣ ଅପରିଚିତ । ମୁଁ ଚପରାଶୀ ଅଥବା ଦରୱାନ ନିରଞ୍ଜନ ସାମନ୍ତ ନୁହେଁ । ଆଜି ଛୁଟି ଏବଂ ମୁଁ ଅନ୍ୟ ଏକ ନିରଞ୍ଜନ ସାମନ୍ତ, ଯିଏ ଏମ୍.ଏ. ପ୍ରଥମ ଶ୍ରେଣୀରେ ପାସ୍ କରିଛି । ମୁଁ ଉତ୍ତେଜିତ ହୋଇ ଉଠିଲି । ତାଙ୍କର ଦୁଇ ବାହୁ ଚାପିଧରି ପାଟିକଲି— "ମୋର ଜଣେ ବନ୍ଧୁ ବି.ଏ. ପାସ୍ କରି ସ୍କୁଟରୱାଲା ହୋଇ ଜଣେ ଏ ସହରରୁ ଅନ୍ୟ ସହରକୁ ନେଇ ଯାଉଛି । ଆଉ ଜଣେ ବନ୍ଧୁ ଲ' ପାସ୍ କରି ଏ ରାସ୍ତା ସହିତ ନିଜକୁ ମିଶାଇ ସଂଗ୍ରାମ କରି ପରାଜିତ ହୋଇ ଆଜି ଗାଁରେ ଲୁଚି ବସିଛି । ଶେଷକୁ ସେ କଅଣ କରିବ ଜାଣ ?" ମୁଁ ତାଙ୍କ ମୁହଁକୁ ଚାହିଁଲି । ସେ ସ୍ତବ୍ଧ ହୋଇ ଠିଆ ହୋଇଥାନ୍ତି । ମୋ ଛାତି ଭିତରେ ଯେପରି ଧୂଆଁ ହେଉଥିବା ଅଙ୍ଗାରଗୁଡ଼ାକ ହଠାତ୍ ଧପ୍ କରି ଜଳି ଉଠିଥାଏ । ମୁଁ ଯନ୍ତ୍ରଣାରେ ଚିତ୍କାର କରୁଥାଏ ।

"ହରିଶର ଭଉଣୀ ବିବାହ ପୂର୍ବରୁ ଗର୍ଭବତୀ ହୋଇ ଆତ୍ମହତ୍ୟା କଲା । କିଏ ତାକୁ ବଞ୍ଚେଇ ପାରିଲା ? କେହି ନୁହେଁ । ଆଜି ହରିଶ ନୀତିବାକ୍ୟ ଭୁଲି, ସଂଗ୍ରାମକୁ ଭୁଲି ଚୋରି କରିବ । ତା'ପରେ ଶିକ୍ଷାର ମୂଲ୍ୟ କଅଣ ରହିବ କୁହ ? ତୁମେ ବି.ଏ. ପାସ୍ କରି ନିଜକୁ ଶିକ୍ଷିତା କହୁଛ ! ମୋତେ ଦେଖ ମୁଁ ଏମ୍.ଏ. । ଏଇ ଦେଖ ମୋ ସାର୍ଟିଫିକେଟ ।"

ମୁଁ ତାଙ୍କ ବାହୁ ଛାଡ଼ି ବାଁ ପକେଟରୁ ମଇଳା କାଗଜଗୁଡ଼ାକ ତାଙ୍କ ଆଗରେ ଖୋଲିଦେଲି—"ଏଇ ଦେଖ ମୋ ସାର୍ଟିଫିକେଟ । ଏଇ ଦେଖ ଏମ୍ପ୍ଲୟମେଣ୍ଟ ଏକ୍‌ଚେଞ୍ଜରୁ ଆସିଥିବା ଇଣ୍ଟରଭ୍ୟୁ ଲେଟର ଏବଂ ଏଇ ଦେଖ ବିଭିନ୍ନ ଅଫିସରୁ ଆସିଥିବା ରିଗ୍ରେଟିଙ୍ଗ ଲେଟର···ଦେଖ । ଆଉ ମଧ୍ୟ ତୁମ ସାମ୍ନାରେ ଠିଆ ହୋଇଥିବା ଏଇ ଯୁବକ ଚପରାଶୀକୁ ଦେଖ ।" ମୁଁ ଗୋଟି ଗୋଟି କରି କାଗଜ ତାଙ୍କ ଆଖି ଆଗରେ ଖୋଲି ଦେଖାଇଲି ଏବଂ ଶେଷରେ ସେ ସବୁକୁ ମୋଡ଼ି ତାଙ୍କ ମୁହଁକୁ ଫୋପାଡ଼ି ଦେଲି । "ନିଅ ରଖ ଏସବୁ । ଏଇ କାଗଜମାନଙ୍କୁ ପକେଟରେ ରଖି ତୁମେ ଚିତ୍କାର କରି ସମସ୍ତଙ୍କୁ କୁହ ଯେ ତୁମେ ଶିକ୍ଷିତା···ତୁମେ ଶିକ୍ଷିତା ।"

ମୁଁ ହଠାତ୍ ଏତେଗୁଡ଼ାକ କଥା କହିସାରି, ନିଜ ଅନ୍ତର ମଧ୍ୟର ସମସ୍ତ ଉଦ୍‌ଗାରକୁ ପ୍ରକାଶ କରିଦେଇ, ଗ୍ରାମଫୋନରୁ ରେକ୍ର୍ଡ ସରିଗଲା ପରି ନୀରବ ହୋଇଗଲି । ସେ ମଧ୍ୟ କିଛି କହିଲେ ନାହିଁ । ବଲ୍‌ବଲ୍ କରି ମୋତେ ଚାହିଁଥିଲେ । ସେ ଯେମିତି କିଛି ବୁଝିପାରୁ ନ ଥିଲେ । ତାଙ୍କ ଶରୀର ସ୍ପର୍ଶ ପରେ ହଠାତ୍ ମୁଁ ଅନୁଭବ କଲି ଯେ ତାଙ୍କ ଶରୀରଟା ଭୀଷଣ କୋମଳ । ଇଚ୍ଛାହେଲା ସେଇ ଅନ୍ଧାର ଭିତରେ ତାଙ୍କ ବକ୍ଷରୁ ଶାଢ଼ୀ ଖସେଇ ଦେଇ, ବ୍ଲାଉଜର ବୋତାମଗୁଡ଼ାକ ଖୋଲିଦେଇ, ସେଇ ଅନ୍ଧାରରେ···ସେଇ ପାଚେରୀ କଡ଼ରେ···।

"କିନ୍ତୁ ତୁମେ ମୋଠାରୁ କଅଣ ଚାହୁଁ ?" ସେ ଦୀର୍ଘଶ୍ୱାସ ଛାଡ଼ି ପ୍ରଶ୍ନ କଲେ ।

"ଯାହା ଏକ ପୁରୁଷ ଏକ ନାରୀଠାରୁ ଚାହେଁ ।" ମୁଁ ସଂଯତ ହୋଇ ସହଜ ହୋଇ ଯାଇଥିଲି । ଏତେ ଭାବପ୍ରବଣତା ଭଲ ନୁହେଁ ।

"ତୁମେ ହୋଶରେ ଅଛ ତ ?" ସେ ରାଗିବାର ଛଳନା କଲେ ।

ମୁଁ ମିଛ କହି ତାଙ୍କ ଛଳନାକୁ କାଟି ଦେବାକୁ ଚେଷ୍ଟାକଲି—"ଆଉ ଛଳନା କାହିଁକି ? ମୁଁ ତୁମକୁ ଠିକ୍ ଚିହ୍ନିଛି ।"

ସେ ହଠାତ୍ ହସି ଉଠିଲେ—"ତାହାହେଲେ ଏତେ ଫର୍ମାଲିଟିର କଅଣ ଦରକାର ?" ତାଙ୍କର ସ୍ୱର ନିହାତ ବ୍ୟବସାୟିକ ହୋଇ ଉଠିଲା—"ପକେଟରେ କେତେ ଟଙ୍କା ଅଛି ?"

"ଚାରି ଟଙ୍କା ସତୁରି ପଇସା ।" ମୁଁ ହସିଲି ।

"ବାସ୍ ! ଏତିକ ନେଇ ତୁମେ ନାରୀଠାରୁ ନିଜର ପ୍ରାପ୍ୟ ନେବାପାଇଁ ଦାବି କରି ଆସୁଛ ? ମୋ ରେଟ୍ ଶହେଟଙ୍କା । ଗୋଟିଏ ଘର ରାତିଟି ପାଇଁ ଏବଂ ଗୋଟାଏ ବୋତଲ ମଦ । ଦେଇ ପାରିବ ଏତିକ ?" ସେ 'ବାରଗେନ୍' ଆରମ୍ଭ କରି ଦେଇଥିଲେ, ଏକ ପୁରୁଣା ବେପାରୀ ପରି ।

ଏବଂ ମୁଁ ଏକ ନୂଆ ଅନଭିଜ୍ଞ ଗ୍ରାହକ ପରି ହସି ଗୁଲି ଥିଲି—"ଏଇଟା କଅଣ ତୁମ ନାରୀତ୍ୱର ମୂଲ୍ୟ ?"

"ନା !···ମୋ ଶରୀରର ମୂଲ୍ୟ ।"

ମୁଁ ହସିଲି । ମୋ ହସର ପ୍ରତିଧ୍ୱନି ତାଙ୍କ ଉପରେ କିଛି ପ୍ରଭାବ ପକାଇ ପାରିଲା ନାହିଁ । ସେ କହିଲେ—"ଏଇଟା ମୋ 'ପ୍ରଫେସନ୍' । ମୁଁ ଶିକ୍ଷିତା । ମୋର ପରିବାର ଅଛନ୍ତି । ତାଙ୍କ ଖାଦ୍ୟ, ବସ୍ତ୍ର ପାଇଁ ଟଙ୍କା ଦରକାର, ମୋ ଶରୀର ପାଇଁ ସରଞ୍ଜାମ ଦରକାର ଏବଂ ମୋ ଯୌବନ ପାଇଁ ପୁରୁଷ ଦରକାର । ଟଙ୍କା ଆଣ । ମୋତେ ନିଜ ଘରକୁ ନେଇଗ୍ଲ । ମୋର ବିଶ୍ୱାସ ମୁଁ ତୁମକୁ ଖୁସ୍ କରିଦେବି । ଆଉ ଯଦି ଟଙ୍କା ନାହିଁ, ତେବେ ତୁମ ରାସ୍ତା ସେଇଟା ଏବଂ ମୋ ରାସ୍ତା ଏଇଟା । ରାତି ଅଧିକ ହେବା ପୂର୍ବରୁ ମୋତେ ମୋ ଲକ୍ଷ୍ୟ ଖୋଜି ନେବାକୁ ହେବ । ମୋ ପାଖେ ବିକିବା ପାଇଁ ମୋ ଦେହ·· ମୋ ଯୌବନ···କିଣିବ ?"

ତାଙ୍କ କଥା ଶୁଣି ଓ ଶରୀରକୁ ଛୁଇଁ ମୋ ଭିତରେ ଏକ ଶିହରଣ ଜାତ ହୋଇ ସାରିଥିଲା । ମୋ ପ୍ୟାଣ୍ଟ ଭିତରେ କିଛି ଗୋଟାଏ ମୁଣ୍ଡ ଉଠାଇବା ପାଇଁ ଚେଷ୍ଟା କରୁଥିଲା କୌଣସି ପ୍ରକାରର ବାଧା ନ ମାନି । ମୁଁ ତାଙ୍କୁ ନିଜ ନିକଟକୁ ଟାଣି ଆଣି କହିଲି, "ମୋ ପାଖରେ ଘର ତ ଅଛି, ହେଲେ ଟଙ୍କା ନାହିଁ । ନାରୀତ୍ୱର କୌଣସି ମୂଲ୍ୟ ନାହିଁ । ନାରୀର ଦେହ ବିକ୍ରୀ ପାଇଁ ନୁହେଁ । କିନ୍ତୁ ମୋର ବିଶ୍ୱାସ ମୁଁ ତୁମକୁ ଖୁସ କରିଦେବି ।"

ସେ ମୋ ନିକଟରୁ ଛଡ଼େଇ ହୋଇ ବ୍ୟଙ୍ଗ କଲେ, "ମୋର କିନ୍ତୁ ଟଙ୍କା ଦରକାର ।"

"ମୋର କେବଳ ତୁମେ ଦରକାର ।"

"ଭୁଲ୍ କଥା । ମୁଁ ନୁହେଁ···ମୋର ଏ ଶରୀର ।" ସେ ହସିଲେ ବ୍ୟଙ୍ଗରେ ।

ମୁଁ ଉତ୍ତେଜିତ ହୋଇ ପଡ଼ିଥିଲି । ପୁନର୍ବାର ମୋ ଚତୁର୍ଦ୍ଦିଗରୁ ସବୁ ଦୃଶ୍ୟ ଉଭେଇ ଯାଇଥିଲା । ମୁଁ ଠିଆ ହୋଇଥିଲି ଏବଂ ମୋ ଆଗରେ ସେ ଠିଆ ହୋଇଥିଲେ, ଚବିଶ ପଚିଶ ବର୍ଷର ଏକ ତରୁଣୀ ଯୌବନରେ ଭରପୂର । ମୋ ଆଖି ଆଗରେ ତାଙ୍କ ବକ୍ଷ, ନିତମ୍ବ, ଅଧର ଓ ସମ୍ପୂର୍ଣ୍ଣ ଶରୀର । ମୁଁ ତାଙ୍କୁ ଜାବୁଡ଼ି ଧରି ପକାଇଲି । ଗୁଣ୍ଡରେ ଭିଡ଼ି ଧରିଲି ।

"ମୋତେ ଛାଡ଼ । ନଚେତ୍ ମୁଁ ପାଟି କରିବି ।" ସେ ଅଣନିଃଶ୍ୱାସୀ ହୋଇ ପଡ଼ି ମୋତେ ଧମକ ଦେଲେ ।

ମୁଁ ରାଗିଗଲି । ତାଙ୍କୁ ଛାଡ଼ିଦେଇ ଡାହାଣ ପକେଟରୁ ଛୁରୀ ବାହାର କରି ଖୋଲି ତାଙ୍କ ବକ୍ଷରେ ଲଗାଇ ଦେଲି । ଅନ୍ଧାରରେ ଷ୍ଟିଲଟା ଚକ୍‌ଚକ୍ କରି ଉଠିଲା । ମୁଁ ଖଳନାୟକର ସ୍ୱରରେ କହିଲି, "ଏଥରକ ତୁମକୁ ଦୁଇଟି ଜିନିଷ ଭିତରୁ ଗୋଟିଏକୁ ବାଛି ନେବାକୁ ହେବ । ନିଜ ଜୀବନ··· ଅଥବା···।" କଥା ପୂର୍ଣ୍ଣ ନ କରି ମୁଁ ଟିକେ ଆଗକୁ ବଢ଼ିଗଲି, "ଟିକେ ବି ପାଟି କଲେ···ଏଇ ଛୁରୀଟା ··· ।"

କଥା ପୂର୍ଣ୍ଣ କରିବାପାଇଁ ଆଉ ଦରକାର ହେଲାନାହିଁ । ସେ ନୀରବ ହୋଇ ଯାଇଥିଲେ । ତାଙ୍କ ହାତ ଦୁଇଟି ଧିରେ ଧିରେ 'ସରଣ୍ଡର'ର ଭାବନେଇ ତଳକୁ ଖସି ପଡ଼ିଲା । ସେ ମୋ କାନ୍ଧରେ ହାତ ଥୋଇ ମୋତେ ପାଖକୁ ଟାଣିନେଲେ ଏବଂ ମୋତେ ଅନେଇ ହସିଦେଲେ ।



('କଥାକାର' ସେପ୍ଟେମ୍ବର ୧୯୭୩)

# ମନ୍ଦିର

ସେଦିନ କିଛି ଗୋଟାଏ ପର୍ବ ଥିଲା । ସନ୍ଧ୍ୟାରେ ଅନ୍ୟ ବନ୍ଧୁମାନେ ମନ୍ଦିର ଯାଇ ଦେବୀ ଦର୍ଶନ କରିବା ପ୍ରସ୍ତାବରୁ ମୁଁ ଜାଣି ପାରିଥିଲି ଯେ କୌଣସି ପର୍ବରେ ମନ୍ଦିର ଯିବାଟା କେତେ ପ୍ରୟୋଜନ । ମୁଁ ଈଶ୍ୱରଙ୍କୁ ବିଶ୍ୱାସ କରେ କି ନାହିଁ ତାହା ଭିନ୍ନ କଥା । କିନ୍ତୁ ଯେତେବେଳେ ସମାଜରେ ରହି ତା'ର ସମସ୍ତ ଦୋଷଗୁଣକୁ ମାନିନେବାକୁ ହେଉଛି, ସେତେବେଳେ ବନ୍ଧୁମାନଙ୍କ ସହ ମନ୍ଦିର ଯିବା ଦ୍ୱାରା ଲାଭ-କ୍ଷତିର ଯୁକ୍ତି ନ କରି, ମୌନ ରହି ନିଜ ସମ୍ମତି ଦେଇଥିଲି ଏବଂ ତା'ପରେ ଆମେ ଚାରିଜଣ ପଦବ୍ରଜରେ ମନ୍ଦିରକୁ ବାହାରିଥିଲୁ ।

ମନ୍ଦିର ମୁଁ ଏହା ପୂର୍ବରୁ ମଧ୍ୟ ଅନେକ ଥର ଯାଇଛି । ଯଥା—ପରୀକ୍ଷା ପୂର୍ବରୁ, ପରୀକ୍ଷା ପରେ, କୌଣସି ସମ୍ପର୍କୀୟଙ୍କ ଶରୀର ଅସୁସ୍ଥ ହେଲେ । କିନ୍ତୁ ତାହା ପଦବ୍ରଜରେ ନୁହେଁ କିମ୍ବା ଝାଳ ଏମିତି ସଡ଼କରେ ନୁହେଁ । ପଦବ୍ରଜରେ ଯିବାଟା ବୋଧହୁଏ ଏଇଟା ପ୍ରଥମ ।

ବର୍ଷାଟା କିଛିକ୍ଷଣ ପୂର୍ବେ ହୋଇଯାଇ ପାଗଟା ଏକ ଶାନ୍ତ କିଶୋରୀ ପରି ନମ୍ର ଥିଲା । ଆକାଶଟା ସନ୍ନିପାତ ରୋଗୀ ପରି କଳାବାଦର ଘୋଡ଼େଇ ହୋଇ ଶୋଇ ପଡ଼ିଥିଲା । ଆମେ ଚାରିଜଣ ଆଗେଇ ଚାଲିଥିଲୁ, ସହରର ବ୍ୟସ୍ତତାକୁ ଓଦା ପାଦର ଚିହ୍ନ ପରି ପଛରେ ଛାଡ଼ି । ପ୍ରଥମେ କିଛିକ୍ଷଣ ପାଇଁ ଅନ୍ୟ ତିନିଜଣଙ୍କ କଥାବାର୍ତ୍ତାରେ ଭାଗ ନେଇ ସିଗାରେଟର ଧୂଆଁକୁ ଫୁସ୍‌ଫୁସ୍ ମଧ୍ୟକୁ ଟାଣିନେଇ, ମୁଣ୍ଡର ଚିନ୍ତାକୁ ସିଗାରେଟର ପାଉଁଶ ପରି ଝାଡ଼ି ଝାଡ଼ି ଡାହାଣ ହାତରେ ଛତା ଧରି, ଲକ୍ଷ୍ୟ ଉଦ୍ଦେଶ୍ୟରେ ଆଗେଇ ଚାଲିଥିଲି । କିନ୍ତୁ ହଠାତ୍ ଏକ ଅବାଧ ଚିନ୍ତା ପରି ଜୋର କରି ସିଗାରେଟ ଫିଙ୍ଗିଲି ପରେ ପରେ ଅନଧିକାର ପ୍ରବେଶ କରିବାରୁ ମୁଁ ତିନିଜଣଙ୍କୁ ଆଗରେ ଛାଡ଼ି ଟିକେ ପଛେଇ ଗଲି ।

ସେମାନେ ପଛରେ ଛାଡ଼ି ଆସିଥିବା ସହର ଓ ଲକ୍ଷ୍ୟ ମନ୍ଦିର ମଧ୍ୟରେ ଥିବା ପ୍ରତ୍ୟେକ ବସ୍ତୁସହ ନିଜର ଅତୀତ ଓ, ବର୍ତ୍ତମାନକୁ ତୁଳନା କରି ଦେଖୁଥାଆନ୍ତି । ମୁଁ କିନ୍ତୁ ସେମାନଙ୍କ ସହ ନିଜକୁ ତୁଳନା କରି ଦେଖୁଥାଏ । ଆମେ ମନ୍ଦିର ଯାଉଥିଲୁ ଓ ଅନେକ ମନ୍ଦିରରୁ ଫେରୁଥିଲେ, ଯେପରି ପ୍ରତି ମୁହୂର୍ତ୍ତରେ ଅନେକ ଦୁନିଆଁକୁ ଆସୁଛନ୍ତି ଓ ଅନେକ ଦୁନିଆଁରୁ ଯାଉଛନ୍ତି ।

ସାହିତ୍ୟ, କଳା, ଦର୍ଶନ, ମନସ୍ତତ୍ତ୍ୱ, ରାଜନୀତି···ପ୍ରତ୍ୟେକ ବିଷୟରେ ସେମାନେ ଆଲୋଚନା କଲା ପରେ ମୁଁ ସମ୍ମୁଖକୁ ଲକ୍ଷ୍ୟ କରି ଦେଖିଲି ଯେ ମନ୍ଦିର ଆଉ ଅଧିକ ଦୂର ନାହିଁ । ସେମାନେ ମଧ୍ୟ ଲକ୍ଷ୍ୟକଲେ ଏବଂ ହଠାତ୍ ଗ୍ରାମଫୋନକୁ ଚାବି ସରିଗଲା ପରି ନୀରବ ହୋଇଗଲେ । ସତେ ଯେପରି ତାଙ୍କର ମସ୍ତିଷ୍କ ମଧ୍ୟରେ ଥିବା ଚିନ୍ତାଶକ୍ତି ମରିଗଲା । ବୋକାଙ୍କ ପରି ମନ୍ଦିରର ଚତୁର୍ଦ୍ଦିଗରେ ଜଳୁଥିବା ବିଭିନ୍ନ ରଙ୍ଗର 'ବଲ୍‌ବ'କୁ ଲକ୍ଷ୍ୟ କରି ରହିଲେ ।

ନିକଟରେ ପହଞ୍ଚିଲୁ । ଲାଉଡ଼ସ୍ପିକରରେ କଥାଚିତ୍ରର ଗୀତ···ଖୁବ୍ ଶ୍ରୁତି ମଧୁର । [ଯାହାହେଉ ଆଜିକାଲି ମନ୍ଦିର···ଦେବ ଦେବୀଙ୍କ ନିକଟରେ ମଧ୍ୟ ସିନେମା ସଙ୍ଗୀତ ବାଜି, ପ୍ରମାଣିତ କରି ଦେଉଛି ଯେ, ଭଗବାନ ମଧ୍ୟ ସିନେମା ସଙ୍ଗୀତ ପ୍ରିୟ । ହୁଏତ ନିଜ ଆସନରେ ବସି ମନେ ମନେ ସେ ଦୁଃଖ କରୁଥିବେ ବିଂଶ ଶତାବ୍ଦୀରେ ଅବତାର ନେବାପାଇଁ ସୁଯୋଗ ପାଇ ନ ଥିବା ଯୋଗୁଁ ।] କିଛିକ୍ଷଣ ଆମେ ସଙ୍ଗୀତ ଶୁଣିଲୁ ଏବଂ ତା'ପରେ ଗୋଡ଼ହାତ ଧୋଇ, ନିଜକୁ ପବିତ୍ର କରି ମନ୍ଦିର ମଧ୍ୟକୁ ପ୍ରବେଶ କଲୁ ।

ଭୀଷଣ ଭିଡ଼ । ସ୍ତ୍ରୀ ଓ ପୁରୁଷଙ୍କ ପାଇଁ ଭିନ୍ନ ପଥ । ଆମେ ଯେହେତୁ ପୁରୁଷ, ସେଥିପାଇଁ ପୁରୁଷମାନଙ୍କ ପାଇଁ ଉଦ୍ଦିଷ୍ଟ ପଥରେ ଯିବାକୁ ବାଧ୍ୟ ହୋଇ ଏକ ଲମ୍ବା 'କ୍ୟୁ'ରେ ଠିଆହେଲୁ । ଆମ ଡାହାଣ ପଟେ ନାରୀମାନେ ମଧ୍ୟ ଆମ ପରି 'କ୍ୟୁ'ରେ ଠିଆ ହୋଇଥାନ୍ତି । କିଛିକ୍ଷଣ ଅମାନିଆ ଚକ୍ଷୁଦ୍ୱୟ ଡାହାଣ ପଟକୁ ହିଁ ଲକ୍ଷ୍ୟ କରିବାକୁ ଇଚ୍ଛା ପ୍ରକାଶ କରିବାରୁ ମୁଁ ଅଧିକ ଜୋର ନ କରି ତାଙ୍କୁ ସୁଯୋଗ ଦେଲି ।

ମୋ ସମ୍ମୁଖରେ ଦୁଇଟି ଭଦ୍ରବ୍ୟକ୍ତି ଅପେକ୍ଷାଜନିତ ବିରକ୍ତିକୁ ଦୂର କରିବା ପାଇଁ କଥାବାର୍ତ୍ତା ଆରମ୍ଭ କରି ଦେଇଥାଆନ୍ତି ।

: ଆଉ ସବୁ ଠିକ୍ ତ ? କାରବାର କିପରି ଚାଲିଛି ?

: ଦେବୀଙ୍କ କୃପାରୁ ଏକ ପ୍ରକାର ଭଲ ।

: ହଁ ସେଇ ମା' ତ ଏକ ସାହା ଭରସା । ରଖିବେ ସେହି ମାରିବେ ସେହି ।

: ଯାହା କହିଲେ [ଦୀର୍ଘଶ୍ୱାସ]···ସେଥିପାଇଁ ଯିବିଛି ଏଥର ବ୍ୟବସାୟରେ କିଛି ଲାଭ ହେଲେ ଦଶ ପନ୍ଦର ହଜାର ଖର୍ଚ୍ଚ ହେଉ ପଛେ, ମନ୍ଦିର ଗୃହପଟେ କିଛି ଗୋଟାଏ ଢଆଣ କରିଦେବା ।

ହଠାତ୍ ଠେଲାପେଲା ଓ କୋଳାହଳ ମଧ୍ୟରେ ସବୁ ଶବ୍ଦ ମିଶି ଏକ ହୋଇଗଲା । ମଣିଷର ସ୍ରୋତ ଭିତର ଦେଇ କେତେବେଳେ ମନ୍ଦିର ଭିତରକୁ ଯାଇ ଫେରିଛି, ତାହା ମୋତେ ନିଜେ ଜଣାନାହିଁ । ଯେତେବେଳେ ଜ୍ଞାନ ପାଇଲି, ଦେଖିଲି ବନ୍ଧୁମାନଙ୍କ ନିକଟରେ ଠିଆ ହୋଇଛି ଏବଂ ସେମାନେ ମୋତେ ଲକ୍ଷ୍ୟକରି ହସୁଛନ୍ତି ।

ପୁନର୍ବାର ସେହି ପଥ । ମନ୍ଦିରରୁ କିଛି ଦୂରରେ ପଥ ମଧ୍ୟରେ ଏକ ଚୁନ୍ତିଶ୍ରୁ ପଡ଼ିଆ । ପ୍ରତି ରବିବାର ସେଠାରେ ବଜାର ବସେ । ସେଇଠି ବନ୍ଧୁମାନେ ସିଗାରେଟ ପାଇଁ ଅଟକିଗଲେ । ମୁଁ ଏକ ଆମ୍ବଗଛ ତଳେ ଠିଆ ହୋଇ ନିକଟରେ ଭୁକୁଥିବା ଦୁଇଟି ବୁଲା କୁକୁରଙ୍କୁ ଲକ୍ଷ୍ୟକଲି । ହଠାତ୍ ଏକ ସ୍ତ୍ରୀ କଣ୍ଠର ଚିତ୍କାର···। ଶବ୍ଦଟା ମୋ ପଛପଟୁ ଆସିଥିଲା । ବୁଲି ଲକ୍ଷ୍ୟକଲି । ଏକ ଭଙ୍ଗା କାଠ କେବିନ ଭିତରେ ଦୁଇଟି ଛାଇଆ । ପୁନର୍ବାର ସ୍ତ୍ରୀ କଣ୍ଠର ଚିତ୍କାର ଶୁଭିଲା···ପରେ ପରେ ପୁରୁଷ କଣ୍ଠ ।

: ମୁଁ କହୁଛି ଫେରି ନା···ମୋ କଥା ତ ଶୁଣିଲୁ ନାହିଁ···ଏଥର ?

: ସେ ପାଇଲା ଟଙ୍କା ନେଇ ମୁଁ ମୋ ପିଲାକୁ ଠିକ୍ କରିବି··· ? ମୋତେ କଅଣ କରି ପାଇଲୁ କି ? ମୁଁ ଭିକ ମାଗୁଛି କାରଣ ମୁଁ ପଙ୍ଗୁ । ହେଲେ ଚୋରି କରିବି···ନା···କେବେ ନୁହେଁ ।

: ତୁ ତ ରାସ୍ତାରୁ ପାଇଲୁ ।

: ରାସ୍ତାରୁ ପାଇଲି···ଆଉ ଚୋରି କଲି···ଫରକ୍‌ଟା କଅଣ ?

: ତାହାହେଲେ ପୁଅକୁ ଏମିତି ବିନା ଚିକିତ୍ସାରେ ମାରିଦେବୁ ?

: (ଦୀର୍ଘଶ୍ୱାସ) ସେଇ ଦେବୀ ମା' ହିଁ ମୋର ଭରସା । କିଏ ଅଛି ତାଙ୍କର । ଜନ୍ମ ଦେଇଛନ୍ତି ସେହି । ଯଦି ମାରିବାର ଥିବ, ତେବେ କିଏ ବଞ୍ଚେଇ ପାରିବ । ସେଇ ମା' ମୋର ଭରସା···ସେଇ ମା' । ତାଙ୍କ ବିନା ଆମର ଆଉ କିଏ ଅଛି କହିଲ··· ।

ଇଚ୍ଛାହେଲା ଦୌଡ଼ିଯାଇ ଭିକାରୀଟିର ସମ୍ମୁଖରେ ନଥାନତ କରି କହିବି, 'ତୁମେ ହିଁ ଈଶ୍ୱର ଏବଂ ଏହି ଭଙ୍ଗା କାଠ କେବିନ ହେଉଛି ପ୍ରକୃତ ମନ୍ଦିର । ପଥର ମୂର୍ତ୍ତି କେବେ ଭଗବାନ ହୋଇ ପାରିବ ନାହିଁ । ଯାହାର

ଅନୁଭବ କରିବାର ଶକ୍ତି ନାହିଁ, ସେ କେବେ ଈଶ୍ୱର ହୋଇପାରେ ନାହିଁ । ବସ୍ତୁ କେବେ ପବିତ୍ର ହୋଇପାରେ ନାହିଁ । ପବିତ୍ର ହୁଏ ମନୁଷ୍ୟ । ଭଗବାନ ହୁଏ ଏଇ ମଣିଷ । ତୁମକୁ ମୋର ନମସ୍କାର;' କିନ୍ତୁ ମୋର ନିକଟରେ ସତ୍‌ସାହସ ନ ଥିଲା । ମୁଁ ଆଜି ପର୍ଯ୍ୟନ୍ତ ଯେଉଁ ବନ୍ଧନ···ଯେଉଁ ପରିବେଶ··· ଯେଉଁ ବାତାବରଣ ମଧ୍ୟରେ ବଢ଼ି ଆସିଛୁ ସେହି ସମାଜ ମୋ ମନର ସମସ୍ତ ଚିନ୍ତା ଶକ୍ତିକୁ ସ୍ଥାଣୁ···ସ୍ଥିର କରିଦେଇଛୁ । ମୋତେ ନଂପୁଂସକ କରି ଦେଇଛୁ ଏବଂ ଗୃହଦଥା କଷେଇ ପରି ମୋତେ ଇଙ୍ଗିତରେ ନଚାଉଛୁ । ନିଜର ସମସ୍ତ ସ୍ୱାଧୀନତାକୁ ମୋ ନିକଟରୁ ଛଡ଼େଇ ନେଇ ମୋତେ ଧରେଇ ଦେଇଛୁ ଏକ ସଂସ୍କାର, ଯାହା ମୋ ରକ୍ତ ସହ ମିଶି ମୋତେ ପଙ୍ଗୁ କରି ଦେଇଛୁ । ମସ୍ତିଷ୍କ ଯାହା ଚିନ୍ତା କରୁଛୁ, ତାହା କାର୍ଯ୍ୟରେ ପରିଣତ କରିବାପାଇଁ ମୁଁ ଅସମର୍ଥ ।

ମନ୍ଦିର ମଧ୍ୟରେ ଯେଉଁ ଭଦ୍ରବ୍ୟକ୍ତିଦ୍ୱୟଙ୍କର କଥାବାର୍ତ୍ତା ମୁଁ ଶୁଣିଥିଲି, ତାହା ଯଦି ଶୁଣି ଥାଆନ୍ତି, ତେବେ ହୁଏତ ଏ ପ୍ରକାର ଚିନ୍ତା କରିବାପାଇଁ ମୁଁ ସମର୍ଥ ହୋଇପାରି ନ ଥାଆନ୍ତି । କିନ୍ତୁ ଏକ ପ୍ରସ୍ତର ମୂର୍ତ୍ତିକୁ ସଜେଇ ନିଜର ପ୍ରତ୍ୟେକ ପାପକୁ ଧୋଇବାପାଇଁ ଏକ ମାଧ୍ୟମ କରି, ମନୁଷ୍ୟତ୍ୱକୁ ଯେତେବେଳେ ବଳି ଦିଆଯାଉଛୁ, ସେତେବେଳେ ପଙ୍ଗୁ ଭିକାରି ପରି, ସେହି ମା' ଦେବୀ ହିଁ ମୋର ଭରସା କହିବା ବ୍ୟତୀତ ଅନନ୍ୟୋପାୟ କାହିଁ ?

ମଣିଷ, ମଣିଷକୁ କେବେ ଆଉ ଚିହ୍ନିବ ?

ବନ୍ଧୁମାନେ ଡାକିଲେ । ମୁଁ ଏକ ପୋଷା କୁକୁର ପରି ମାଲିକର ଡାକରେ ଚମକିପଡ଼ି, ଲାଞ୍ଜ ହଲେଇ ହଲେଇ, ଗତ ମୁହୂର୍ତ୍ତମାନଙ୍କରେ ଯାହା ଭାବିଥିଲି, ତାହା ଭୁଲି ତାଙ୍କ ନିକଟରେ ପହଞ୍ଚିଲି । ସେମାନେ ମୋତେ ସିଗାରେଟ୍ ଦେଲେ ।

ଆମକୁ ଅନେକ ପଥ ଯିବାକୁ ପଡ଼ିବ ସଭ୍ୟତାର ନଗରୀରେ ପହଞ୍ଚିବା ପାଇଁ । ତେଣୁ ଆମେ ପାଦର ଗତି ଦ୍ରୁତ କରିଦେଇ ଛତା ଖୋଲିଲୁ କାରଣ ପାଗଟା ବୟସ୍କା କୁମାରୀ କନ୍ୟା ପରି 'ହିଷ୍ଟିରିଆ' ରୋଗ ଦ୍ୱାରା ଆକ୍ରାନ୍ତ ହୋଇ ସାରିଥିଲା ଏବଂ ବର୍ଷାଟା ଆରମ୍ଭ ହୋଇଯାଇଥିଲା ।

ଭଙ୍ଗା କାଠ କେବିନରେ ପଙ୍ଗୁ ଭିକାରି ଝଞ୍ଜଣି ଦ୍ୱାରା ଭଜନ ଗାଉଥିଲା ଏବଂ ମନ୍ଦିରରୁ ସିନେମା ସଙ୍ଗୀତ ଲାଉଡ଼ସ୍ପିକର ଦ୍ୱାରା ଭାସି ଆସୁଥିଲା ।

ସ୍ୱଜନଙ୍କ ମଧ୍ୟରୁ କେବଳ ମୁଁ ମନ୍ଦିରରୁ ଫେରୁଥିଲି ।

# ଅନ୍ଧାର

ଠିକ୍ ଅପରାହ୍ଣ ଗୋଟାଏ ପନ୍ଦରରେ ସେ ମୋ ଦ୍ୱାର ନକ୍ କଲା । ସେତେବେଳେ ମୁଁ ପୋଷ୍ଟମ୍ୟାନର ଆଗମନକୁ ଆତୁର ହୋଇ ପ୍ରତୀକ୍ଷା କରିଥିଲି ।

ପୋଷ୍ଟମ୍ୟାନକୁ ମୁଁ ଦୀର୍ଘ ଦୁଇ ସପ୍ତାହ ଧରି ଅପେକ୍ଷା କରୁଥିଲି ଦୁଇଟି ଚିଠି ପାଇଁ । ପ୍ରତ୍ୟେକ ଦିନ ସେ ଆସୁଥିଲା ଏବଂ ମୋ ପଡ଼ୋଶୀମାନଙ୍କ ଦ୍ୱାର ନକ୍ କରୁଥିଲା । ଆଜି ଯେତେବେଳେ ପ୍ରଥମେ ମୋ ଦ୍ୱାର ନକ୍ ହେଲା, ମୁଁ ପୋଷ୍ଟମ୍ୟାନର ଉପସ୍ଥିତିକୁ ଏକାନ୍ତ କାମନା କରିଥିଲି । କିନ୍ତୁ ଦ୍ୱାର ଖୋଲି ମୋତେ ନିରାଶ ହେବାକୁ ପଡ଼ିଲା । କାରଣ ଶୁଭେନ୍ଦୁ, ମୋତେ 'ହାଲୋ' କହି ଘର ଭିତରକୁ ପଶି ଆସି ହସି ଉଠିଲା ।

ଗତ ଦୁଇ ମାସ ପୂର୍ବେ ଦୀର୍ଘ ଆଠ ମାସର ବେକାରୀ ଜୀବନର ଯବନିକା ପତନ ପାଇଁ ଏକ ପଦକ୍ଷେପ ସ୍ୱରୂପ ମୁଁ ଗୋଟାଏ ଇଣ୍ଟରଭ୍ୟୁ ଦେଇଥିଲି । ସେଭିଁଏ ଆଶ୍ୱାସନା ଦେଇଥିଲେ—"ଏଥର ନିଶ୍ଚୟ ଆବର୍ଜିବ ହୋଇଯିବ ।" ସେଇ ଇଣ୍ଟରଭ୍ୟୁର ଫଳାଫଳ ଅଥବା ଆପଏଣ୍ଟମେଣ୍ଟ ଲେଟରକୁ ମୁଁ ଉଦ୍‌ବିଗ୍ନ ହୋଇ ପ୍ରତୀକ୍ଷା କରିଥିଲି ।

ତରୁଲତାର ବିବାହ ପରେ ଅନେକ ଘଟଣା ମୋ ଜୀବନରେ ତଥା ତା' ଜୀବନରେ ଘଟି ସାରିଥିଲା । ମୁଁ ତାକୁ ଭୁଲ୍ ବୁଝିଥିଲି ଏବଂ ସେ ମୋତେ ଭୁଲ୍ ବୁଝିଥିଲା । ଏଇ ଭୁଲ୍ ବୁଝାମଣା ମଧ୍ୟରେ ମୁଁ ଅଶାନ୍ତ ହୋଇ ପଡ଼ିଥିଲି । ମୋ ଭିତରର ଆତ୍ମବିଶ୍ୱାସ, ଦମ୍ଭର ପାହାଡ଼ ଗୁଡ଼ାକ ଭାଙ୍ଗି ଚୁରମାର ହୋଇ ଯାଇଥିଲା । ମୁଁ ସବୁକିଛି ହରାଇ ନିଃସ୍ୱ ହୋଇ ଯାଇଥିଲି । ଏକ ସୁନ୍ଦର ଚିତ୍ର ଆଙ୍କି ତାକୁ ଧୋଇଦେଲା ପରି ମୋ ଆଖି ଆଗରୁ ଏକ ସୁନ୍ଦର ଘର, ଘର ସମ୍ମୁଖ ଉଦ୍ୟାନ ସବୁକିଛି ଉଭେଇ ଯାଇଥିଲା । ମୁଁ

ଚେଷ୍ଟା କରି ମଧ୍ୟ ତାକୁ ମନେ ପକାଇ ପାରୁ ନ ଥିଲି । ଅବଶେଷରେ ଏଇ ଭୁଲ୍ ବୁଝାମଣାର ଅବସାନ ଘଟାଇବା ପାଇଁ, ନିଜର ମାନସିକ ଶାନ୍ତି ପାଇଁ, ତା'ର ଭବିଷ୍ୟତ ଜୀବନକୁ ସୁଖମୟ କରିବା ପାଇଁ ମୁଁ ଏକ ନିଷ୍ପତ୍ତିରେ ଉପନୀତ ହୋଇ ତା' ନିକଟକୁ ତା'ର ମତାମତ ପାଇଁ ଏକ ଚିଠି ଲେଖିଥିଲି ପ୍ରାୟ ସପ୍ତାହକ ପୂର୍ବେ ଏବଂ ଉକ୍ତ ଚିଠିର ଉତ୍ତରକୁ ଅପେକ୍ଷା କରିଥିଲି ଉଦ୍‌ବିଗ୍ନ ମନରେ ।

ଶୁଭେନ୍ଦୁ ପହଞ୍ଚିବାର ପ୍ରାୟ ପନ୍ଦର ମିନିଟ୍ ଭିତରେ କଟକରୁ ଆସିଥିବା ଦୁଇଜଣ ବନ୍ଧୁଙ୍କ ସହ ସାକ୍ଷାତ କରିବା ଉଦ୍ଦେଶ୍ୟରେ ମୁଁ ତା' ସହିତ ବାଧ୍ୟ ହୋଇ ବାହାରି ପଡ଼ିଲି ।

"ସନ୍ଧ୍ୟା ସାତଟାରେ ବନ୍ଧୁ ମିଳନ ।" ଶୁଭେନ୍ଦୁ ପଛରୁ ଆସୁଥିବା ଦ୍ରୁତଗାମୀ ଟ୍ରକକୁ ସାଇଡ଼୍ ଦେଇ ମୋତେ କହିଲା ।

"ବନ୍ଧୁ ମିଳନ ପରେ ଡ୍ରିଙ୍କ କରିବା ।" ମୁଁ ପ୍ରଶ୍ନ କଲି ।

"ଟଙ୍କା ରଖିଛ ?"

ମୁଁ ହସିଲି । ସେ ମଧ୍ୟ ହସିଲା । ମୁଁ ହଠାତ୍ ଲକ୍ଷ୍ୟକଲି ଶୁଭେନ୍ଦୁ ସାମାନ୍ୟ ବଦଳି ଯାଇଛି । ମୁହଁରେ ଏକ ଅପରିଚିତ ବ୍ୟକ୍ତିତ୍ୱର ଭାବ । ମୁଁ ଆଶ୍ଚର୍ଯ୍ୟ ହେଲି ।

"ତୁମ ପରିବର୍ତ୍ତନ ମୁଁ ଲକ୍ଷ୍ୟ କରିପାରୁଛି ଶୁଭେନ୍ଦୁ । କଥା କଅଣ ?"

"ପରିବର୍ତ୍ତନ ସ୍ୱାଭାବିକ ।" ସେ ରାସ୍ତାକୁ ଲକ୍ଷ୍ୟକଲା ।

"ଅର୍ଥାତ୍ ?" ମୁଁ ତାକୁ ପ୍ରଶ୍ନ କଲି ।

ଇନ୍ଦିରା ଗତକାଲି ଜଣେ ଡାକ୍ତରକୁ ବିବାହ କରିଛି । ବ୍ଲଡ଼ି ଡକ୍ଟରସ୍... ଆଇ ହେଟ ଦେମ୍ । ତା' ବାପା କହିଲେ—"ମୋ ଝିଅ କେବଳ ଜଣେ ଡାକ୍ତରକୁ ହିଁ ବିବାହ କରିପାରିବ ଏବଂ ମୁଁ ଡାକ୍ତର ନୁହେଁ । ମୁଁ ଡାକ୍ତର କାହିଁକି ନୁହେଁ ?" ଶୁଭେନ୍ଦୁ ଆବ୍‌ନରମାଲ ହୋଇ ଯାଇଥିଲା ।

ମୁଁ ଦେଖୁଥିଲି ତା' ମୋ ମଧ୍ୟର ପାର୍ଥକ୍ୟକୁ । କାହିଁ କିଛି ନାହିଁ ତ ? ସାମାନ୍ୟ ଟିକେ ବି ପାର୍ଥକ୍ୟ ନାହିଁ । ସେ ଡାକ୍ତରମାନଙ୍କୁ ଘୃଣା କରେ, ଈର୍ଷା କରେ, କାରଣ ସେ ନିଜେ ଡାକ୍ତର ହୋଇ ପାରିଲା ନାହିଁ ଏବଂ ମୁଁ ଇଞ୍ଜିନିୟରମାନଙ୍କୁ ଘୃଣାକରେ, କାରଣ ତରୁଲତାର ସ୍ୱାମୀ ଜଣେ ଇଞ୍ଜିନିୟର ।

ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲା ପର୍ଯ୍ୟନ୍ତ ଆମେ ଦୁହେଁ ନୀରବ ଥିଲୁ । ଶୁଭେନ୍ଦୁ ନିଜ କଥା ଭାବୁଥିଲା ଏବଂ ମୁଁ ନିଜ କଥା ଭାବୁଥିଲି । ଏମିତି ଅନେକ

ଥର ହୁଏ । ବନ୍ଧୁମାନଙ୍କ ଗହଣରେ ମଧ୍ୟ ମୁଁ ହଠାତ୍ ଏକାକୀ ହୋଇପଡ଼େ ଏବଂ ସେତେବେଳେ ମୁଁ ଅତି ନିବିଡ଼ ଭାବେ ସେଇ ଏକାକୀତ୍ୱକୁ ଅନୁଭବ କରେ । ଖୋଜେ ଏକ ମାଧ୍ୟମ ଯଦ୍ୱାରା ମୁଁ ନିଜ ମନର କଥାକୁ ସ୍ପଷ୍ଟ ଭାବେ ପ୍ରକାଶ କରି ପାରିବି । ହେଲେ ଖୋଜି ଖୋଜି କ୍ଲାନ୍ତ ହୋଇ ଦେଖେ, ସମସ୍ତେ ମୋ ପରି । ପ୍ରତ୍ୟେକଙ୍କ ଅନ୍ତର ମଧ୍ୟରେ ସେଇ ଏକା ଦୁଃଖ···ଏକା ପ୍ରକାର ବେଦନା । ସମସ୍ତେ ନିଜ କଥା କହିବା ପାଇଁ ବ୍ୟଗ୍ର । ସଭିଏଁ ମାଧ୍ୟମ ଅନ୍ୱେଷଣରେ ବ୍ରତୀ ।

ଭିନ୍ନ ଭିନ୍ନ ଶରୀରରୂପୀ ପୋଷାକ ପିନ୍ଧି ଆମେ କେବଳ ଅଭିନୟ ଯାହା କରି ଚାଲିଛେ ବଞ୍ଚିବାର । କିନ୍ତୁ ସତ କହିବାକୁ ଗଲେ ବିଗତ ଶତାବ୍ଦୀ ଶତାବ୍ଦୀ ପୂର୍ବରୁ ଆମେ ମରି ସାରିଛେ । ଏବେ ଖାଲି ଏକ ଅନୁଭବହୀନ ଜୋକର ପରି ଧୂଳିଆଁର ମଞ୍ଚରେ ରଙ୍ଗ ବୋଳି ଆମେ ହସିବାର ଅଭିନୟ କରୁଛେଁ, କାନ୍ଦିବାର ଅଭିନୟ କରୁଛେଁ ଏବଂ ସୁଖି ଥିବାର ଛଳନା କରି ନିଜକୁ ଠକିବାର ଚେଷ୍ଟା କରୁଛେ ।

"ଆମେ କାହିଁକି ବଞ୍ଚିଛେଁ କହି ପାରିବ ?" ଶୁଭେନ୍ଦୁ ହୋଟେଲ ଭିତରକୁ ପ୍ରବେଶ କରିବା ପୂର୍ବରୁ ଭାରି ଗଳାରେ ମୋତେ ପ୍ରଶ୍ନକଲା ।

"ହୁଏତ ଭବିଷ୍ୟତ ପାଇଁ ?" ମୁଁ ତାକୁ ସାନ୍ତ୍ୱନା ଦେବାକୁ ଚେଷ୍ଟାକଲି ।

"ହୁଃ ! ଭବିଷ୍ୟତ···! ଆମର ଭବିଷ୍ୟତ କଅଣ ତା' ତୁମେ ଜାଣିପାରୁନ ?" ସେ ମୋତେ ଲକ୍ଷ୍ୟକଲା । ମୁଁ କିଛି ନ କହି ତାକୁ ଅନୁସରଣ କଲି ।



କଟକରୁ ଆସିଥିବା ବନ୍ଧୁମାନେ ଆମର ପ୍ରତୀକ୍ଷାରେ ଅଧିର ହୋଇ ଉଠିଥାନ୍ତି, ଆମେ ପହଞ୍ଚିଲା ବେଳକୁ । ପ୍ରଥମେ କେତେକ ସମ୍ଭାଷଣର ଶବ୍ଦ ଏବଂ ତା'ପରେ ଟେବୁଲ ଘେରିପଟେ ବସି ଅଯଥା ଓ ଅଦରକାରୀ କେତେକ ଅଟ୍ଟହାସ୍ୟ । ମୁଁ ସିଗାରେଟ ବାହାର କଲି । ଅଭିରାମ ପ୍ୟାକେଟରୁ ଖଣ୍ଡେ ସିଗାରେଟ ଟାଣିନେଇ କହିଲେ—"ଶ୍ରିଜେଣ୍ଡ ! ମୁଁ ଆଗେ ଏଇଆକୁ ସ୍ମୋକ କରୁଥିଲି । ଏବେ ଏହାର ଦାମ କେତେ ?"

"ପଚିଶ ପଇସା ।"

"ଏହାର ଦାମ ଊଣେଇଶହ ଚଉଷଠିରେ ବାର ପଇସା ଥିଲା । ଦାମ କେତେ ବଢ଼ି ଯାଉଛି ଦେଖୁଛ ?" ସେ ସିଗାରେଟରେ ଅଗ୍ନି ସଂଯୋଗ କଲେ ।

"ଊଣେଇଶହ ଚଉଷଠିରେ ସୁନା ଭରି ଶହେ କୋଡ଼ିଏ ଟଙ୍କା ଥିଲା । ଏବେ କିନ୍ତୁ ପାଞ୍ଚଶହ ଟଙ୍କା । ଊଣେଇଶହ ଚଉଷଠିରେ ଲୋକମାନେ ଖାଇବାକୁ ପାଉଥିଲେ । ବର୍ତ୍ତମାନ ଭୋକରେ ମରୁଛନ୍ତି ।"

"ପ୍ରୋବଲେମ ବିଷୟରେ ଆମେ ଯଥେଷ୍ଟ ସଚେତନ । କିନ୍ତୁ ସଲୁସନ୍...।"

"ତା'ରି ପ୍ରତିବାଦ ସ୍ୱରୂପ ତ ଅମନ୍ତା କାଲି ସମ୍ବଲପୁର ବନ୍ଦ ପାଳନ କରାଯାଉଛି ।"

"ଦିନେ କଟକ ବନ୍ଦ ବା ସମ୍ବଲପୁର ବନ୍ଦ ହେଲେ ଲାଭ କିଛିନାହିଁ । ଓଲଟା ଖଟିଖିଆମାନେ ଭୋକରେ ମରିବେ ।"

"ସବୁଦିନେ ତ ଭୋକରେ ମରୁଛନ୍ତି । ଦାମ୍ ଯାହା ବଢ଼ି ଯାଇଛି ପେଟପୁରି ସେମାନେ କେବେ ଖାଇବାକୁ ପାଉ ନ ଥିବେ । ଦିନେ ପ୍ରତିବାଦ ସ୍ୱରୂପ ଭୋକ ସହିଯାନ୍ତୁ । କ୍ଷତି କଅଣ...?"

"ଅଯଥା କଥା...ଏ ସବୁରେ ଲାଭ କିଛି ହେବନାହିଁ ।"

"ତେବେ ?"

"ବିପ୍ଳବ ଦରକାର...ସମ୍ପୂର୍ଣ୍ଣ ବିପ୍ଳବ ।"

"ତୁମେ ତାହାହେଲେ କମ୍ୟୁନିଜିମରେ ବିଶ୍ୱାସ କର ?"

"ମୁଁ କୌଣସି ଇଜ୍‌ମରେ ବିଶ୍ୱାସ କରେନାହିଁ ।"

"ତେବେ ?"

"ତୁମେ ବିପ୍ଳବ କହିଲେ କେବଳ କମ୍ୟୁନିଜିମ୍ ଉପରେ କାହିଁକି ଷ୍ଟ୍ରେସ ଦେଉଛ ? ବିପ୍ଳବ ପାଇଁ କେବଳ କମ୍ୟୁନିଜିମ୍ କେବେ ରେସ୍‌ପନସିବଲ୍ ନୁହେଁ । ଇତିହାସ ସାକ୍ଷୀ ।"

ତା'ପରେ ଏକ କ୍ଷୁବ୍ଧ ବାତାବରଣ ମଧ୍ୟରେ ଆରମ୍ଭ ହେଲା ଯୁକ୍ତିତର୍କ । ମୁଁ ନିଜକୁ ନିର୍ଲିପ୍ତ ରଖିବା ପାଇଁ ଚେଷ୍ଟାକଲି । ବନ୍ଧୁମାନେ ଯୁକ୍ତିତର୍କର ପରିଧି ଧିରେ ଧିରେ ସଂକୀର୍ଣ୍ଣ କରି ବ୍ୟକ୍ତିଗତ ଜୀବନକୁ ଆକ୍ଷେପ କରୁଥାନ୍ତି ପରସ୍ପରର । ସେମାନେ ରାଗି ଯାଇଥିଲେ ନିଶ୍ଚୟ ।

ସମ୍ମୁଖ ସିନେମା ହଲ୍ ଭିତରକୁ ଦୁଇଟି ତରୁଣୀ ରେକ୍‌ସାରେ ଗଲା ପରେ ମୁଁ ଶୁଭେନ୍ଦୁକୁ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଚାହିଁଲି । ସେ ହସିଲା ଏବଂ ଆମେ

ଭ୍ରୁକୁଟିରେ ହଲ୍ ଭିତରକୁ ଗ୍ଭଲିଗଲୁ । ତରୁଣୀ ଦୁଇଟି ରେକ୍‌ସାବାଲାଙ୍କୁ ପଇସା ଦେଉଥାନ୍ତି ।

"ଓଃ ! ବୋରିଙ୍ଗ ।" ଶୁଭେନ୍ଦୁ ମନ୍ତବ୍ୟ ପ୍ରକାଶ କଲା ।

"ବଟ୍ ଗ୍ଭରମିଙ୍ଗ ।" ମୁଁ ମୋ ମତ ଦେଲି ।

ଆମେ ଫେରିଲା ବେଳକୁ ଆଲୋଚନାର ଧାରା ପରିବର୍ତ୍ତିତ ହୋଇ ଯାଇଥିଲା ଏବଂ ବୟୋଜ୍ୟେଷ୍ଠ ଅଭିରାମ ବାବୁ ନିଜ ଅତୀତ ଜୀବନର ଅନୁଭୂତି ଶୁଣାଉଥିଲେ—"ଆମେ କଲେଜରେ ପଢ଼ିଲାବେଳେ ଝିଅମାନଙ୍କୁ..."

ଏବଂ ପ୍ରତ୍ୟେକ ନୀରବ ରହି ତାଙ୍କ କଥା ଶୁଣୁଥାନ୍ତି । ଝିଅମାନଙ୍କ କଥା ପଡ଼ିଲେ ସବୁ ନୂଆ ତର୍କ, ଆଲୋଚନା ବନ୍ଦ ହୋଇଯିବାଟା ନିତାନ୍ତ ସ୍ୱାଭାବିକ ।

× × ×

ଆମେ ଛଅଜଣ ଥିଲୁ । ମୁଁ, ଶୁଭେନ୍ଦୁ, ଗୋବର୍ଦ୍ଧନ, ସତ୍ୟ, ପ୍ରସନ୍ନ ଓ ଅଭିରାମ ବାବୁ । ପ୍ରସନ୍ନ ମୋ ହାତକୁ ଚିପିଧରି ଠିଆ ହୋଇଗଲା । ଅନ୍ୟ ଗ୍ଭରିଜଣ ଆମକୁ ବାଏ କରି ଆଗକୁ ଗ୍ଭଲିଗଲା ପରେ ଆମେ ଧୀର ପଦକ୍ଷେପରେ ଗ୍ଭଲିବା ଆରମ୍ଭ କଲୁ ।

"ତୋ ସହିତ ଅନେକ ବ୍ୟକ୍ତିଗତ କଥା ଅଛି ।" ପ୍ରସନ୍ନ ମୋତେ ଅନେଇ ହସିଲା ।

ମୁଁ ଜାଣିପାରିଲି ସେ କଅଣ କହିବ । ତେଣୁ ନିର୍ବିକାର ହେବାକୁ ଯଥାସାଧ୍ୟ ଚେଷ୍ଟାକଲି ।

"ମାନସିକ କେମିତି ଅଛୁ ?" ସେ ପ୍ରଶ୍ନକଲା ।

"କେମିତି ଦେଖୁଛୁ ?" ମୁଁ ତାକୁ ତୀକ୍ଷ୍ଣ ଦୃଷ୍ଟିରେ ଗ୍ଭହିଁଲି ।

"ଶୁଣିଥିଲି ତରୁଲତାର ବିବାହ ପରେ ତୁ ଏକରକମ...।" ସେ କଥା ପୂର୍ଣ୍ଣ ନ କରି ମୋତେ ପରଖିବାକୁ ଚେଷ୍ଟାକଲା ।

"କୌଣସି ଯୁବତୀକୁ ଭଲ ପାଇ, ତା' ପାଇଁ ପାଗଳ ହେବାକୁ ମୁଁ ଘୃଣାକରେ ପ୍ରସନ୍ନ । ଆମେ ଏକ ମାଟେରିଆଲ୍‌ଷ୍ଟିକ୍ ପୃଥିବୀରେ ବଞ୍ଚୁଛେ । ଆମକୁ ମାଟିରିଅଲ୍‌ଷ୍ଟିକ୍ ହେବାକୁ ପଡ଼ିବ । ଏତେଟା ଇମୋସ୍‌ନାଲ ନୁହେଁ, ଯେତେଟା ଆମେ କୌଣସି ଉପନ୍ୟାସରେ ପଢ଼ୁଁ ଅଥବା ଫିଲ୍‌ମରେ ଦେଖୁଁ ।" ମୁଁ ନିଜ ଭାବନା ଓ ଅନ୍ତବ୍ୟଥା ଉପରେ ଏକ ଆବରଣ ଦେଇ ପ୍ରସନ୍ନ ଦୃଷ୍ଟିରୁ ନିଜ ଅନୁଭୂତିକୁ ଲୁଚେଇ ରଖିବା ପାଇଁ ଚେଷ୍ଟାକଲି ।

"ମୁଁ ସନ୍ତୁଷ୍ଟ । ତୋ ବିଷୟରେ ଶୁଣି ମୁଁ ବ୍ୟାକୁଳ ହୋଇ ଉଠିଥିଲି । ପ୍ରକୃତରେ ତୁ ନିଜକୁ ଆୟତ୍ତ କରିପାରି ଥିବାରୁ ମୁଁ ତୋତେ ଅଭିନନ୍ଦନ ଜଣାଉଛି । ପ୍ରେମ ବା ବିଚ୍ଛେଦ ଆମ ପାଇଁ ଜୀବନର ଏକମାତ୍ର ଲକ୍ଷ୍ୟ ନୁହେଁ । ଆମକୁ ଆହୁରି ଅନେକ ଲମ୍ବା ପଥ ଅତିକ୍ରମ କରି ଲକ୍ଷ୍ୟରେ ପହଞ୍ଚିବାକୁ ପଡ଼ିବ ।" ପ୍ରସନ୍ନ ନିଜ ଆଦର୍ଶକୁ ବିଶ୍ଳେଷଣ କରିବା ଆରମ୍ଭ କରି ଦେଇଥିଲା ।

ମୁଁ ଆମ ସମ୍ମୁଖରେ ଯାଉଥିବା ବନ୍ଧୁମାନଙ୍କୁ ଲକ୍ଷ୍ୟକଲି । ସେମାନେ ଆଲୋଚନାରେ ମଗ୍ନରହି ଆମ ଉପସ୍ଥିତି ସମ୍ପୂର୍ଣ୍ଣ ଭୁଲି ଯାଇଥାନ୍ତି । ପ୍ରସନ୍ନ ମୋ କାନ୍ଧରେ ହାତରଖି ପ୍ରଶ୍ନକଲା—"ଏସବୁ କେମିତି ହେଲା ?"

ମୁଁ ଦୀର୍ଘଶ୍ୱାସ ତ୍ୟାଗ କଲି । "ବାସ୍ ହୋଇଗଲା ।" ନିଜ ଡାହାଣ ହାତର ପାପୁଲି ତା' ଆଖି ଆଗରେ ରଖି କହିଲି—"ଏ ହାତରେ ରେଖା ନାହିଁ ପ୍ରସନ୍ନ । ତେଣୁ ଯେତେ ଚେଷ୍ଟା କଲେ ମଧ୍ୟ ମୁଁ ସଫଳ ହୋଇ ପାରିଲି ନାହିଁ । ଭାଗ୍ୟ ମୋତେ ପରାଜିତ କରିଦେଲା ।"

ପ୍ରସନ୍ନ ରାଗିଗଲା···"ୟୁ ଫୁଲ୍ ତୁ ଭାଗ୍ୟରେ ବିଶ୍ୱାସ କରୁଛୁ ?"

"ବାଧ୍ୟ ହେଉଛି । ପୂର୍ବେ ଈଶ୍ୱର କିମ୍ବା ଭାଗ୍ୟ କାହା ଉପରେ ବିଶ୍ୱାସ କରୁ ନ ଥିଲି । କିନ୍ତୁ ବର୍ତ୍ତମାନ କରିବାକୁ ବାଧ୍ୟ ହେଉଛି । ଅନୁଭୂତ ବଡ଼କଥା ପ୍ରସନ୍ନ ।" ମୁଁ ଅତୀତର ଅଧ୍ୟାୟ ସ୍ମରଣ କରି ଅସଂଯତ ହୋଇ ଉଠିଲି । ତରୁଲତା ପାଇଁ ନେଇଥିବା ପ୍ରତ୍ୟେକ ପଦକ୍ଷେପ ମୋର ଗୋଟି ଗୋଟି ହୋଇ ମନେ ପଡ଼ିଲା । ମନେ ପଡ଼ିଲା ଯେ ସେ ମୋତେ ପ୍ରତାରିତ କରିଛି ଅତି ନିଷ୍ଠୁର ଭାବରେ ।

"ବିବାହ ପରେ ତୁ ତା' ସ୍ୱାମୀ ନିକଟକୁ ଚିଠି ଦେଇଥିଲୁ ?" ପ୍ରସନ୍ନ ପ୍ରଶ୍ନ କଲା ।

"ହଁ ! ମୁଁ ତା' ଭବିଷ୍ୟତ ନଷ୍ଟ କରି ଦେବାକୁ ଚାହୁଁଥିଲି ।" ମୁଁ ଉତ୍ତେଜିତ ହୋଇ ଉଠିଥିଲି । ସେ ଯେ ପରିସ୍ଥିତିର ଚାପରେ ପଡ଼ି ବିବାହ କରିଛି ତା' ଜାଣିଥିବା ସତ୍ତ୍ୱେ ମୁଁ ଉତ୍ତେଜିତ ହୋଇ ଉଠିଲି । ପୁନର୍ବାର ତା' ବୈବାହିକ ଜୀବନକୁ ନଷ୍ଟ କରିଦେବାକୁ ଚିନ୍ତାକଲି ଏବଂ ସପ୍ତାହିକ ପୂର୍ବେ ଏ ସମସ୍ତ ଭୁଲ୍ ବୁଝାମଣାର ଅବସାନ ପାଇଁ ତା' ନିକଟକୁ ଲେଖିଥିବା ଚିଠି କଥା ମଧ୍ୟ ଭୁଲିଗଲି । ପ୍ରକୃତରେ ଉତ୍ତେଜନାର ଏକ ଦୁର୍ବଳ ମୁହୂର୍ତ୍ତରେ, ପୂର୍ବର ପ୍ରତିଜ୍ଞା, ଶପଥ କିଛି ମନେପଡ଼େ ନାହିଁ ।

ପ୍ରସନ୍ନ ଦୀର୍ଘଶ୍ୱାସ ତ୍ୟାଗ କରି ମୋତେ ଅନେଇ ହସିଲା, "ତୁ ଗର୍ମ୍ମିରେ ହୋଇଗଲୁ ଯେ ! ଆରେ ଭାଇ ଏଇଟା ହିଁ ଜୀବନ । ଦସ୍ ଇଜ ଲାଇଫ । ଏହା ବିନା ଆମେ ବଞ୍ଚି ପାରିବା ନାହିଁ । ଆମ ଜୀବନରେ ଫଷ୍ଟ୍ରେସନ ବଡ଼କଥା । ଫଷ୍ଟ୍ରେସନ ନ ଆସିଲେ ଅନୁଭୂତ ଆସିବ କୁଆଡ଼ୁ ?"

"ଆମେ କୁଆଡ଼େ ଯାଉଛେଁ ?" ମୁଁ ପ୍ରସନ୍ନକୁ ପ୍ରଶ୍ନ କଲି ନିଜକୁ ସଂଯତ କରି ।

"ଜେଲ୍‌କୁ । ଈଶ୍ୱର ସହିତ ସାକ୍ଷାତ ପାଇଁ ।"

ଈଶ୍ୱର··· । ଫ୍ରାଙ୍କ · ବୋଲଡ଼୍ ଏବଂ ସ୍ମାର୍ଟ ୟଙ୍ଗ ମ୍ୟାନ—ତା' ପ୍ରତି ଜଣେ ବନ୍ଧୁଙ୍କ ମନ୍ତବ୍ୟ । ହାଜତର ଲୁହା ଜାଲି ଭିତରୁ ସେ ଉର୍ଦ୍ଧ୍ୱମାନ ଆମକୁ ଦେଖୁଥିଲା । ଶେଡ଼୍ ବାହାରେ ଭୀଷଣ ବର୍ଷା । ଆମ ନିକଟରେ ବର୍ଷାରୁ ରକ୍ଷା ପାଇବାପାଇଁ ଗାଈ ଓ ବାଛୁରି ତଥା ଭିକାରିମାନେ ଆଶ୍ରୟ ନେଇଥିଲେ । ଈଶ୍ୱର, ଅଭିରାମ ବାବୁ, ପ୍ରସନ୍ନ ଓ ଗୋବର୍ଦ୍ଧନଙ୍କ ସହିତ ଆଲୋଚନା କରୁଥିଲା ଏବଂ ମୁଁ ସତ୍ୟ ଓ ଶୁଭେନ୍ଦୁ ସାମ୍ନାରେ 'ସର୍ଦ୍ଦାରଜୀ' ଜୋକ୍‌ସ ଆରମ୍ଭ କରି ଦେଇଥିଲି ।

ଈଶ୍ୱର ମୋତେ ସମ୍ମାନ କରେ । ମୁଁ ତାକୁ ଭଲପାଏ । ତା'ର ବ୍ୟବହାର ମୋତେ ମୁଗ୍‌ଧ କରେ । ଶୁଣିଥିଲି ଗାଁ ଲୋକମାନଙ୍କୁ ଭୋକରୁ ରକ୍ଷା କରିବାପାଇଁ ମାରୱାଡ଼ି ଗୃହଲ ବାଲାର ଦୁଇଟି ଟ୍ରକ ଲୁଟ୍ କରି ସେମାନଙ୍କ ମଧ୍ୟରେ ବାଣ୍ଟି ଦେଇଥିବା ଯୋଗୁଁ ଆଇନ ଆଖିରେ ସେ ଅପରାଧୀ । ତା'ର କୋର୍ଟରେ ବିଚାର ହେବ ଏବଂ ତାକୁ ଶାସ୍ତି ଦିଆଯିବ ।

କ୍ଷୁଧାର୍ତ୍ତ ଗ୍ରାମବାସୀଙ୍କୁ ଖାଦ୍ୟ ଦେବା ଅପରାଧରେ ତାକୁ ଶାସ୍ତି ଭୋଗିବାକୁ ହେବ । ଏଇଟା ଆମର ଆଇନ । ମୁଁ ମନେ ମନେ ବିସ୍ମିତ ହେଲି । ବର୍ଷା ପୂର୍ବପରି ହେଉଥାଏ ।

"ଦାଦା ନମସ୍କାର ।" ଈଶ୍ୱର ମୋତେ ଦେଖିପାରି ଭିତରୁ ହାତ ହଲାଇଲା ।

"କେମିତି ଅଛ ?" ମୁଁ ହସିଲି ।

"ଜେଲ ଭିତରେ ଭୀଷଣ ହୋମୋ ।" ସେ ଜୋରରେ କହିଲା । ଜେଲର ବୁଲି ଆମକୁ ଲକ୍ଷ୍ୟକଲେ । ଆମେ ଏକାସଙ୍ଗେ ହସି ଉଠିଲୁ ।

ବନ୍ଧୁ ମିଳନର ଆସର ଜମି ଉଠିଥିଲା । ମୋ ଚତୁର୍ଦ୍ଦିଗରେ ଗୋଲ ଟେବୁଲକୁ ଘେରି ବସିଥିଲେ ବନ୍ଧୁମାନେ । ସମସ୍ତେ ଉଚ୍ଚ ସ୍ୱରରେ ହସୁଥିଲେ, ଚିତ୍କାର କରୁଥିଲେ । ସେମାନଙ୍କ ମୁହଁ ଓ ଚିତ୍କାରକୁ ଦେଖି ମୋର ମନେ-ହେଲା ସେମାନେ ଯେମିତି କେବଳ କିଛୁ କହିବାପାଇଁ ପାଟିଟାକୁ ଆଁ କରି ଚିତ୍କାର କରୁଛନ୍ତି । କୌଣସି ଶବ୍ଦ ଜଣା ପଡ଼ୁନାହିଁ । କୌଣସି ଅର୍ଥ ମଧ୍ୟ ନାହିଁ । କେବଳ ଏକ ଚିତ୍କାର, ଉକ୍ତ କକ୍ଷର ଚତୁର୍ଦ୍ଦିଗରେ ପ୍ରତିଧ୍ୱନିତ ହୋଇ ଶୂନ୍ୟରେ ମିଳାଇ ଯାଉଛି ଏବଂ ସେଇ ଶୂନ୍ୟତା ମଧ୍ୟରେ ମୁଁ ସେମାନଙ୍କୁ ଦେଖି ଚାଲିଛି ନୀରବରେ । ମୋ କାନ ପାଖେ ଶୂନ୍ୟତାର ସାଇଁ ସାଇଁ ଶବ୍ଦ ଏବଂ ମୋ ଆଖି ଆଗରେ ସେମାନେ 'ଷ୍ଟାଚ୍ୟୁ' ପରି ଏକ ନିର୍ଦ୍ଦିଷ୍ଟ 'ପୋଜ୍'ରେ ପାଟିକୁ ଆଁ କରି ରହି ଯାଇଛନ୍ତି । ଆଖିର ପଲକ ପଡ଼ୁନାହିଁ । ସତେ ଯେମିତି ସମସ୍ତଙ୍କୁ ସେଇ ନିର୍ଦ୍ଦିଷ୍ଟ କ୍ଷଣରେ ଅଟକି ଯାଇଛି ।

ସେଇପରି ଏକ ସ୍ଥାଣୁ ମୁହୂର୍ତ୍ତରେ ମୋର ଚିଠି କଥା ମନେ ପଡ଼ିଲା ।



ମୁଁ ଆନନ୍ଦରେ ମନେ ମନେ ହସି ଉଠିଥିଲି । ମୋ ଟେବୁଲ୍ ଉପରେ ଦୁଇଖଣ୍ଡ ଚିଠି । ଗୋଟିଏ ଅତି ପରିଚିତ ଅକ୍ଷର । ଏବଂ ଅନ୍ୟଟି ଓଡ଼ିଶା ସରକାରଙ୍କର । ନିଜ ଅନ୍ତରର ସମସ୍ତ ଆଶଙ୍କା ଓ ଉତ୍ତେଜନାକୁ ଚାପିରଖି ପ୍ରଥମେ ତରୁଲତାର ଚିଠିଟି ଖୋଲିଲି ।

ମାତ୍ର ଗୋଟିଏ ବାକ୍ୟ—"ଆଉ ମୋତେ ଚିଠି ଦେବନି ।" ମୁଁ ବ୍ୟଥିତ ହେଲି । ତରୁଲତା ନିକଟରୁ ଏ ପ୍ରକାର ଚିଠି ମୁଁ ଆଶା କରି ନ ଥିଲି । ଭଲ ପାଇବାର ପ୍ରତିଦାନ ଅନ୍ତତଃ ଏଇଟା ନୁହେଁ । କିନ୍ତୁ ପ୍ରସନ୍ନ କହିଥିଲା ।" ଦିସ୍ ଇଜ ଲାଇଫ୍ ।" ମୁଁ ମନେ ମନେ ପ୍ରସନ୍ନର ଉକ୍ତ ଉପଦେଶ ଗ୍ରହଣ କରିନେଲି । "ଦିସ୍ ଇଜ୍ ଲାଇଫ୍", ମୁଁ ହସିଲି ।

ଦ୍ୱିତୀୟ ଚିଠି ଖୋଲିଲା ପରେ ପ୍ରଥମ ବାକ୍ୟର ପ୍ରଥମ ଦୁଇଟି ଶବ୍ଦ—"ୱିଥ୍ ରିଗ୍ରେଟ..." ପରେ ମୋ ଚକ୍ଷୁ ସମ୍ମୁଖରେ ଥିବା ଉକ୍ତ ଚିଠିର ସମସ୍ତ ଅକ୍ଷର ଯେମିତି ଅଦୃଶ୍ୟ ହୋଇଗଲା ।

ଏବଂ ମୁଁ ଲମ୍ବା ଲମ୍ବା ନିଃଶ୍ୱାସ ନେବାକୁ ଲାଗି ଯାଇଥିଲି ।

ମୁଁ ଉକ୍ତ 'ରିଗ୍ରେଟିଙ୍ଗ୍ ଲେଟର'କୁ ହାତରେ ଧରି ମୋ କ୍ଷୁଦ୍ର ତଥା ଏକାନ୍ତ କକ୍ଷର ଶୂନ୍ୟତା ମଧ୍ୟରେ ନିଜର ଅସ୍ତିତ୍ୱ ଖୋଜିବାପାଇଁ ଚେଷ୍ଟା କରୁ-ଥିଲି । ମୋ ଚକ୍ଷୁ ସମ୍ମୁଖରେ ଥିଲା ନିବିଡ଼ ଘଞ୍ଚ ଅନ୍ଧକାର । ମୋତେ ଲାଗୁଥିଲା ଯେମିତି ଏଇ ଅନ୍ଧାର ମଧ୍ୟରେ ମୋର ଜନ୍ମ ଏବଂ ମରୁଭୂମିର ନିବିଡ଼

ଅନ୍ଧକାରରେ କ୍ଳାନ୍ତ ଭାବେ ଠିଆ ହୋଇ ଆଜି ପର୍ଯ୍ୟନ୍ତ କେବଳ ସାମାନ୍ୟ ଟିକେ ଆଶ୍ରୟ ଓ ବଞ୍ଚିବାର କାମନା ନେଇ ମୁଁ କେବଳ ମୃତ୍ୟୁକୁ ହିଁ ଅପେକ୍ଷା କରି ରହିଛି ।

ନିଜକୁ ଖୋଜିବାକୁ ଚେଷ୍ଟା କରୁଥିଲି ମୁଁ ଉକ୍ତ ଅନ୍ଧାର ମଧ୍ୟରେ । ମୋର ଇଚ୍ଛା ହେଉଥିଲା ମରୁଭୂମିର ଅଶାନ୍ତିକର ପରିବେଶ ମଧ୍ୟରୁ ଦୌଡ଼ିଯାଇ କୌଣସି ଏକ ମରୁଦ୍ୟାନର ଶାନ୍ତ, ସ୍ନିଗ୍ଧ ବାତାବରଣ ମଧ୍ୟରେ ଆଶ୍ରୟ ନେବାକୁ । କିନ୍ତୁ ମୋ ପାଦଦ୍ୱୟ ପାଷାଣରେ ଯେମିତି ଲାଗି ଯାଇଥିଲେ ।

ମୋ ଚତୁର୍ଦ୍ଦିଗରେ ଅନ୍ଧକାର । ମୁଁ ବିଚଳିତ ହୋଇ ଉଠିଲି, ମୁକ୍ତି ପାଇଁ, ଆଲୋକ ପାଇଁ । କିନ୍ତୁ ଶୂନ୍ୟତା ମଧ୍ୟରୁ ବାହାରି ମୋ ଆତ୍ମା, ଅନ୍ଧକାରକୁ ପଛରେ ଛାଡ଼ି ଆଲୋକର ଏକ ରଶ୍ମି ପାଇଁ ଦୌଡ଼ି ଚାଲିଥିଲା । ମୁଁ କିନ୍ତୁ ସ୍ଥାଣୁ ପରି ତଥାପି କେବଳ ଠିଆ ହୋଇ ରହିଥିଲି ଏବଂ ପ୍ରସନ୍ନ କହିଥିଲି, "ଦିସ୍ ଇଜ୍ ଲାଇଫ୍ !"



('ଅଧୁନା' ମାର୍ଚ୍ଚ ୧୯୭୪)

# ବୃତ୍ତର ପରିଧିରେ

ଲତାନାନୀଙ୍କୁ ଦେଖିଲା ପରଠାରୁ ଝୁଲି ମନରେ ଅନେକ ପ୍ରଶ୍ନ ଉଙ୍କି ମାରୁଥିଲା । ଅନେକ କଥା କହିବାପାଇଁ, ପଚାରିବାପାଇଁ ସେ ବ୍ୟସ୍ତ ହୋଇ ପଡ଼ୁଥିଲା । କିନ୍ତୁ ବଡ଼ନାନୀ, ସାନନାନୀ ଓ ବାପାମା'ଙ୍କ ଉପସ୍ଥିତି ଯୋଗୁଁ କିଛି କହି ନ ପାରି, ଲତାନାନୀର ଦେହରେ ଲାଗିଯାଇ ନୂଆ ଚକ୍ ଚକ୍ ଶାଢ଼ୀର ପଣତକୁ ନିଜ ସାନ ସାନ ପାପୁଲିରେ ମୋଡ଼ି ଦେଖୁଥିଲା ।

ବାପା ମା' ଗଲାପରେ ବଡ଼ନାନୀ ଗମ୍ଭୀର ହୋଇ ଲତାନାନୀଙ୍କୁ କେତେ କଥା ପଚାରି ବୁଝୁଥିଲା । କିଛି ବୁଝି ପାରିଲା ନାହିଁ ଝୁଲି । ପ୍ରତିଶୋଧ, ପ୍ରେମ, ବିଚ୍ଛେଦ, ସନ୍ଦେହ ଏ ସମସ୍ତ ଶବ୍ଦର ଅର୍ଥ ସେ ବୁଝିପାରୁ ନ ଥିଲା । ତା'ର ଖାଲି ଇଚ୍ଛା ହେଉଥିଲା ଲତାନାନୀଙ୍କୁ ତାଙ୍କ ପୁଅ ବିଷୟରେ ପଚାରନ୍ତା— ପଚାରନ୍ତା ଆକାଶବାଣୀର ସେ ପ୍ରୋଗ୍ରାମ ରେକର୍ଡ଼ିଂ କଥା ମନେ ଅଛି କି ନାହିଁ । କିନ୍ତୁ ନାନୀ ତ ଟିକେହେଲେ ଲତାନାନୀଙ୍କୁ ଛାଡ଼ୁ ନି ।

ଲତାନାନୀ ଅନେକ ବଦଳି ଯାଇଛି । ସେ ମନକୁ ମନ ଭାବିଲା । ଯେଉଁଠି ସେ କଳା କୁଙ୍କୁମ ଲଗାଉଥିଲା, ଆଜି ସେଠି ଲାଲ୍ ସିନ୍ଦୂର । ଗୋରା ମୁହଁକୁ କେଡ଼େ ଚମତ୍କାର ଦେଖାଯାଉଛି । ମୁଁ ବି ସିନ୍ଦୂର ଲଗାଇବି, ସେ ଭାବିଲା, ବଡ଼ନାନୀ ଯଦି ସିନ୍ଦୂର ଲଗାନ୍ତା ତେବେ କଅଣ ଏଇମିତି ସୁନ୍ଦର ଦେଖାଯାନ୍ତା ! ନା · ବଡ଼ନାନୀଟା କାଳୀ । ଲତାନାନୀ ତ ଗୋରୀ ।

ସେ ଲକ୍ଷ୍ୟକଲା, ଆଗ ପରି ଲତାନାନୀ ଆଉ ହସୁନାହିଁ । ହସ କଥା ପଡ଼ିଲେ ଖାଲି ଟିକେ ମୁରୁକି ହସିଦେଇ ନୀରବ ରହି ଯାଉଛି । ·ଟିକେ ପତଳା ମଧ୍ୟ ହୋଇ ଯାଇଛି । ଝୁଲି ମନେ ମନେ ହିସାବ କଲା । ହଁ—ମେ ମାସରେ ସେ ଏଠାରୁ ତାଙ୍କ ଗାଁକୁ ଗଲେ । · ଜୁନ୍‌ରେ ବାହାଘର ହେଲା ଏବଂ ଜାନୁଆରୀରେ ପୁଅ । ଏଇଟା ହେଲା ମାର୍ଚ୍ଚ । ଠିକ୍ ଦଶମାସ ପରେ ତାଙ୍କ ସହିତ ଦେଖା । ଦଶମାସ ଭିତରେ କେତେ କଥା ବଦଳି ଯାଇଛି । ଘର ସାମ୍ନା ବଉଳ

ଗଛଟାକୁ ଗତ ମାସରେ ମ୍ୟୁନିସିପାଲିଟିବାଲା କାଟିଦେଲେ । ତା'ର ମନେ ପଡ଼ିଲା, ଏଇ ବଉଳଗଛ ତଳେ ଠିଆ ହୋଇ ଲତାନାନୀ ସବୁଦିନେ ସନ୍ଧ୍ୟାରେ ରାସ୍ତାକୁ ଚାହିଁ ରୁହନ୍ତି । ଆଉ ରାସ୍ତାରେ ଯାଆନ୍ତି ସୂ···।

"ଜାଣିଛ ଲତାନାନୀ କାଲି ସନ୍ଧ୍ୟାରେ ମୁଁ ବଜାରରେ ସୂର୍ଯ୍ୟ ଭାଇଙ୍କୁ ଦେଖିଥିଲି ।" ସେ ଆଉ ନିଜକୁ ଅଟକେଇ ପାରିଲା ନାହିଁ ।

ଲତାନାନୀ ହଠାତ୍ ନୀରବ ହୋଇଗଲା । ବଡ଼ନାନୀ ତାକୁ ବଡ଼ ବଡ଼ ଆଖିରେ ଚାହିଁଲା । ଟୁଲି କିଛି ବୁଝିପାରିଲା ନାହିଁ । ଏଇ ଲତାନାନୀ ତ ଆଗେ ତାକୁ ସୂର୍ଯ୍ୟଭାଇ ବିଷୟରେ କେତେକଥା ପଚାରୁଥିଲା । ଆଉ ଆଜି ? ସେ ଅପରାଧୀ ପରି ଠିଆ ହୋଇ ରହିଲା । ଲତାନାନୀ ତାକୁ ମୁହଁ ଉଠେଇ ଅନେଇଲା । ଟୁଲି ପୁନର୍ବାର ମୁଣ୍ଡ ହଲାଇଲା—"ହଁ···କାଲି ସନ୍ଧ୍ୟାରେ । ଏକଦମ୍ ବଢ଼ି ଯାଇଛନ୍ତି । ବଡ଼ ବଡ଼ ଦାଢ଼ି । କମା ଚହଳି ହେଉନ ।"

ଲତାନାନୀ ଦୀର୍ଘଶ୍ୱାସ ତ୍ୟାଗକଲା । ବଡ଼ନାନୀ ସାମ୍ନା ଝର୍କା ଦେଇ ବାହାରକୁ ଚାହିଁଲା । କିଛିକ୍ଷଣ ପୂର୍ବରୁ କଥାବାର୍ତ୍ତା ହଠାତ୍ ଏକ ପାଚେରୀ ନିକଟରେ ପହଞ୍ଚି ଧକ୍କା ଖାଇ ଯେମିତି ଅଟକିଗଲା ଏବଂ ସମସ୍ତେ ନୀରବ ହୋଇଗଲେ ।

"ତୁ ତାହାହେଲେ ବର୍ତ୍ତମାନ ଚାଲିଯିବୁ ?" ବଡ଼ନାନୀ ପ୍ରଶ୍ନକଲା ।

"ହଁ ! ଏଠି ଅଟକି ନ ଥାନ୍ତି । କେବଳ ତୋ ସହିତ ଦେଖା ହୋଇ ନ ଥିଲା ବୋଲି···।" ଲତାନାନୀର ସ୍ୱରଟା ଟୁଲିକୁ ଯେପରି ଅପରିଚିତ ଜଣା-ପଡ଼ିଲା । ସେ ମୁଣ୍ଡ ଉଠାଇ ଲତାନାନୀର ମୁହଁକୁ ଅନେଇଲା । ଆରେ ଏ କଅଣ ···ହଠାତ୍ ଲତାନାନୀର ମୁହଁଟା ଏତେ କଳା ପଡ଼ିଗଲା କାହିଁକି ?

"ଲତାନାନୀ ତୁମ ଦେହ ଭଲ ଅଛି ତ ?"

"ହଁ ଲୋ । ମୁଁ ଭଲ ଅଛି ।"

"ତୁ ଏକା କେମିତି ଯିବୁ ?" ବଡ଼ନାନୀ ପ୍ରଶ୍ନକଲା ।

"ଏକା ଆସିପାରିଲି ଯେତେବେଳେ, ଯିବା ପାଇଁ···।"

ଟୁଲିର ମନେହେଲା ଲତାନାନୀ କାନ୍ଦୁଛି । ସେ ପୁନର୍ବାର ଲକ୍ଷ୍ୟକଲା । ନା···ଲତାନାନୀ କାନ୍ଦୁନାହିଁ । ଖାଲି ସ୍ୱରଟା ଥରି ଉଠିଥିଲା ।

"ତଥାପି ।" ବଡ଼ନାନୀ ପ୍ରତିବାଦ କରି ଉଠିଲା ।

"ଡ୍ରାଇଭର ଅଛି । ଗ୍ଭଲଯିବ । ତା'ପରେ ଆଜି ନ ଗଲେ ଅନେକ ଅସୁବିଧା ହେବ । ପିଲାଟା ପୁଣି ଆୟା ପାଖରେ । ସେ ବଡ଼ ବ୍ୟସ୍ତ ହେବେ ।"

ବଡ଼ନାନୀ ଭିତରକୁ ଉଠିଗଲେ । ବୋଧହୁଏ ଲତାନାନୀର ଖାଇବା ବ୍ୟବସ୍ଥା କରିବା ପାଇଁ । ଟୁଲିର ମନେପଡ଼ିଲା, ବଡନାନୀ ଓ ଲତାନାନୀ ଏକା ସଙ୍ଗେ ପଢ଼ୁଥିଲେ, ଏକା ସଙ୍ଗେ ଖାଉଥିଲେ ଏବଂ ରାତିସାରା ବସି ଗପୁଥିଲେ । ଥରେ ଥରେ ତାକୁ ବିରକ୍ତ ଲାଗେ । ଏତେ ରାତି ପର୍ଯ୍ୟନ୍ତ ଏମାନେ ନ ଶୋଇ କାହିଁକି ଓ କଅଣ ଗପୁଛନ୍ତି । ଅକାରଣରେ ଇଲେକ୍‌ଟ୍ରିକ ଖର୍ଚ୍ଚ ହେଉଛି ଯାହା ।

ସେ ଚମକି ଉଠି ଅସ୍ୱସ୍ଥ ହେଲା । 'ଉଁ', ଲତାନାନୀ ତାକୁ କଅଣ ପଚାରୁଛନ୍ତି ।

"କଅଣ ଲତାନାନୀ ?"

"ତୁ ପାଠ ପଢ଼ୁଛୁ ମନଦେଇ ।" ଲତାନାନୀର ଏ ପ୍ରଶ୍ନ ତାକୁ ଜମା ଭଲ ଲାଗିଲା ନାହିଁ ।

"ହୁଁ ! ତମ ପୁଅ କେମିତି ହୋଇଛି କୁହ ମ ?" ସେ ଲତାନାନୀକୁ ଜାବୁଡ଼ିଧରି ପଚାରିଲା ।

ଲତାନାନୀ କିଛିକ୍ଷଣର ନୀରବତା ପରେ ଦୀର୍ଘଶ୍ୱାସ ଛାଡ଼ି କହିଲେ— "ରୋଗିଣାଟା ତ ।"

"ତୁ ଯେମିତି କୁହନ୍ତି ।"

ଲତାନାନୀ ଟୁଲିର ତାଗିଦ୍‌ରେ ନିଜକୁ ଲଜ୍ଜିତ ବୋଧ କଲେ ଯେମିତି ।

"ତମେ ତାକୁ ଆଣିଲ ନାହିଁ । ଆମେ ଦେଖିଥାନ୍ତୁ । ତମ ପୁଅ ତମପରି ଗୋରା ତକ୍‌ତକ୍ ଓ ସୁନ୍ଦର ହୋଇଥିବ ନିଶ୍ଚୟ ।

ଲତାନାନୀ କିଛି କହିଲେ ନାହିଁ ।

ଟୁଲି ଭାବିଲା, ମା' ହୋଇଗଲେ ସମସ୍ତେ ଏମିତି ଗମ୍ଭୀର ହୋଇଯାନ୍ତି କାହିଁକି ? ମଞ୍ଜୁ ଅପା ଆଗେ କେତେ କଥା କହୁଥିଲା, ରାତି ରାତି ଅନିଦ୍ରା ରହି କେତେ କଅଣ ଲେଖୁଥିଲା; କିନ୍ତୁ ବିବାହ ପରେ ଯେମିତି ମୂକ ଏବଂ ମା' ହେବା ପରେ ଏବେ ଏତେ ଗମ୍ଭୀର ଦେଖାଯାଉଛି ଯେ ଟୁଲିକୁ ତାଙ୍କ ପାଖକୁ ଯିବାକୁ ଡର ଲାଗୁଛି । ଠିକ୍ ଯେମିତି ଏକ ପଥର ମୂର୍ତ୍ତି ।

"ଏଇ ଲତାନାନୀ କଥା, ଆଗେ କେତେ ହସୁଥିଲା, ସବୁବେଳେ ଗୀତ ଗାଉଥିଲା । ଆଉ ଏବେ ମୁହଁଟା ହାଣ୍ଡି ପରି, ଆଖି ଯେମିତି କିଛି ହଜେଇ ଦେଇ ଖୋଜୁଛି । ଟୁଲିର ଇଚ୍ଛାହେଲା ପଚାରିବ, କଅଣ ଖୋଜୁଛ ଲତାନାନୀ ? କିନ୍ତୁ ପଚାରି ପାରିଲା ନାହିଁ । ବାପା, ମା' ଓ ବଡ଼ନାନୀ ଥିଲାବେଳେ କେତେକଥା ମନରେ ଭରି ରହିଥିଲା, ହେଲେ ବର୍ତ୍ତମାନ କିଛି କଥା ମନେ ପଡ଼ୁନି । ବରଂ ଲତାନାନୀ ପାଖରୁ ଦୌଡ଼ି ପଳାଇ ଯିବାପାଇଁ ଇଚ୍ଛା ହେଉଛି ।

"ତମେ ଆଜିକାଲି ଗୀତ ଗାଉଛ ଲତାନାନୀ ?"

"ଗୀତ !" ଲତାନାନୀ ଯେମିତି ଚମକି ପଡ଼ିଲା ।

"ହଁ ! ଲତାନାନୀ, ମୋର ତମର ସେ ଗୀତଟା ପୂରା ମନେଅଛି··· ମନମୟୂରୀ···।" ଟୁଲି ଉତ୍ସାହିତ ହୋଇ କହି ଉଠିଲା ।

"ମୋର ଆଉ କିଛି ମନେନାହିଁ ଲୋ···ସବୁ ଭୁଲିଗଲିଣି ।"

"ସବୁ ଭୁଲିଗଲଣି···?" ଟୁଲି 'ସବୁ' ଉପରେ ଜୋର ଦେଇ ପଚାରିଲା ।

"ହଁ···ସବୁ । ଗୀତ, ଲୟ, ଛନ୍ଦ ସବୁ ଭୁଲିଗଲିଣି । ଏବେ ତ ଏକ ପରିଧିର କଡ଼େ କଡ଼େ କେନ୍ଦ୍ରର ଆକର୍ଷଣରେ ଘୂରୁଛି । ପରିଧି ବାହାରକୁ ଯିବାର କ୍ଷମତା ନାହିଁ ।"

ଟୁଲି କିଛି ବୁଝି ପାରିଲା ନାହିଁ । ଏମିତି ଗୋଳମାଳିଆ କଥା ସେ ବୁଝିପାରେ ନାହିଁ ।

"ପରକଟା ପକ୍ଷୀ ଦେଖିଛୁ ଟୁଲି, ପଞ୍ଜୁରି ଖୋଲିଦେଲେ ମଧ୍ୟ ସେ ଉଡ଼ିପାରେ ନାହିଁ । ମୋର ପରି ମଧ୍ୟ କଟା ସରିଛି । ପଞ୍ଜୁରି ମଧ୍ୟରେ ଗୀତ ଗାଇ ହୁଏନାହିଁ । ହସି ହୁଏନାହିଁ । ଜୀବନର ଶେଷକ୍ଷଣ ପର୍ଯ୍ୟନ୍ତ ଖାଲି ବଞ୍ଚିବାର ଆଶା ନେଇ ବାଧ୍ୟରେ ବଞ୍ଚିବାକୁ ହୁଏ ।"

ଟୁଲି କେବଳ ବୋକିଙ୍କ ପରି ଲତାନାନୀର ଉତ୍ତେଜନାରେ ଲାଲ ହୋଇ ଯାଇଥିବା ମୁହଁକୁ ଅନେଇ ରହିଥିଲା । ଲତାନାନୀ ଚୁପ୍ ହୋଇଗଲେ । ଟୁଲି ହଠାତ୍ ଉଲ୍ଲସିତ ହୋଇ ପଡ଼ିଲା । ଝର୍କା ନିକଟକୁ ଦୌଡ଼ିଯାଇ ପାଟିକଲା—"ସୂର୍ଯ୍ୟବୁଡ଼ି···ସୂର୍ଯ୍ୟବୁଡ଼ି ।"

"ଦେଖ ଲତାନାନୀ ସୂର୍ଯ୍ୟବୁଡ଼ି ଯାଉଛନ୍ତି ।" ଟୁଲି ଲତାନାନୀର ହାତ ଟାଣି ଉଠାଇବାକୁ ଚେଷ୍ଟାକଲା । କିନ୍ତୁ ଲତାନାନୀ ଯେପରି ଜଡ଼ ହୋଇ ଯାଇଥିଲା । ଏକଦମ ଥଣ୍ଡା । ସ୍ପନ୍ଦନହୀନ । ଆଖିପତା ପଡ଼ୁ ନ ଥିଲା । ଟୁଲି

ଉଠିଗଲ । ଲତାନାନୀଙ୍କୁ ହଲେଇ ଦେଇ କହିଲା—"କଅଣ ହେଲା ଲତାନାନୀ ?"

"କିଛୁ ନାହିଁ ।" ଲତାନାନୀ ଯେମିତି ପ୍ରକୃତିସ୍ଥ ହେଲା ।

"ତମର ମନେଅଛି ଲତାନାନୀ ?"

"କେଉଁକଥା ?"

"ସେ ଆକାଶବାଣୀ ପ୍ରୋଗ୍ରାମ କଥା । ସୂର୍ଯ୍ୟଭାଇ ସହିତ କେତେ ମଜା ହୋଇଥିଲା । ମନେଅଛି ତମର ?" ଟୁଲି ପୁଣି ଥରେ ଉତ୍ସାହିତ ହୋଇ ଉଠିଲା ।

"ମୋର ତ ଆଉ କିଛୁ ବି ମନେନାହିଁ ।"

"ତମେ ଏତେ ଶୀଘ୍ର ଏସବୁ କଥା କେମିତି ଭୁଲିଗଲ ?" ଟୁଲି ବିରକ୍ତ ହେଲା ।

"ଭୁଲିବାକୁ ହୁଏ ଟୁଲି । ନାରୀ ହୋଇ ଜନ୍ମ ହେଲେ ଅନେକ କଥା ଭୁଲିବାକୁ ହୁଏ ।"

"ବଡ଼ନାନୀ ତ ଭୁଲିନାହିଁ । ଥରେ ଥରେ ଘରେ ବଡ଼ନାନୀ, ସାନନାନୀ ସମସ୍ତେ ପଛ କଥାକୁ ମନେ ପକାଇ ହସନ୍ତି । ମୋର ମଧ୍ୟ ସବୁ ମନେଅଛି । ଏସବୁ କଥା କଅଣ ଭୁଲିହୁଏ କେବେ ?"

"ତୁ ବୁଝି ପାରିବୁ ନାହିଁ ଟୁଲି । କେହି କେହି ପଛ କଥାକୁ ମନେ ପକାଇ ହସନ୍ତି ; ଆଉ କାହାକୁ ପଛକଥା ମନେ ପଡ଼ିଲେ କାନ୍ଦ ଲାଗେ । ତାକୁ କାନ୍ଦିବାକୁ ହୁଏ ।

ଟୁଲି ଲତାନାନୀର ଥରିଲା ସ୍ୱର ଦ୍ୱାରା ରୋମାଞ୍ଚିତ ହୋଇ ତାଙ୍କ ଆଖିକୁ ଅନେଇଲା । ଆରେ ଏ କଅଣ···ଲତାନାନୀ କାନ୍ଦୁଛନ୍ତି ।"

"ତୁମେ କାନ୍ଦୁଛ ଲତାନାନୀ ?"

"ତାଙ୍କ ସହିତ ତୋର ଦେଖା ହୋଇଥିଲା ?"

"କାହା ସହିତ ?···ଓଃ !···ସୂର୍ଯ୍ୟଭାଇଙ୍କ ସହିତ । ହଁ···କାଲି ସନ୍ଧ୍ୟାରେ ତ ଦେଖିଥିଲି । କଥା ବି ହୋଇଥିଲା ।"

"କଅଣ କହୁଥିଲେ ?"

"ତମ ପୁଅ ହେବା କଥା ଶୁଣିଛନ୍ତି କହୁଲେ ନାହିଁ । କେବଳ ତାଙ୍କ ପଗ୍ଭରଲେ । ତମେ ତାଙ୍କୁ ଦେଖିଲେ ଜମା ଚହ୍ନି ପାରିବ ନାହିଁ । ଖାଲି ସିଗାରେଟ୍ ଉପରେ ସିଗାରେଟ୍ ।"

ମା' ପଶି ଆସିଲେ । ଟୁଲ୍ ଆଉ କିଛି କହି ପାରିଲା ନାହିଁ । ଲତାନାମ୍ନୀ ମଧ୍ୟ ନିଜ ଲୁହ ପୋଛି ମୁରୁକି ହସିଲା । ମା'ଙ୍କୁ କହିଲା—"ମାଉସୀ ଟୁଲ୍ ଟିକେ ହେଲେ ବି ବଦଳି ନାହିଁ ।"

"କିନ୍ତୁ ତୁ ବଦଳି ଯାଇଛୁ ।" ମା' କହିଲେ ।

ଲତାନାମ୍ନୀ କିଛି କହିଲା ନାହିଁ ।

ଖାଇବା ପରେ ଟିକେ ବିଶ୍ରାମ । ପରିବାରର ପ୍ରତ୍ୟେକଙ୍କ ସମ୍ମିଳିତ ପ୍ରଶ୍ନ ।

"ଦ୍ୱିବେଦୀ ବାବୁ କେମିତି ?"

"ଗାଉରକେଲା କେବେଠୁଁ ଆସିଲେଣି ?"

"କେମିତି ଲାଗୁଛି ନୂତନ ଜୀବନ ।"

ଲତାନାମ୍ନୀ ଏସବୁ ପ୍ରଶ୍ନର ବେଶ୍ ଶ୍ରେଷ୍ଠ ଶ୍ରେଷ୍ଠ ଉତ୍ତର ଦେଇ ଚାଲିଥାଏ । ଟୁଲ୍ ସବୁ ଶୁଣୁଥାଏ । କିଛି ବୁଝୁଥାଏ, କିଛି ବୁଝିପାରୁ ନ ଥାଏ । ଦୁଇ ମାସର ଝିଅକୁ ଛାଡ଼ି ଲତାନାମ୍ନୀ କେମିତି ଓ କାହିଁକି ଆସିଥିଲେ ଏଠାକୁ ତା' ଟୁଲ୍ ଜାଣି ପାରୁ ନ ଥିଲା ।

ଡ୍ରାଇଭର ହର୍ଣ୍ଣ ଦେଲା । ବଡ଼ନାମ୍ନୀ ଲତାନାମ୍ନୀଙ୍କୁ ବଗିଚାକୁ ଡାକଲେ । ଟୁଲ୍ ଚୁପ୍ ଚାପ ସେମାନଙ୍କ ପଛରେ ଠିଆହେଲା । ବଗିଚାର ସିମେଣ୍ଟ ବେଞ୍ଚରେ ବସି ବଡ଼ନାମ୍ନୀ ପଗ୍ଭରିଲା, "ଏଥର କହ, ହଠାତ୍ ତୋର ଏଠାକୁ ଆସିବାର ଅର୍ଥ ?"

"ସତ କହିବ ?" ଲତାନାମ୍ନୀ ହସିବାକୁ ଚେଷ୍ଟାକଲା ।

"ମତେ ରଗାନା । ଦୁଇ ମାସର ଝିଅକୁ ଛାଡ଼ି ତୋର ଏକ ପାଗଳାମୀ ।" ବଡ଼ନାମ୍ନୀ ରାଗିଗଲା ।

"ଆସିଥିଲି ସୂର୍ଯ୍ୟଙ୍କୁ ଦେଖା କରିବାପାଇଁ । ତାଙ୍କୁ ବୁଝାଇବାପାଇଁ । ତା'ର ନଷ୍ଟଭ୍ରଷ୍ଟ ଜୀବନକୁ ପୁଣି ଥରେ ସଜାଡ଼ି ଦେବାପାଇଁ, କିନ୍ତୁ ଏଠି ସହଜ

ମୋର ସବୁ ସାହସ, ଦମ୍ଭ ଖର୍ଚ୍ଚିଗଲା । ଆଉ କେଉଁ ମୁହଁରେ ତା' ସମ୍ମୁଖକୁ ଯିବି ?"

"ତା' ସହିତ ବର୍ତ୍ତମାନ ତୋର ଆଉ କ ସମ୍ପର୍କ ? ଭୁଲିଯା ତାକୁ ।"

"ସମ୍ପର୍କ ! ତୁ ବୁଝି ପାରିବୁ ନାହିଁ ଲିଲୁ... ।" ତରୁନାମା କାନ୍ଦି ଉଠିଲା ।

"ମାନେ... ?"

"ମୋ ଶ୍ୱଶୁର ପରିବାରର କାହା ସହିତ ମୋ ପୁଅ ମିଶୁନାହିଁ । ଏପରିକ ମୋ ସହିତ ମଧ୍ୟ ନୁହେଁ ।

"ଅର୍ଥାତ୍...ତୁ କହିବାକୁ କଅଣ ଚାହୁଁଛୁ ?"

"ଠିକ୍ ସେଇକଥା, ଯାହା ତୁ ସନ୍ଦେହ କରୁଛୁ, ସେମାନେ ସୂର୍ଯ୍ୟକୁ ସନ୍ଦେହ କରୁଛନ୍ତି ।" ଲତାନାନୀର କଣ୍ଠ କହ୍ନାଡ ସ୍ୱାଭାବିକ ହୋଇ ଉଠିଥିଲା ।

"ଆଉ ତୁ...ତୁ ପ୍ରତିବାଦ କରୁନାହୁଁ କାହିଁକ ?"

"କେଉଁ ମୁହଁରେ ପ୍ରତିବାଦ କରିବ ? ସତକୁ ମୁଁ କେମିତି ମିଛ କହିବ ?"

"ତା' ମାନେ...ତା' ମାନେ...ସେ ସନ୍ତାନ ସୂର୍ଯ୍ୟର...।"

"ହଁ !"

ଆଉ ଅଧିକା ଶୁଣିବା ପାଇଁ ଟୁଲି ନିକଟରେ ଧୈର୍ଯ୍ୟ ନ ଥିଲା ।

ବାହାରେ ଡ୍ରାଇଭର ହର୍ଣ୍ଣ ଦେଉଥିଲା ।

ଯିବାବେଳେ ସେ ଲତାନାନୀକୁ ଦେଖା ମଧ୍ୟ କରି ନ ଥିଲା । ସୂର୍ଯ୍ୟଭାଇ ପାଇଁ ତାକୁ ଖୁବ୍ ଦୁଃଖ ଲାଗୁଥିଲା ଏବଂ ସେ ମନେ ମନେ ଲତାନାନୀ ଉପରେ ରାଗି ଉଠିଥିଲା ।

ଝର୍କା ନିକଟରେ ଠିଆ ହୋଇ ଲତାନାନୀର ଗାଡ଼ି ରାସ୍ତାର ମୋଡ଼ ଆରପଟେ ଲୁଚିଯିବାର ଦେଖିଲା ପରେ ନିଜ ବଡ଼ନାନୀ ଓ ମା'ଙ୍କର ଫୁସ୍‌ଫାସ୍ କଥାବାର୍ତ୍ତା ଶୁଣିବା ପାଇଁ ତା'ର ଇଚ୍ଛା ନ ଥିଲା । ସେ ଖାଲି ଭାବୁଥିଲା, ପରିଧିର କଡ଼େ କଡ଼େ ଯଦି ଲତାନାନୀ ଘୁରି ବୁଲୁଛି, ତେବେ ସୂର୍ଯ୍ୟ ଭାଇଙ୍କର ସ୍ଥାନ କେଉଁଠି ?

ତା'ର ପନେପଡ଼ିଲା 'ମେରି ଗୋ ରାଉଣ୍ଡ' କଥା । ତାକୁ ମନେହେଲା ଯେମିତି 'ମେରି ଗୋ ରାଉଣ୍ଡ'ର କାଠ ଘୋଡ଼ାରେ ବସି ଲତାନାନୀ ଘୁରୁଛୁ ଏବଂ ସୂର୍ଯ୍ୟଭାଇ ସେ କାଠ ଘୋଡ଼ାକୁ ଛୁଇଁବା ପାଇଁ ଚେଷ୍ଟା କରୁଛନ୍ତି, ହେଲେ ପାରୁନାହାନ୍ତି ଏବଂ 'ମେରି ଗୋ ରାଉଣ୍ଡ'ଟା ବନ୍ଦ ନ ହୋଇ ସେଇ କ୍ରମରେ ଘୁରି ବୁଲୁଛି । ପ୍ରତ୍ୟେକ କେବଳ ଘୁରି ବୁଲୁଛନ୍ତି ।

ହଠାତ୍ ତା'ର ନିଜ ଉପରେ ରାଗ ହେଲା । ଯାଃ ! ସେ ତ ଲତାନାନୀକୁ କହି ପାରିଲା ନାହିଁ ଯେ ସୂର୍ଯ୍ୟଭାଇ ପୂର୍ବପରି ଏବେ ମଧ୍ୟ ଏଇ ରାସ୍ତାରେ ସନ୍ଧ୍ୟାବେଳେ ଏଇ ଘରକୁ ଗୁହିଁ ଗୁହିଁ ସାଇକେଲରେ ଯାଉଛନ୍ତି ।

ମ୍ୟୁନିସିପାଲଟିବାଲାଙ୍କ ଉପରେ ତା'ର ଖୁବ୍ ରାଗ ହେଲା । ଏତକବେଳେ ଯଦି ବଉଳ ଗଛଟା ଥାଆନ୍ତା, ତେବେ ହୁଏତ ଲତାନାନୀ ସେଠି ଠିଆ ହୋଇ ରହିଥାନ୍ତା, ସୂର୍ଯ୍ୟଭାଇ ଫେରିଲାବେଳେ ତାଙ୍କୁ ଦେଖି ଅଟକି ଯାଇଥାନ୍ତେ ଏବଂ ସେଇକ୍ଷଣରେ ବଉଳ ଫୁଲଗୁଡ଼ାକ ଫୁଟି ସହରକୁ ମହକେଇ ଦେଇଥାନ୍ତେ ।

ହୁଏତ ଶେଷଥର ପାଇଁ ସୂର୍ଯ୍ୟଭାଇ ଲତାନାନୀଙ୍କୁ ଦେଖି ପାରିଥାନ୍ତେ ଅଥବା ଲତାନାନୀ ସୂର୍ଯ୍ୟଭାଇଙ୍କୁ ଦେଖି ପାରିଥାନ୍ତା ।

କିନ୍ତୁ କିଛି ହୋଇ ପାରିଲା ନାହିଁ ।

ତେଣୁ ସେ ରାଗରେ ଝର୍କାଟା ବନ୍ଦ କରିଦେଲା ।



('ନବରବି' ମେ ୧୯୭୩)

# ଚକ୍ରବ୍ୟୂହ

ପୀତବାସ ବାବୁ ଦୀର୍ଘଶ୍ୱାସ ତ୍ୟାଗକରି ପଛକୁ ବୁଲି ଅନେଇଲେ । ନାଃ କୌଣସି ପ୍ରକାରର ପରିବର୍ତ୍ତନ ନାହିଁ । ଅଫିସର ଅଟ୍ଟାଳିକାଟି ପୂର୍ବପରି ସ୍ତବ୍ଧ, ନୀରବ ଏବଂ ଶାନ୍ତ । ସହକର୍ମୀମାନେ ତାଙ୍କୁ ଶୁଭେଚ୍ଛା ଜଣାଇ ଚାଲିଗଲେଣି । ଏଇଠି ତାହାହେଲେ ତାଙ୍କ ଚାକିରି ଜୀବନର ସମାପ୍ତି ଘଟିଲା । ଦୀର୍ଘ ତିରିଶ ବର୍ଷଧରି ସେ ଏଇ ଅଫିସରେ କାମକରି ଆସୁଥିଲେ । ଅବଶେଷରେ ଆଜି ସରକାର ତାଙ୍କ ହାତରେ ବୃଦ୍ଧତ୍ୱର ଏକ ପ୍ରମାଣପତ୍ର ଧରାଇ ଦେଇ ତାଙ୍କୁ ଅବସର ଦେଲା ଏବଂ ସେ ନିଜ ସହକର୍ମୀମାନଙ୍କର ସ୍ନେହ ସୌହାର୍ଦ୍ଦ୍ୟକୁ ଏକ ବୋଝପରି ଶରୀରରେ ବହନ କରି ଘରକୁ ଫେରିଲା ରାସ୍ତାରେ ଠିଆହୋଇ ଲକ୍ଷ୍ୟ କରୁଥିଲେ ଦୀର୍ଘ ତିରିଶ ବର୍ଷ ଅତିବାହିତ କରିଥିବା ଅଟ୍ଟାଳିକାକୁ ।

ହଠାତ୍ ଘରକୁ ଫେରିବାକୁ ଇଚ୍ଛା ହେଲାନାହିଁ । ଆଜି ଦୀର୍ଘ ତିରିଶ ବର୍ଷ ପରେ ଅଚାନକ ସେ ବିଦ୍ରୋହୀ ହୋଇ ଉଠିଲେ । ତାଙ୍କୁ ଲାଗିଲା ଯେମିତି ଜୀବନଟା ବ୍ୟର୍ଥ ହୋଇଗଲା । ଜୀବନକୁ ସେ କୌଣସି ଦିଗରୁ ଉପଭୋଗ କରିପାରି ନ ଥିବାରୁ ସେ ହଠାତ୍ ଅତ୍ୟନ୍ତ କ୍ଷୁବ୍ଧ ହୋଇ ଉଠିଲେ । ଅନେକ ପ୍ରକାରର ଅବଶୋଷକୁ ମନରେ ଭରି ସେ ବ୍ୟଥିତ ହୃଦୟରେ ଫୁଟପାଥରେ ଚାଲୁ ଚାଲୁ ନିଜକୁ ସାନ୍ତ୍ୱନା ଦେଲେ, "ଯା ! ସବୁ ଜଞ୍ଜାଳ ଛିଣ୍ଡିଲା, ଏଥର କେବଳ ଶାନ୍ତି, ଅବସର ଏବଂ ବିଶ୍ରାମ !"

ମୋଡ଼ଟି ବୁଲିଲା ପରେ ତାଙ୍କ ଆଖି ଆଗରେ କଫି ହାଉସର ନିଅନ୍ ଲାଇଟ୍ ଚମକି ଉଠିଲା । ସେ ନିଜକୁ ଅତୀବ କ୍ଳାନ୍ତ ବୋଧକଲେ । କଫି ପିଇଲେ କେମିତି ହୁଅନ୍ତା ! ଅନେକ ଦିନରୁ କଫି ହାଉସର କୋଳାହଳପୂର୍ଣ୍ଣ ବାତାବରଣରେ ସିଗାରେଟ ଖଣ୍ଡେ ଧରି ନିଶ୍ଚିନ୍ତରେ ବସିପାରି ନ ଥିବାର ଗ୍ଲାନି ତାଙ୍କ ମନକୁ ହଠାତ୍ ଉଦାସ କରି ପକାଇଲା ଏବଂ ସେଇ ଗ୍ଲାନିକୁ ଦୂର କରିବା ପାଇଁ ସେ କଫି ହାଉସ ମଧ୍ୟକୁ ପଶିଗଲେ ।

କଫି କପ୍‌ଟି ତାଙ୍କ ସାମ୍ନାରେ···ଟେବୁଲ ଉପରେ । କଫି କପ୍‌ର ଧୂଆଁ ସହିତ ସେ ଦେଖିବାକୁ ଚେଷ୍ଟା କରୁଥିଲେ ନିଜ ଅସ୍ପଷ୍ଟ ଅତୀତ । ସେ ଆଶ୍ଚର୍ଯ୍ୟ ହୋଇ ଉଠିଲେ । ସେ ଯେ ଦିନେ ଏତେ ଯାନ୍ତ୍ରିକ ହୋଇ ଉଠିବେ, ତା' କଅଣ ସେ ତିରିଶ ବର୍ଷ ତଳେ କେବେ ଦିନେ ଭାବି ପାରିଥିଲେ । ହୁଏତ କେବେ କଳ୍ପନା ମଧ୍ୟ କରିପାରି ନ ଥିବେ । ଭବିଷ୍ୟତର କୌଣସି ଏକ ମୁହୂର୍ତ୍ତରେ ମଣିଷ ଜୀବନରେ କି ପ୍ରକାର ପରିବର୍ତ୍ତନ ଯେ ଆସିବ ତା' ବର୍ତ୍ତମାନ ଏକ କ୍ଷଣରେ ଠିଆହୋଇ କେହି କେବେ ଭାବିପାରି ନାହିଁ । ପୀତବାସ ବାବୁ ବା ଭାବି ପାରିଥାନ୍ତେ କିପରି ?

କଫି ସମାପ୍ତ କରି ସେ ମନେ ମନେ ଟିକେ ହସିଲେ । ନିଜକୁ ସାନ୍ତ୍ୱନା ଦେଲେ, ଏବେ ମଧ୍ୟ ସମୟ ଅଛି । ଗତବର୍ଷମାନଙ୍କରେ ଯାହା ସେ କରିପାରି ନାହାନ୍ତି ତାହା ସେ ଏଇ ଅବସରପ୍ରାପ୍ତ ଜୀବନରେ ହିଁ କରିବେ । କୌଣସି ପ୍ରକାରର ବନ୍ଧନକୁ ଆଉ ସେ ସ୍ୱୀକାର କରିବେ ନାହିଁ । ଏଥର ସେ ଏକ ପକ୍ଷୀପରି ମୁକ୍ତ । ନିଜର ଏଇ ନିଷ୍ପତ୍ତିକୁ ସେ ହୃଦୟର ସହ ସ୍ୱୀକାର କରିନେଇ, ଆନନ୍ଦରେ ଅଭିଭୂତ ହୋଇ ସ୍ଥାନ କାଳପାତ୍ର ଭୁଲି ଚିତ୍କାର କଲେ, "ହିଅର ଆଇ ଆମ !" ତାଙ୍କ ଚିତ୍କାର ଦ୍ୱାରା ନିକଟ ଟେବୁଲର ଦୁଇଜଣ ଭଦ୍ରବ୍ୟକ୍ତି ଆଶ୍ଚର୍ଯ୍ୟରେ ତାଙ୍କୁ ଲକ୍ଷ୍ୟକଲେ ।

ଫ୍ୟାନଟା ଅନବରତ ଘୂରି ଚାଲିଛି । ପୀତବାସ ବାବୁ ଉଠି ବସିଲେ । ନିକଟରେ ଗୀତା ନିର୍ଚ୍ଚିନ୍ତରେ ଶୋଇ ଯାଇଛନ୍ତି । ପୀତବାସ ବାବୁ ଅନେକ ସମୟ ହେଲା ଚେଷ୍ଟାକରି ମଧ୍ୟ ଶୋଇପାରୁ ନାହାଁନ୍ତି । ସେ ଘଣ୍ଟାକୁ ଲକ୍ଷ୍ୟକଲେ, ରାତି ବାରଟା ପନ୍ଦର, ତାଙ୍କ ଭିତରେ ଗୋଟାଏ ଖାଲି ଖାଲି ଭାବ, ଯେମିତି କିଛି ଗୋଟାଏ ହଜେଇ ଦେଇଛନ୍ତି । ସେ ନିଜକୁ ଯଥେଷ୍ଟ ସାନ୍ତ୍ୱନା ଦେଉଥାନ୍ତି, "ଯା' ହୋଇଛି ଭଲ ହୋଇଛି । ଜଞ୍ଜାଳ ଶେଷ ହୋଇଛି । ଦାୟିତ୍ୱର ସମାପ୍ତି ଘଟିଛି ।" କିନ୍ତୁ ଏତେ ସାନ୍ତ୍ୱନା ସତ୍ତ୍ୱେ ମଧ୍ୟ ସେ ଶାନ୍ତି ପାଇ ପାରୁନାହାନ୍ତି । ଗୀତାଙ୍କୁ ଲକ୍ଷ୍ୟକଲେ । ବିବାହର ତିରିଶ ବର୍ଷ ପରେ ମଧ୍ୟ ଆଜି ତାଙ୍କ ଦେହରେ ଓ ମୁଖରେ ଯଥେଷ୍ଟ ଆକର୍ଷଣ ଭରି ରହିଛି । ଏ ବୟସରେ ମଧ୍ୟ ଥରେ ଥରେ ପୀତବାସ ବାବୁ ଉତ୍ତେଜିତ ହୋଇ ଉଠନ୍ତି ।

ସେ ବିଛଣାରୁ ତଳକୁ ଓହ୍ଲାଇ ଆସିଲେ । ଝର୍କା ନିକଟରେ ଠିଆହୋଇ ଦୂର ଅନ୍ଧାରକୁ ଲକ୍ଷ୍ୟକଲେ । ଅତୀତର ଅଧ୍ୟାୟଟା ତାଙ୍କ ଆଗରେ ଖୋଲି ହୋଇଗଲା । ମନରେ କେତେ ଯେ ଆଶା, କାମନା ଭରି ତାଙ୍କୁ ଜୀବନର ଚଲାପଥରେ ଆଗେଇ ଯିବାକୁ ଉତ୍ସାହ ଯୋଗାଇଥିଲା, ତାହା କେଉଁ ପଛ

ମୋଡ଼ରେ ଲୁଚି ରହିଗଲାଣି । ସେ ନୀରବରେ ଦୀର୍ଘଶ୍ୱାସ ତ୍ୟାଗକଲେ । ମୁଁ ଯାହା ପାଇଛି, ଯଥେଷ୍ଟ ପାଇଛି । ଯାହା ପାଇନାହିଁ, ତା' ମୋର ପାଇବାର ନ ଥିଲା । ସେ ହସିଲେ ମନେମନେ । ନିଜକୁ ଦୃଢ଼ କଲେ । ଅଯଥାରେ ଏସବୁ ଭାବି କିଛି ଲାଭନାହିଁ, ଏ ବୟସଟା ହିଁ ସେହିପରି । କେବଳ ଅତୀତ ପାଇଁ ଅବଶୋଷ କରିହେବ । କିନ୍ତୁ କରି କିଛି ହେବନାହିଁ ।

ପଲଙ୍କ ନିକଟରେ ପହଞ୍ଚି ଗୀତାଙ୍କୁ ଥରେ ଚାହିଁଲେ । ଶାନ୍ତ, କମନୀୟ । ବୟସ କୌଣସି ପରିବର୍ତ୍ତନ ଆଣିପାରି ନାହିଁ । ତାଙ୍କର ମନେପଡ଼ିଲା ନିଜ ବିବାହ କଥା···ଏବଂ ତା' ପରର ଘଟଣାବହୁଳ ମୁହୂର୍ତ୍ତମାନଙ୍କର କଥା । ଅନେକ ତିକ୍ତତା ଓ ମଧୁରତାର ସମ୍ମିଶ୍ରଣରେ ବିତିଯାଇଥିବା ଅତୀତର ସେହି କେତୋଟି ପୃଷ୍ଠା ସତେ ଯେମିତି କିଏ ତାଙ୍କ ଆଖି ଆଗରେ ଖୋଲି ଦେଇଗଲା । ଆଃ ! ଅତୀତଟା କଅଣ ସର୍ବଦା ବର୍ତ୍ତମାନର କ୍ଷଣମାନଙ୍କରେ ମନକୁ କେବଳ ବ୍ୟଥାରେ ଭରିଦିଏ ?

ବିବାହର ପ୍ରଥମ କେତୋଟି ବର୍ଷ ତ ବାପା ମା' ଓ ଅନ୍ୟାନ୍ୟ ପରିବାର-ବର୍ଗଙ୍କ ଉପସ୍ଥିତି ଯୋଗୁଁ ଘରର ଗୃହକାର୍ଯ୍ୟ ବନ୍ଧନୀ ମଧ୍ୟରେ ଅତିବାହିତ ହୋଇ ଯାଇଥିଲା । ପୀତବାସ ବାବୁ ଲାଇଟ ବନ୍ଦ କରି ବିଛଣାରେ ପଡ଼ିଗଲେ । ଏବଂ କକ୍ଷର ଅନ୍ଧକାର ମଧ୍ୟରେ ଆଖି ଖୋଲି ସେ ଫେରିଗଲେ ପଚିଶ ବର୍ଷ ତଳକୁ, ବିବାହ ପରେ ସେ ନିଜ ସ୍ତ୍ରୀଙ୍କର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ନିଜ ପରିଚିତ ଓ ବନ୍ଧୁମାନଙ୍କ ସମ୍ମୁଖରେ ଗର୍ବ ଅନୁଭବ କରି ପାରୁଥିଲେ । ତାଙ୍କର ଇଚ୍ଛା ହୁଏ, ଗୀତାଙ୍କୁ ସାଙ୍ଗରେ ନେଇ ସିନେମା ଯାଆନ୍ତେ, ବନ୍ଧୁମାନଙ୍କ ସହିତ ଆଳାପ କରନ୍ତେ; ବନ୍ଧୁମାନଙ୍କୁ ଘରକୁ ଡ଼ାକନ୍ତେ ଏବଂ ବନ୍ଧୁମାନେ ନିଜ ଘରକୁ ଆସିଲେ ଗୀତା ସେମାନଙ୍କୁ ଚା' ପରିବେଷଣ କରନ୍ତେ । କିନ୍ତୁ ବାପା ମା' ଦୁହେଁ ଏସବୁ ପସନ୍ଦ କରନ୍ତି ନାହିଁ । ତେଣୁ ସେ ଉପରୋକ୍ତ କୌଣସି ପ୍ରକାରର ରୋମାଞ୍ଚ କେବେ ଅନୁଭବ କରି ପାରିଲେ ନାହିଁ ।

ତା' ପରର ବର୍ଷଗୁଡ଼ାକ ନିଜ ସନ୍ତାନମାନଙ୍କୁ ମଣିଷ କରୁ କରୁ କେତେବେଳେ ଯେ ବିତିଗଲା ଏବଂ ସେ ବୁଢ଼ା ହୋଇଗଲେ, ତା' ସେ ନିଜେ ମଧ୍ୟ ଜାଣି ପାରିଲେ ନାହିଁ । ତାଙ୍କ ମନର କୋମଳତା ଉପରେ ଏକ ଲୌହ ଆବରଣ ସେ ନିଜେ ନିଜ ହାତରେ ଦେଇ, ଏକ ଯାନ୍ତ୍ରିକ ମଣିଷ ହୋଇ-ପଡ଼ିଲେ । ଯିଏ କେବଳ ନିଜ ପରିବାରର ପରିଧି ମଧ୍ୟରେ ନିଜର ବ୍ୟକ୍ତିତ୍ୱକୁ ଅକ୍ଷୁର୍ଣ୍ଣ ରଖିପାରେ, ଯିଏ କେବଳ ନିଜ ପରିବାର ବାହାରେ ଅନ୍ୟମାନଙ୍କ ସମ୍ମୁଖରେ ପୋଷା ବିଲେଇ ପରି ମ୍ୟାଉଁ ମ୍ୟାଉଁ କରିପାରେ । ଅତୀତରେ

ଦେଖିଥିବା ସମସ୍ତ ସ୍ୱପ୍ନ, କଳ୍ପନା କୁଆଡ଼େ ଯେ ଗଲା, ତା' ସେ ନିଜେ ମଧ୍ୟ ଜାଣି ପାରିଲେ ନାହିଁ । ମନେ ରହିଲା କେବଳ ନିଜ ଘର, ରେଶନ ଦୋକାନ ଏବଂ ଅଫିସ ଓ ଅଫିସର ।

ପ୍ରଥମେ ଯେତେବେଳେ ମଥାର କେଶଗୁଡ଼ାକ ବୟସର ଗତି ସହିତ ମିଶି ବିଦ୍ରୋହ ଆରମ୍ଭ କରି ନିଜ ରଙ୍ଗ ପରିବର୍ତ୍ତନ କଲେ, ସେତେବେଳେ ଗୀତା ଖୁବ୍ ମନଯୋଗ ସହକାରେ ଉକ୍ତ ଧଳା କେଶଗୁଡ଼ାକୁ ବାଛି ବାଛି ଓପାଡ଼ି ଦେଇ ତାଙ୍କୁ ଯୁବକ କରିଦେବାପାଇଁ ବ୍ୟର୍ଥ ଚେଷ୍ଟା କରୁଥିଲେ । ହେଲେ ଧୀରେ ଧୀରେ ଆଉ ସମସ୍ତ କେଶ ରଙ୍ଗ ପରିବର୍ତ୍ତନ କଲେ ଏବଂ ସେ ପ୍ରକୃତରେ ବୁଢ଼ା ହୋଇଗଲେ । ଅବଶେଷରେ ସରକାର ମଧ୍ୟ ତାଙ୍କ ହାତରେ ବୃଦ୍ଧତ୍ୱର ପ୍ରମାଣପତ୍ର ଧରାଇ ଦେଇ ବିଦାୟ ଦେଇଦେଲେ । କିନ୍ତୁ ଗୀତା କାହିଁକି କେଜାଣି ବୁଢ଼ୀ ହୋଇ ପାରିନାହାନ୍ତି । ପଚିଶ ବର୍ଷ ତଳେ ଯେମିତି ଥିଲେ, ଆଜି ମଧ୍ୟ ଠିକ୍ ସେଇମିତି । ବୟସ କୌଣସି ପ୍ରକାରର ପ୍ରଭାବ ପକାଇ ପାରିନାହିଁ । ବଡ଼ଝିଅ ସୁପ୍ରଭାକୁ ଗୀତା ପାଖରେ ଠିଆକଲେ, ଦୁହେଁ ଦୁଇ ଭଉଣୀ ପରି ଦେଖାଯିବେ ।

ତାଙ୍କୁ ଲାଗିଲା ଯେମିତି ବୟସ ତାଙ୍କ ସହ ଶତ୍ରୁତା କରିଛି । ସେ ଏକା କେମିତି ବୁଢ଼ା ହୋଇଗଲେ···ସେ ଭାବିଲେ । ଖୁବ୍ ଅବଶୋଷ ହେଲା ମନରେ ଭାବିଲେ, ଜୀବନଟା ଏକବାରେ ନୀରସରେ ବିତିଗଲା । ହୋପଲେସ୍ ! ଟିକେ ମଧ୍ୟ ରୋମାଞ୍ଚ ନାହିଁ । ପୂରା ରୁଟିନବନ୍ଧା ଯାନ୍ତ୍ରିକ ଜୀବନ !

ଦୀର୍ଘ ତିରିଶ ବର୍ଷ ତଳେ ମାତ୍ର ଶହେ ଦଶଟଙ୍କା ଦରମାରେ ସେ ନିଜ ଚାକିରି ଜୀବନର ଆରମ୍ଭ କରିଥିଲେ । ତାହା ବଢ଼ି ବଢ଼ି ଅବସର ନେଲା ପର୍ଯ୍ୟନ୍ତ ସାତଶରେ ପରିଣତ ହୋଇଛି । କିନ୍ତୁ ଲାଭ କିଛିନାହିଁ । ସେ ଭାବିଲେ । ସେତେବେଳେ ସେଇ ଶହେ ଦଶଟଙ୍କାରେ ସେ ଯେତେ ଆନନ୍ଦରେ ରହିପାରୁଥିଲେ ତା'ର ଏକଚତୁର୍ଥାଂଶ ଶାନ୍ତି ବର୍ତ୍ତମାନ ସେ ପାଇପାରୁ ନାହାନ୍ତି । ଏତେ ଟଙ୍କା ଦରମା ପାଇ ମଧ୍ୟ । ସେ ଚିନ୍ତା କଲେ । ସବୁ ଜିନିଷର ଦର ବୃଦ୍ଧି ପାଇ ଚାଲିଛି । ଦରମା ଯେତେ ବୃଦ୍ଧି ପାଇଛି, ତା' ଅପେକ୍ଷା ସମସ୍ତ ନିତ୍ୟବ୍ୟବହାର୍ଯ୍ୟ ଜିନିଷର ଦାମ ଅନେକ ପରିମାଣରେ ବୃଦ୍ଧି ପାଇ ଚାଲିଛି । ଏଥିରେ ମଣିଷ ବଞ୍ଚିବ କିପରି ? ସେ ଦୀର୍ଘନିଶ୍ୱାସ ତ୍ୟାଗକଲେ । ମୋର ଆଉ ଚିନ୍ତା କଅଣ ? ଦୁଇଜଣ ଓ ଚାକିର ପିଲା···ସର୍ବମୋଟ ତିନିଜଣ ଲୋକ । ପେନସନ ଟଙ୍କାରେ ଚଳିବା ପାଇଁ କିଛି କଷ୍ଟ ହେବନାହିଁ ।

ଏବଂ ସେଇ ଅନ୍ଧାର ମଧ୍ୟରେ ସେ ହସିଲେ, ସବୁକିଛୁ ପାଇଥିବା ଏକ ସୁଖି ବ୍ୟକ୍ତିର ପ୍ରଶାନ୍ତ ହସପରି । ଦୂର ପୋଲିସ ଲାଇନରେ ଘଡି ଗୋଟାଏ ହେବାର ସଙ୍କେତ ସେ ଅସ୍ପଷ୍ଟ ଭାବେ ଶୁଣିପାରିଲେ ଏବଂ ନିଶ୍ଚିନ୍ତରେ ଶୋଇବା ପାଇଁ ଚେଷ୍ଟାକଲେ ।

ସକାଳୁ ପୀତବାସ ବାବୁ ଖୁବ୍ ପ୍ରଫୁଲ୍ଲ ଥିଲେ । ଗତରାତିର ସମସ୍ତ ଅସଲଗ୍ନ ଅସଂଯତ ଚିନ୍ତା ସତ୍ତ୍ୱେ ସେ ବେଶ୍ ପ୍ରଫୁଲ୍ଲ ଦେଖା ଯାଉଥିଲେ । କକ୍ଷରୁ ବାହାରି ବାରଣ୍ଡାରେ ଠିଆହୋଇ ଦୁଇବାହୁ ଉତ୍ତୋଳନ ପୂର୍ବକ ଅଳସ ଭାଙ୍ଗିଲେ । ଏଥର ସେ ମୁକ୍ତ···ଭସା ବାଦଲପରି···ଆକାଶରେ ଉଡ଼ୁଥିବା ପକ୍ଷୀପରି । ଆଉ କୌଣସି ପ୍ରକାରର ବନ୍ଧନ ତାଙ୍କୁ ବାନ୍ଧି ପାରିବ ନାହିଁ । ଅବସର ମାନେ ବିଶ୍ରାମ, ଦୀର୍ଘ ପଞ୍ଚାବନ ବର୍ଷ ଧରି ଯେଉଁ ପରିଶ୍ରମ ସେ କରି ଆସୁଥିଲେ, ଏଇ ବୟସରେ ପହଞ୍ଚିବା ପାଇଁ, ତା'ର ଅବସାନ ଘଟିଛି । ଏଥର ସେ ମୁକ୍ତ । ସେ ହଠାତ୍ ଅନୁଭବ କଲେ, ଘରର ଚତୁର୍ଦ୍ଦିଗରେ ଅସମ୍ଭବ ନୀରବତା । ସେ ଆଶ୍ଚର୍ଯ୍ୟ ହେଲେ ମଧ୍ୟ ନିର୍ଲିପ୍ତ ହେବାର ଚେଷ୍ଟାକରି ଧୀର ପଦକ୍ଷେପରେ ବଗିଚା ଉଦ୍ଦେଶ୍ୟରେ ଆଗେଇ ଗଲେ ।

ବଗିଚାରେ ପହଞ୍ଚି ସେ ଚତୁର୍ଦ୍ଦିଗ ନିରୀକ୍ଷଣ କଲେ । ଯତ୍ନ ଅଭାବରୁ ବଗିଚାଟି ନଷ୍ଟ ହୋଇଗଲାଣି । ନିଜ ସନ୍ତାନମାନଙ୍କ କଥା ମନେପଡ଼ିଲା । ସୁପ୍ରଭା, ନରେଶ ଓ ଅରୁଣା । ସେମାନେ କେତେ ଯତ୍ନ ନେଉଥିଲେ ଏଇ ବଗିଚାର । ଅନ୍ତତଃ ସନ୍ଧ୍ୟାରେ କ୍ଳାନ୍ତ ହୋଇ ଅଫିସରୁ ଫେରିଲେ, ଏଇ ବଗିଚାର ମନମୋହକ ବାତାବରଣ ତାଙ୍କ କ୍ଳାନ୍ତ, ଅବସାଦଭରା ମନରେ ଅନେକଟା ଫୁର୍ତ୍ତି ଆଣି ଦେଉଥିଲା । ସୁପ୍ରଭା ନିଜ ସ୍ୱାମୀ ସହ ଦିଲ୍ଲୀରେ । ନରେଶ କାନପୁରରେ ଏବଂ ଅରୁଣା କଳାହାଣ୍ଡିରେ । ସେ ଦୀର୍ଘନିଃଶ୍ୱାସ ତ୍ୟାଗକଲେ । ନିଜେ ଅନେକ କଷ୍ଟ ସହିଛନ୍ତି, କିନ୍ତୁ ଏତିକି ସାନ୍ତ୍ୱନା ଯେ ନିଜ କୃଚ୍ଛ୍ରର ଜୀବନ ମଧ୍ୟରେ ନିଜର ସନ୍ତାନମାନଙ୍କୁ ଉଚିତ ଶିକ୍ଷା ଦେଇ, ସେମାନଙ୍କୁ ମଣିଷ କରାଇ ଦେଇଛନ୍ତି । ଆଜି ସେମାନେ ପ୍ରତ୍ୟେକ ନିଜ ନିଜ ପରିବାର ନେଇ ସୁଖି । ନରେଶ ଅନେକ ଥର ଟଙ୍କା ପଠାଇଛି । କିନ୍ତୁ ପୀତବାସ ବାବୁ ଫେରାଇ ଦେଇ ତାକୁ ଲେଖିଛନ୍ତି କେବେ ଟଙ୍କା ନ ପଠାଇବାକୁ । ସେ କେବେ ନିଜ ସନ୍ତାନମାନଙ୍କ ଉପରେ ବୋଝ ହେବାକୁ ଚାହାଁନ୍ତି ନାହାଁନ୍ତି । ସେ ତାଙ୍କ କର୍ତ୍ତବ୍ୟ କରିଛନ୍ତି । ଏଥର ସେମାନେ ତାଙ୍କର କର୍ତ୍ତବ୍ୟ କରିବେ ।

ସେ ଅସୁସ୍ଥ ହେଲେ । ବଗିଚାର ନଷ୍ଟଭ୍ରଷ୍ଟ ବାତାବରଣରେ ଠିଆହୋଇ ସେ ପୁନର୍ବାର ଚତୁର୍ଦ୍ଦିଗକୁ ଦୃଷ୍ଟିପାତ କଲେ । ଏଠାରେ ଏକଦା ଏକ ସୁନ୍ଦର

ବଗିଚା ଥିଲା, ଏକଥା କିଏ ବିଶ୍ୱାସ କରିବ ? ସେ ଭାବିଲେ, ନରେଶ ଓ ଅରୁଣାର ବିବାହ ପରେ ଆଜି କେହି ଏ ବଗିଚା କଥା କେବେ ଭାବି ନାହାନ୍ତି । ଅନେକ ଥର ଅଫିସରୁ ଫେରି ପୀତବାସ ବାବୁ ବଗିଚାର ଯତ୍ନ ନେବାପାଇଁ ଭାବନ୍ତି । ହେଲେ ଅଫିସ ଫେରନ୍ତା ତାଙ୍କ କ୍ଳାନ୍ତ ମନ ଏବଂ ରୁଟିନ୍‌ବନ୍ଧା ଜୀବନ ମଧ୍ୟରୁ ଖୋଜି ଖୋଜି ସେ ଟିକେ ବି ସମୟ ପାଆନ୍ତି ନାହିଁ, ଯେଉଁ ସମୟରେ ସେ ବଗିଚା ପ୍ରତି ନିଜ ପ୍ରତି କିମ୍ବା ନିଜ ଚତୁଃପାର୍ଶ୍ୱର ବାତାବରଣ ପ୍ରତି ଦୃଷ୍ଟିପାତ କରିବେ ଅଥବା ଯତ୍ନ ନେବେ ।

ସେ ମନେ ମନେ ନିଷ୍ପତ୍ତି କଲେ, ଏଥର ବଗିଚା ପ୍ରତି ଯତ୍ନ ନେବାକୁ ପଡ଼ିବ ଏବଂ ସନ୍ଧ୍ୟାରେ ଫୁଲଗଛମାନଙ୍କ ଗହଣରେ ଚେୟାର ଉପରେ ଉପବିଷ୍ଟ ରହି ଅବସର ଜୀବନର ମଧୁରତାକୁ ଉପଭୋଗ କରିବେ ।

"ହାଲୋ ପୀତବାସ ।"

"କିଏ ?" ପୀତବାସ ବାବୁ ନିଜ ଭାବନା ମଧ୍ୟରୁ ବାହାରି ସଂଯତ ହୋଇ ବୁଲି ଲକ୍ଷ୍ୟକଲେ । ନଟବର ଦାସ, ତାଙ୍କ ପଡ଼ୋଶୀ ଏବଂ ତାଙ୍କର ତିନିମାସ ପୂର୍ବରୁ ଅବସର ଗ୍ରହଣ କରିଥିବା ସହକର୍ମୀ, ତାଙ୍କ ଫାଟକ ନିକଟରେ ଠିଆହୋଇ ହାତ ହଲାଇ ହସୁଥିଲେ । ଅବସର ଜୀବନର ପ୍ରଥମ ପ୍ରଭାତରେ ନିଜର ଏକ ପୁରାତନ ବନ୍ଧୁଙ୍କ ଉପସ୍ଥିତି ତାଙ୍କୁ ଆହୁରି ଟିକେ ପ୍ରଫୁଲ୍ଲ କରି-ଦେଲା । ସେ ଫାଟକ ନିକଟକୁ ଆଗେଇ ଗଲେ ଦ୍ରୁତ ଗତିରେ । "ଏତେ ସକାଳୁ କୁଆଡ଼େ ଚାଲିଲ ନଟବର ? ଆସ କପେ କପେ ଚା' ହେବ···ସାମାନ୍ୟ ଗପ···।" ପୀତବାସ ବାବୁ ହସି ନିଜ ବନ୍ଧୁଙ୍କୁ ସ୍ୱାଗତ ଜଣାଇଲେ ।

"ନାହିଁ ଭାଇ । ମୁଁ ନିଜ ଧନ୍ଦାରେ ଯାଉଛି । ପରେ ସମୟ ଦେଖି ଆସିବି ।"

ପୀତବାସ ଆଶ୍ଚର୍ଯ୍ୟ ହେଲେ, ଅବସର ପରେ ନଟବରର ପୁନର୍ବାର କି କାମ, ସେ ତାହା ବୁଝି ପାରିଲେ ନାହିଁ । ତେଣୁ ନିଜ ଉତ୍ସୁକତାକୁ ପ୍ରକାଶ କରିବାକୁ ବାଧ୍ୟ ହେଲେ, "ତୁମର ପୁଣି କି କାମ ?"

ନଟବର ହସିଲେ । ପୀତବାସ ବାବୁଙ୍କ କାନ୍ଧରେ ହାତରଖି କହିଲେ, "ତୁମର କିଛି ଚିନ୍ତା ନାହିଁ ପୀତବାସ । ତେଣୁ ତୁମେ ଆଶ୍ଚର୍ଯ୍ୟ ହେଉଛ । କିନ୍ତୁ ମୋର ବିଧବା ଭଉଣୀର ତିନୋଟି ସନ୍ତାନ ମୋରି ଆଶ୍ରାରେ ପଳୁଛନ୍ତି । ତାଙ୍କ ପାଇଁ ମୋତେ କିଛି କରିବାକୁ ପଡ଼ିବ । ତେଣୁ ଏଇ ନିକଟ ଏକ ପ୍ରାଇଭେଟ କମ୍ପାନୀରେ ହିସାବପତ୍ର ଦେଖାଦେଖି କରୁଛି । ସାମାନ୍ୟ କିଛି ମିଳିଯାଉଛି । ବଡ଼

ପୃଥିବୀରେ ଏ ଯାଏଁ କିଛି କାମ ମିଳିଲା ନାହିଁ । ମୁଁ ଆଉ କଅଣ କରିବି ? ଯେତେଦିନ ପର୍ଯ୍ୟନ୍ତ ଜୀବନ ଅଛି, ଶକ୍ତି ଅଛି, ସେ ପର୍ଯ୍ୟନ୍ତ ପରିଧିର କଡ଼େ କଡ଼େ ଧାଉଁଥିବି । ଅନନ୍ୟୋପାୟ ନାହିଁ ପୀତବାସ ।'' ଶେଷ ବେଳକୁ ନଟବର କଣ୍ଠ ଭାରିହୋଇ ଆସିଲା ।

ପୀତବାସ ଭାବିଲେ, ନଟବର ଠିକ୍ କହୁଛି । କିନ୍ତୁ ତା' ମୋ ମଧ୍ୟରେ ଅନେକ ପାର୍ଥକ୍ୟ । ହଠାତ୍ ନଟବର ପାଇଁ ତାଙ୍କ ମନରେ ସହାନୁଭୂତି ଜନ୍ମିଲା । କିନ୍ତୁ ମୁହଁ ଖୋଲି କିଛି କହିପାରିଲେ ନାହିଁ । ନଟବର ପୁନର୍ବାର ହସିଲେ । କହିଲେ, ''ଆମ ଜୀବନଟା ଏଇପରି ପୀତବାସ ! ଦାରିଦ୍ର୍ୟର ସମାପ୍ତି କେବଳ ମୃତ୍ୟୁ ପରେ ହିଁ ହୋଇପାରିବ । ତା' ପୂର୍ବରୁ ନୁହେଁ । ଆଉ ଆଜିକାଲି ଯାହା ହେଲାଣି, ଆମେ ଦିନେ ଭୋକ ଉପାସରେ ହିଁ ମରିଯିବା ।''

ପୀତବାସ ପୁନର୍ବାର ଆଶ୍ଚର୍ଯ୍ୟ ହେଲେ । ନଟବର ନିଜ ହାତରେ ଧରିଥିବା ସମ୍ବାଦପତ୍ରଟିକୁ ତାଙ୍କ ହାତକୁ ବଢ଼େଇ ଦେଇ କହିଲେ, ''ନିଅ ପଢ଼ ପୀତବାସ ଆଉ ଦଶବର୍ଷ ପରେ ତୁମକୁ ଖାଇବା ପାଇଁ କିଛି ମିଳିବ ନାହିଁ । ମୋର କିନ୍ତୁ ଚିନ୍ତା ନାହିଁ । ଦଶବର୍ଷ ପର୍ଯ୍ୟନ୍ତ ମୁଁ ବଞ୍ଚୁ ନାହିଁ ।'' କଥା ବନ୍ଦକରି ନଟବର ପୁନର୍ବାର ହସିଲେ ଏବଂ ବିଦାୟ ନେଇ କଳା ଅଙ୍କାବଙ୍କା ରାସ୍ତାରେ ଲୁଚିଗଲେ ।

ଭାରାକ୍ରାନ୍ତ ମନରେ ବଗିଚାରୁ ଘର ଭିତରକୁ ଦୁଇ ହାତ ପିଠିରେ ବାନ୍ଧି ଧୀର ପଦକ୍ଷେପରେ ପୀତବାସ ବାବୁ ପ୍ରବେଶ କଲେ । ଦ୍ୱାରବନ୍ଧରେ ଠିଆହୋଇ ନଟବର ଦେଇଥିବା 'ଷ୍ଟେଟସ୍ମ୍ୟାନ୍' ଖୋଲିଲେ । ପ୍ରଥମ ପୃଷ୍ଠାରେ ସମ୍ବାଦ ମହାରାଷ୍ଟ୍ରରେ ଜନତା ଖାଇବା ଜିନିଷ ଲୁଟିନେଲେ । ପୀତବାସ ବାବୁ କ୍ରୋଧ ହୋଇ କହି ଉଠିଲେ, ''ଏ ଶଳା ସରକାର ଆମକୁ ମାରିଦେବ । ସେ ଶଳା ବିପ୍ଳବ ହେଲେ ଆସନ୍ତା ।''

ଘର ପୂର୍ବପରି ନିସ୍ତବ୍ଧ । ସେ ଚକିତ ହୋଇ ଉଠିଲେ । ତାଙ୍କ ଆଖି ବାଁ ପଟ କାନ୍ଥ ଓ ଛାତ ଉପରେ ବୁଲି ଆସିଲା । ଘର କାନ୍ଥରୁ ଚୁନ ପଲସ୍ତରା ଝଡ଼ି ଖଣ୍ଡିଆ ହୋଇ ଗଲାଣି । ଭାବିଲେ, ପ୍ରୋଭିଡେଣ୍ଟ ଫଣ୍ଡରୁ ଯାହା କିଛି ଟଙ୍କା ମିଳିବ, ସେଥିରେ ପ୍ରଥମେ ଏ ଘରଟାକୁ ଭଲଭାବେ ମରାମତି କରିବାକୁ ପଡ଼ିବ ।

ସେ ପୁନର୍ବାର ଚକିତ ହୋଇ ଉଠିଲେ । ଗୃହର ପିଲାଙ୍କର ଶବ୍ଦ ନାହିଁ । ସକାଳୁ ତା'ର ଚା' ଦେବା କଥା । ଗୀତାଙ୍କର ଏତେଟା ଭୁଲ ହେବା କଥା ନୁହେଁ, ଯଦିବା ସେ ଅବସର ନେଲେଣି ତଥାପି ଅଭ୍ୟାସଟା ତ ଗୃହିଣୀ ସହିତ ଚାଲିଯାଇନି ସେ ସାମାନ୍ୟ ବିରକ୍ତ ହୋଇ ଗୀତାଙ୍କୁ ଡାକିଲେ ।

"ଇଆଡ଼େ ଆସ !" ଗୀତା ସେପଟେଇ ଘରୁ ଉତ୍ତର ଦେଲେ ।

ପୀତବାସ ବାବୁ ସମ୍ବାଦପତ୍ର ହାତରେ ଧରି ସେପାଇ ଘର ଭିତରକୁ ପଶିଗଲେ । ଗୀତା ଦେବୀ ନିଜ ଗତାନୁଗତିକ କାର୍ଯ୍ୟରେ ବ୍ୟସ୍ତଥାନ୍ତି । ପୀତବାସ ବାବୁ ପିଢ଼ା ଉପରେ ବସି ଗୀତାଙ୍କୁ ଲକ୍ଷ୍ୟକଲେ । ଗୀତା ଦେବୀ ଥରେ ତାଙ୍କୁ ଅନେଇଲେ ଏବଂ ତା' ପରେ ହସି ମୁହଁ ତଳକୁ କଲେ । ପୀତବାସ ବାବୁଙ୍କ ଦେହ ଶୀତେଇ ଉଠିଲା । ହଠାତ୍ ତାଙ୍କର ମନେ ପଡ଼ିଗଲା ତିରିଶ ବର୍ଷ ତଳର କଥା । ଯେତେବେଳେ ସେ ନୂଆ ବାହା ହୋଇଥିଲେ ଏବଂ ଏଇପରି ଗୀତା ଦେବୀଙ୍କ ପାଖରେ ବସି ତାଙ୍କୁ ଦେଖୁଥିଲେ । ସେ ମଧ୍ୟ ହସି ଉଠିଲେ ।

"ଗୋଟାଏ କଥା ଜାଣିଛ ?" ଗୀତା ମୁହଁ ତଳକୁ କରି ହସିଲେ ।

"କେଉଁକଥା ?" ପୀତବାସ ବାବୁ କୌତୂହଳୀ ହୋଇ ଉଠିଲେ ।

ଗୀତା ଦେବୀ ପୀତବାସ ବାବୁଙ୍କ କାନ ନିକଟକୁ ମୁହଁ ଆଣି ଫୁସ୍‌ଫାସ୍ ହୋଇ କହିଦେଇ ପରମୁହୂର୍ତ୍ତରେ ଦୂରକୁ ଘୁଞ୍ଚିଗଲେ । ପୀତବାସ ବାବୁଙ୍କ ହାତରୁ ସମ୍ବାଦପତ୍ରଟି ଖସି ପଡ଼ିଲା ଏବଂ ସେ ଆଶ୍ଚର୍ଯ୍ୟରେ ମୁହଁ ଖୋଲି ଗୀତାଙ୍କୁ ଅନେଇ ରହିଲେ ବୋକାଙ୍କ ପରି ।

"ଏଇଟା କେମିତି ହେଲା ?" ସେ ଗଳା ସଫାକରି ଗୀତା ଦେବୀଙ୍କୁ ପ୍ରଶ୍ନକଲେ ।

"ତମେ କ'ଣ କମ୍ ଜାଣିଛ ? ସେଦିନ ମୁଁ ତ ମନା କରୁଥିଲି । ଏ ବୟସରେ ତମକୁ.... । ଆଉରି ଯେମିତି ବୟସ ମାଡ଼ି ଆସୁଛି ତମର ।" ଗୀତା ଦେବୀ ମୁହଁରେ ଶାଢ଼ୀ ପଣତ ଚାପି ହସୁଥିଲେ ।

"ତମକୁ ହସ ଲାଗୁଛି, ପିଏ ଶୁଣିବ କ'ଣ କହିବ ଜାଣିଛ ? ଅରୁଣାର ଗତ ମାସରେ ଝିଅ ହୋଇଛି । ସୁପ୍ରଭାର ତିନୋଟି ପିଲା ହେଲେଣି । ସେମାନେ ଶୁଣିଲେ...... ।" ପୀତବାସ ବାବୁଙ୍କ ମୁଣ୍ଡ ଚିନ୍ତାରେ ଭାରାକ୍ରାନ୍ତ ହୋଇ ଉଠିଲା । ଅଳ୍ପ ସମୟ ପୂର୍ବରୁ ସେ ଯେଉଁ ଚିନ୍ତାମୁକ୍ତ ଜୀବନଯାପନ କରିବା ପାଇଁ ନିଜକୁ ପ୍ରସ୍ତୁତ କରିଥିଲେ, ତାହା ଯେପରି କ୍ଷଣକ ମଧ୍ୟରେ ପାଣିଫୋଟକା ପରି ବାୟୁରେ ମିଳେଇଗଲା ଏବଂ ସେ ପୁନର୍ବାର ଏକ ଦାୟିତ୍ୱର ଜାଲ ମଧ୍ୟରେ ଛନ୍ଦି ହୋଇ ପଡ଼ିଲେ । ଯେଉଁଥିରୁ ସେ କେବେ ବାହାରି ପାରିବେ ନାହିଁ । ଜୀବନସାରା ତାଙ୍କୁ ଏଇପରି ଦାୟିତ୍ୱରେ ବୋଝ ମୁଣ୍ଡାଇ ଚାଲିବାକୁ ପଡ଼ିବ ।

"ମୁଁ ତ ତମକୁ ବାରମ୍ବାର ମନା କରୁଥିଲି ।" ଗୀତା ସବୁ ଦୋଷ ତାଙ୍କ ଉପରେ ଲଦି ଦେଇ ତଥାପି ବି ହସୁଥିଲେ ।

"କେତେ ଦିନ ହେଲାଣି ?" ପୀତବାସ ବାବୁ ଗୀତାଙ୍କ ସହ ଆଖି ନ ମିଳାଇ ପ୍ରଶ୍ନକଲେ ।

"ଚାରିମାସ ।" ଗୀତା ନିର୍ଲିପ୍ତ ରହି ଉତ୍ତର ଦେଲେ ।

"ମୁଁ କହୁଥିଲି ଲୁପ୍ ଲଗାଇ ନିଅ । ମୋ କଥା ଶୁଣିଲ ନାହିଁ । ଏଥର··· ।" ପୀତବାସ ବାବୁ କହିଲେ ଏବଂ ସମ୍ବାଦପତ୍ରକୁ ହାତରେ ଧରି ବାରଣ୍ଡାକୁ ଚାଲି ଆସିଲେ ।

ତାଙ୍କ ଆଖି ଆଗରେ ଏକ ଶିଶୁ ଏବଂ ତାକୁ ମଣିଷ କରିବାର ଦାୟିତ୍ୱ ତାଙ୍କର ଉପରେ ନ୍ୟସ୍ତ । ଦୀର୍ଘଦିନର ଚାକିରି ଜୀବନରେ ସଞ୍ଚୟ ବୋଲି ଜିନିଷ-ଟିର ସେ ନାଁ ମଧ୍ୟ ଜାଣିବାକୁ କେବେ ସୁଯୋଗ ହିଁ ପାଇ ନାହାନ୍ତି । ଯାହା ଆଣିଛନ୍ତି, ଯାହା ପାଇଛନ୍ତି, ସବୁ ଖର୍ଚ୍ଚ କରି ଦେଇଛନ୍ତି । ଏଥର ଆଉ ପାଞ୍ଚ ଛଅ ମାସ ପରେ ଯେଉଁ ଆଗନ୍ତୁକଟି ତାଙ୍କ ପରିବାର ମଧ୍ୟରେ ପ୍ରବେଶ କରିବ, ତା'ର ଉପଯୁକ୍ତ ଯତ୍ନ ମାତ୍ର ପେନସନର କେତୋଟି ଟଙ୍କାରେ ସେ କେମିତି ନେବେ ? ସେ ବ୍ୟତିବ୍ୟସ୍ତ ହୋଇ ଉଠିଲେ । ତାଙ୍କର ମନେ ପଡ଼ିଲା ନଟବର କଥା ଏବଂ ତାଙ୍କୁ ଲାଗିଲା ଯେମିତି ସେ ଏକ ଚକ୍ରବ୍ୟୂହ ମଧ୍ୟରେ ପଶି ଯାଇଛନ୍ତି, ଯାହା ମଧ୍ୟରୁ ସେ ମୃତ୍ୟୁ ପୂର୍ବରୁ ଚେଷ୍ଟାକରି ମଧ୍ୟ ବାହାରି ପାରିବେ ନାହିଁ ।

ସେ ସମ୍ବାଦପତ୍ରକୁ ଚାହିଁଲେ । ପ୍ରଥମ ପୃଷ୍ଠାରେ ଅନ୍ୟ ଏକ ସମ୍ବାଦ ଦଶହଜାର ଶିକ୍ଷିତ ବେକାର ଯୁବକ ମୁଖ୍ୟମନ୍ତ୍ରୀଙ୍କୁ ଚାକିରି ପାଇଁ ଘେରାଉ କଲେ । ସେ ସମ୍ବାଦପତ୍ରର ପୃଷ୍ଠା ଓଲଟାଇଲେ । ହଠାତ୍ ତାଙ୍କ ଆଖି 'ଓ୍ୱାଣ୍ଟେଡ଼୍ କଲମ'ରେ ଅଟକିଗଲା । ଏକ ପ୍ରାଇଭେଟ୍ ଫାର୍ମର ବିଜ୍ଞାପନ ।

ସେ ଦୀର୍ଘନିଃଶ୍ୱାସ ତ୍ୟାଗ କରି ବିଜ୍ଞାପନଟି ପଢ଼ିଲେ । ଅବସରପ୍ରାପ୍ତ ବ୍ୟକ୍ତିମାନଙ୍କ ପାଇଁ ଏକ ସୁଯୋଗ ସନ୍ଧ୍ୟାରେ ପାର୍ଟ ଟାଇମ କାମ । ସେ ନିଜକୁ ଟିକେ ହାଲୁକା ଅନୁଭବ କଲେ ଏବଂ ବେଡ଼୍ ରୁମରୁ କାଗଜ କଲମ ଆଣି ଉକ୍ତ ଫାର୍ମକୁ ଦରଖାସ୍ତ ଲେଖି ବସିଲେ । ସେତେବେଳକୁ ତାଙ୍କ ଆଖିରେ ଲୁହ ଭରି ଯାଇଥିଲା ।

●

(ଆଜିର ଗଳ୍ପ—୧୯୭୪)
ଓ. ଯୁ. ଲେ. ସ.

# ଶାଳା ଭୁର୍କୁଆଣ୍ଟା

ଦୀର୍ଘ ଛଅ ଘଣ୍ଟା ଧରି ଅବିନାଶ ଅସହ୍ୟ ମାନସିକ ଯନ୍ତ୍ରଣା ଭୋଗ କରୁଥିଲେ । ମାତ୍ର ଅଧଘଣ୍ଟା ବିଳମ୍ବରେ ଅଫିସ ପହଞ୍ଚିବା ଅପରାଧ ପାଇଁ ଏସ୍. ଡ଼ି. ଓ. ଯେ ଏତେ ଅପମାନ ତାଙ୍କୁ ଦେବେ, ତା' ସେ କେବେ ଭାବି ନ ଥିଲେ । କିନ୍ତୁ ସାମାନ୍ୟ ବିଳମ୍ବ ପାଇଁ ତାଙ୍କୁ ନିହାତି କଦର୍ଯ୍ୟ ଭାଷାରେ ଗାଳି ଶୁଣିବାକୁ ପଡ଼ିଲା । ଏସ୍. ଡି. ଓ. ତାଙ୍କୁ ଅପମାନ ଦେଇ 'ଏକ୍‌ସପ୍ଲାନେସନ ଡ଼ିମାଣ୍ଡ' କଲାପରେ ସେ ଅତ୍ୟନ୍ତ କ୍ଷୁବ୍ଧ ହୋଇ ନିଜ ଟେବୁଲ୍ ନିକଟକୁ ଫେରିଆସି ପ୍ରଥମ କ୍ଷଣରେ ଭାବିଥିଲେ, "ଶଳା ଏ ଚାକିରି ଛାଡ଼ିଦେବି, ଏମିତି ପଶୁ ପରି ରହିବା ଅପେକ୍ଷା ମରିଯିବା ବରଂ ଭଲ ।" ତା'ପରେ କୌଣସି କାମ ପ୍ରତି ଦୃଷ୍ଟି ନ ଦେଇ କେବଳ ଭିନ୍ନ ଭିନ୍ନ ଅସଂଯତ ଓ ଅସମ୍ଭବ କଥାମାନ ଭାବି ଭାବି ନିଜ ମନକୁ ସାନ୍ତ୍ୱନା ଦେବାକୁ ଚେଷ୍ଟା କରୁଥିଲେ । ସ୍ତର ସ୍ତର ହୋଇ କ୍ଷୋଭ, ଉତ୍ତେଜନା ଓ କ୍ରୋଧ ତାଙ୍କ ମନରେ ଜମାଟ ବାନ୍ଧୁଥିଲା ଏବଂ ସେ ଥରେ ଥରେ ଚାକିରି ଛାଡ଼ିଦେବା ପାଇଁ ନିଷ୍ପତ୍ତି କରି ଇସ୍ତଫା ଲେଖିବା ପାଇଁ କାଗଜ କାଢ଼ୁଥିଲେ । କିନ୍ତୁ ପର ମୁହୂର୍ତ୍ତରେ ହଠାତ୍ ଥଣ୍ଡା ହୋଇ ଦୀର୍ଘ ନିଃଶ୍ୱାସ ତ୍ୟାଗ କରୁଥିଲେ ।

ଅବଶେଷରେ ସମସ୍ତ ଅତିବାହିତ କରି ଅଫିସର ପରିଧି ମଧ୍ୟରୁ ବାହାରି ସେ ଲମ୍ବା ରାସ୍ତାକୁ ନିର୍ନିମେଷ ନୟନରେ ଚାହିଁଲେ । ନିଜ ପ୍ରତି ତାଙ୍କର ଘୃଣା ହେଲା । ଜୀବନରେ କଅଣ ଯେ ଚାହିଁଥିଲେ ଏବଂ ତାଙ୍କୁ ଅବଶେଷରେ ମିଳିଛି କଅଣ ? ଅନ୍ୟମାନଙ୍କର ଅପମାନର ପାତ୍ର ହୋଇ ବଞ୍ଚିବା ଅର୍ଥ କଅଣ ଜୀବନ ? ସେ ପୁନର୍ବାର ଉତ୍ତେଜିତ ହୋଇ ଉଠିଲେ । ଏହା ଅପେକ୍ଷା ବରଂ ଚାକିରି ଛାଡ଼ି ଦେଇ ଘରେ ବସିବାଟା ଶ୍ରେୟସ୍କର ।

ସେ ନିଜ ଅତୀତ ପ୍ରତି ଦୃଷ୍ଟିପାତ କଲେ । ତାଙ୍କର ମନେ ପଡ଼ିଲା ଦିନେ ସେ ବିପ୍ଳବ କରୁଥିଲେ, ଅନ୍ୟାୟ ବିରୁଦ୍ଧରେ ବିଦ୍ରୋହ କରୁଥିଲେ । ସେ

ମନେ ମନେ ହସିଲେ । ବିପ୍ଳବର ମୂଲ୍ୟ କିଛିନାହିଁ କିମ୍ବା ଅର୍ଥ ମଧ୍ୟ କିଛିନାହିଁ । କେବଳ ବହିରେ ଲେଖା ହୋଇଥିବା ଏକ ଶବ୍ଦ । ଯୁବକ ଥିଲାବେଳେ ପ୍ରତ୍ୟେକେ ବିପ୍ଳବ କରିଥାନ୍ତି ।

କିଏ ଜଣେ ତାଙ୍କ କାନ୍ଧରେ ହାତ ରଖି ହସି ଉଠିଲା । ଅବିନାଶ ବୁଲି ଲକ୍ଷ୍ୟକଲେ । ପଦ୍ମନାଭ, ତାଙ୍କ ସହକର୍ମୀ ପଛରେ ଠିଆହୋଇ ହସୁଛି । ସେ ବିବ୍ରତ ହୋଇ ପଡ଼ିଲେ । ପଦ୍ମନାଭକୁ ଦେଖିଲେ ତାଙ୍କୁ ଭୟ ଲାଗେ । ଏପରିକି ପଦ୍ମନାଭକୁ ସ୍ୱୟଂ ଅଫିସର ମଧ୍ୟ ଭୟ କରନ୍ତି । ଅବିବାହିତ ପଦ୍ମନାଭର କେହି ନାହାଁନ୍ତି । ତେଣୁ ସେ କାହାରିକୁ ଭୟ କରେନାହିଁ । କେହି ପଚାରିଲେ କୁହେ, "ଏ ଚାକିରି ଗଲେ ଅନ୍ୟ ଚାକିରି ମିଳିବ ଚିନ୍ତା କାହିଁକି ?" ଅବିନାଶ, ଏଇ ଗୋରା, ସାମାନ୍ୟ ସ୍ୱାସ୍ଥ୍ୟ ବିଶିଷ୍ଟ ମାର୍କସପନ୍ଥୀ ଯୁବକ ପଦ୍ମନାଭକୁ ଏପରି ଏକ କ୍ଷଣରେ ଦେଖିବା ପାଇଁ କେବେ ଚାହୁଁ ନ ଥିଲେ । କିନ୍ତୁ ଯେତେବେଳେ ସେ ତାକୁ ମନେ ମନେ ଭୟ କରନ୍ତି, ତେଣୁ ନିଜକୁ ସଯତ୍ନ ରଖି ହସିଲେ ।

"ଶୁଣିଲି ଆଜି ଏମ୍. ଡ଼ି. ଓ. ତୁମକୁ ଗାଳି ଦେଇ ଏକ୍ସପ୍ଲାନେସନ ମାଗିଛନ୍ତି ।" ସେ ପଚାରିଲା ହାତରେ ଜଳନ୍ତା ସିଗାରେଟ୍‌କୁ ଦୂରକୁ ଫିଙ୍ଗି ଦେଇ ।

ଅବିନାଶ ନୀରବରେ ମୁଣ୍ଡ ହଲାଇଲେ ।

"ବାଷ୍ଟାର୍ଡସ୍ ! ନିଜେ ଶଳା ବାରଟାରେ ଆସିବେ, କେହି ପଚାରିବାକୁ ନାହିଁ । ମୋତେ ଯଦି କହିଥାନ୍ତା, ତେବେ ଦେଖିଥାନ୍ତା...।"

ଅବିନାଶ ଆଶ୍ଚର୍ଯ୍ୟ ହେଲେ । ପଚାରିଲେ, "ତୁମେ କଅଣ କରିଥାନ୍ତ ?"

"ଦି'ପଦ ଶୁଣାଇ ଦେଇଥାନ୍ତି । ଦି'ଟା ଚଟକଣା ମାରିଥାନ୍ତି । ତା'ପରେ ଇସ୍ତଫା ଦେଇ ଚାଲି ଯାଇଥାନ୍ତି । ଆମେ ଶଳା ଏ ଅଫିସରମାନଙ୍କୁ କାହିଁକି ଭୟ କରିବା ?" ପଦ୍ମନାଭ ନିର୍ବିକାର ଭାବେ କହିଲା ।

ଅବିନାଶଙ୍କୁ ଟିକେ ଆରାମ ଲାଗିଲା । ପାଞ୍ଚ ଛଅଘଣ୍ଟା ଧରି ତାଙ୍କ ମନରେ ଜମାଟ ବାନ୍ଧି ରହିଥିବା ଉତ୍ତେଜନା ଓ କ୍ରୋଧ ବନ୍ୟାଜଳ ପରି ଟିକେ ଫାଙ୍କ ପାଇ ଦ୍ରୁତ ଗତିରେ ନିଷ୍କାସିତ ହେବାକୁ ଲାଗିଲା ଏବଂ ନିଜର ସମସ୍ତ ବ୍ୟଥା କିଛିଯାଏ ସେ ଆଖିରେ 'ଏଥର କଅଣ କରିବ'ର ଭାବ ନେଇ ଯେତେବେଳେ ପଦ୍ମନାଭକୁ ଅନେଇଲେ, ସେତେବେଳେ ପଦ୍ମନାଭ ତାଙ୍କ କାନ୍ଧରେ ହାତ ଆଣି

ଅତି ସହଜ ଓ ସଂଯତ କଣ୍ଠରେ କହିଲା, "ଗୃହକର ଗୁଣ୍ଡାଦଅ ଏବଂ କୋର୍ଟରେ କେଶ୍ ଫାଇଲ୍ କରିଦଅ । ଏସ୍. ଡ଼ି. ଓ. ବିରୁଦ୍ଧରେ ଅନେକ ପ୍ରମାଣ ମୋ ନିକଟରେ ଅଛି । କୋର୍ଟରେ ସବୁ ଉପସ୍ଥାପିତ କରି ତାକୁ ଯଦି ସସ୍‌ପେଣ୍ଡ ନ କରିଛି । ତେବେ ମୋ ନା ପଦ୍ମନାଭ ନୁହେଁ ।

ଉତ୍ତେଜନାର ଉକ୍ତ କ୍ଷଣରେ ଅବିନାଶଙ୍କୁ ପଦ୍ମନାଭର ଉପଦେଶ ଖୁବ୍ ଯୁକ୍ତିଯୁକ୍ତ ମନେହେଲା । ତେଣୁ ତା' ଅଣ୍ଟାରେ ହାତ ଦେଇ ସେ ତାକୁ ନିକଟ ଟି' ଦୋକାନକୁ ଟାଣି ନେଇଗଲେ ଏବଂ ଟି' ପିଇଲା ପରେ ପଦ୍ମନାଭ ଡାକିଲା ଏବଂ ସେ ନିଜ ଇସ୍ତଫାପତ୍ର ଲେଖି ଦସ୍ତଖତ କରି ପକେଟରେ ରଖି ଉଠି ଆସିଲେ ।



ଘରେ ପହଞ୍ଚି ଶୁଣିଲେ ସାନପୁଅର ଏକ୍‌ସିଡେଣ୍ଟ ହୋଇଯାଇଛି ଏବଂ ସ୍ତ୍ରୀ ତାକୁ ନେଇ ହସ୍‌ପିଟାଲ ଯାଇଛନ୍ତି । ସେ ମଥାରେ ହାତ ଦେଇ ଚିନ୍ତାମଗ୍ନ ହୋଇ ବସିଥିଲା ସମୟରେ ବଡ଼ପୁଅ ଆସି ପରୀକ୍ଷା ଫିସ୍ ଓ ବହି ପାଇଁ ଟଙ୍କା ମାଗିଲା । ସେ ମୁଣ୍ଡଟେକି ଥରେ ତାକୁ ଚାହିଁଲେ ଏବଂ ତାଙ୍କର ମନେ ପଡ଼ିଲା, ଗତକାଲି ସ୍ତ୍ରୀ କହିଥିଲା ଯେ ଘରେ ଚାଉଳ ଆଉ ଦିନକ ପାଇଁ ଅଛି । ଟେବଲ୍ ଉପରେ ଥିବା ସେ ଦିନର ଖବର କାଗଜ ଉପରେ ତାଙ୍କ ଆଖି ପଡ଼ିଗଲା । ବଡ଼ ବଡ଼ ଅକ୍ଷରରେ ଲେଖାଥିଲା, "ଚାଉଳ, ଗହମ ଓ ଚିନି ଦର ବଢ଼ିଗଲା ।"

ସେ ଆଖି ବନ୍ଦ କଲେ । ତାଙ୍କୁ ଲାଗିଲା ସେ ଯେମିତି ଅନ୍ଧ ହୋଇ ଯାଉଛନ୍ତି; ସେ ଯେମିତି ବୁଢ଼ା ହୋଇ ଯାଉଛନ୍ତି । ତାଙ୍କ ଆଗରେ ଧନପୁଅ ଓ ଦୁଇଝିଅ ଚଳଚିତ୍ର ପରି ଆସି ଠିଆହେଲେ ଏବଂ ରାଶନ୍ ଦୋକାନର ଭିଡ଼ରେ ତାଙ୍କ ସ୍ତ୍ରୀ ହାତରେ ବ୍ୟାଗ ଧରି ଲମ୍ବା ଲାଇନ୍‌ର ଶେଷରେ ଅକ୍‌କା ପାଦରେ ଆସି ଠିଆହେଲା ଏବଂ ସେ କର୍ମଯୋଗାଣ ସଂସ୍ଥାର ସମ୍ମୁଖରେ ଜମିଥିବା ଅସଂଖ୍ୟ ଜନତା ମଧ୍ୟରେ ହଜିଯାଇ 'ସ୍ଥାନ ଖାଲିନାହିଁ'ର ବୋର୍ଡ ପଢ଼ିବାକୁ ଆରମ୍ଭ କଲେ ।

ସେ ବିଚଳିତ ହୋଇ ଦୁଇ ପାପୁଲିରେ ମୁଣ୍ଡକୁ ଚାପି ଧରି ପାଟିକଲେ, "ହୁଅର କମହ୍ ଦ' ରେଭୁଲେସନ୍ !"

ତାଙ୍କ ମନରୁ ରେଜିଗ୍‌ନେଶନ୍ ଏବଂ କେଶ୍‌ର ସ୍ୱପ୍ନ ଦୂରେଇ ଗଲା । ଅଯଥାରେ ପଦ୍ମନାଭକୁ ହୋଟେଲରେ ଚା' ଖୁଆଇ ପଚିଶ ପଇସା ନଷ୍ଟ

କରିଥିବାର ଗ୍ଲାନି ତାଙ୍କୁ ବ୍ୟଥିତ କଲା । ସେ ପକେଟରୁ ଇସ୍ତଫା ପତ୍ରଟିକୁ ବାହାର କରି ଚିରି ଟିକ୍‌ଟିକ୍ କରି ଫିଙ୍ଗିଦେଲେ ଏବଂ ଏକ୍ସପ୍ଲାନେସନ ଲେଖି ବସିଲେ ଟେବଲ୍‌ରୁ ଖଣ୍ଡେ କାଗଜ ଉଠାଇ ।



ପରଦିନ ଅଫିସ ଶେଷରେ ପଦ୍ମନାଭ ଅନ୍ୟମାନଙ୍କୁ କହୁଥିଲା, ''ଅବିନାଶ ଶଳା ବୁର୍ଜୁଆଟା ।''



('ସ୍ୱର', ଜାନୁଆରୀ, ୧୯୭୪)

# ଛାଇମାନେ

ରାତି ଅଳସ ଭାଙ୍ଗୁଥିଲା । ଶୁକ୍ଳପକ୍ଷ ରାତିର ଜ୍ୟୋତ୍ସ୍ନା ସେମାନଙ୍କ ଶରୀରର ପ୍ରତ୍ୟେକ ଅଙ୍ଗରେ ଲିପ୍ଟେଇ ହୋଇ ଯାଇଥିଲା ଏକ କୁମାରୀ କନ୍ୟା ପରି । ସେମାନେ ଉକ୍ତ ଛକ ନିକଟରେ କ୍ଷଣେ ଠିଆହୋଇ କିଛି ଭାବିଲେ ଏବଂ ନିରୁଦ୍ଦିଷ୍ଟ ଭାବେ ଚାଲିବା ଆରମ୍ଭ କଲେ ।

ସେମାନେ ଚାଲୁଥିଲେ କୌଣସି ଲକ୍ଷ୍ୟ ନ ରଖି । କାରଣ କିଛିକ୍ଷଣ ପୂର୍ବେ ସେମାନେ ସହରର ଏକ ଉଜ୍ଜ୍ୱଳ ପରିବେଶ ମଧ୍ୟରେ ବସି ମଦ ପିଇ, ଜୀବନର ପ୍ରତ୍ୟେକ କ୍ଷଣକୁ ଉପଭୋଗ କରିବାର ଏକ ବ୍ୟର୍ଥ ଚେଷ୍ଟା କରି ଜ୍ୟୋତ୍ସ୍ନା ଉପଭୋଗ କରିବାପାଇଁ, ରାତିର ନିସ୍ତବ୍ଧ ପ୍ରହରରେ ଚାଲିବାପାଇଁ ନିଷ୍ପତ୍ତି କରିଥିଲେ । ତେଣୁ ସେମାନେ ଚାଲୁଥିଲେ । ଜ୍ୟୋତ୍ସ୍ନା ମଧ୍ୟ ତାଙ୍କ ସହ ଚାଲୁଥିଲା । ରାତିର ଅନ୍ଧାର ମଧ୍ୟ । ପଛରେ କେତୋଟି ବୁଲା କୁକୁର ଭୁକୁଥିଲେ । ସହର ଶୋଇଥିଲା । ରାତି ହସୁଥିଲା ଏବଂ ଉଦ୍ଭ୍ରାନ୍ତ ପବନ ବଉଳ ବାସ୍ନା ମଧ୍ୟରେ ଲୁଚିରହି ଉଙ୍କି ମାରି ଦେଖୁଥିଲା ଏହି ନବାଗନ୍ତୁକମାନଙ୍କୁ । ଶୀତ ନଦୀ ନିକଟରେ ପହଞ୍ଚି ସାରିଥିଲା । ନଦୀ ଆରପଟେ ମରୁଭୂମି ।

ସେମାନେ ହସୁଥିଲେ, ଗୀତ ଗାଉଥିଲେ ଏବଂ ଯୌବନକୁ ଉପଭୋଗ କରିବା ପାଇଁ ଜ୍ୟୋତ୍ସ୍ନା ସହିତ ପାଦ ମିଳେଇ ଚାଲୁଥିଲେ । ରାସ୍ତାର ବତୀଗୁଡ଼ାକ ନିଷ୍ପ୍ରଭ ଦେଖା ଯାଉଥିଲେ ।

ସହରକୁ ଅନେକ ପଛରେ ଛାଡ଼ି ଅନ୍ଧକାର ମଧ୍ୟରେ ପ୍ରବେଶ କରି ସାରିଥିଲେ ସେମାନେ ସେତେବେଳକୁ । ସହର କାନ୍ଦୁଥିଲା । ସେମାନେ ଚାଲୁଥିଲେ ।

ସେମାନେ ଇତିହାସର ଛାତ୍ର ନ ଥିଲେ । ତଥାପି ତାଙ୍କର ସନ୍ଧାନୀ ମନ ପ୍ରତ୍ୟେକ ପୁରାତନ ବସ୍ତୁର ଇତିହାସ ପାଇଁ ଅନୁସନ୍ଧିତ୍ସୁ ହୋଇ ଉଠିଥିଲା । ଏଇଠି ସେମାନେ ଅଟକିଗଲେ । "ହଁ !" ଜଣେ କହିଲା, "ଏଇଟାକୁ

ଦେଖ । ଭଲଭାବେ ଦେଖ···ଲକ୍ଷ୍ୟକର । ନିଶ୍ଚୟ କୌଣସି କାଳର କୌଣସି ଏକ ରାଜାଙ୍କ ଦେଓ୍ୱାନର ପ୍ରାସାଦ ଏଇଟା । ପ୍ରାସାଦ ଭାଙ୍ଗି ଯାଇଛି । କିନ୍ତୁ ଏଇ ଭଗ୍ନାବଶେଷ ମଧ୍ୟରୁ ଆମେ ଗ୍ଭଲ ରନ୍ଧ୍ର ଖୋଜିବା । ତୃଷିତ ଆତ୍ମାମାନଙ୍କୁ ମୁକ୍ତିଦେବା । ଏଇ ଭଗ୍ନାବଶେଷକୁ ପାଦରେ ଗୋଇଠା ମାରି ମାରି ତାହାର ସତ୍ତ୍ୱା ଲୋପ କରିଦେବା ।''

ହଠାତ୍ ସତେଜ ହୋଇ ଉଠିଲେ ପ୍ରତ୍ୟେକ । ଗୋଇଠା ମାରିବା ଆରମ୍ଭ କଲେ । ପାଦ ଥକି ପଡ଼ିଲା । ଭଙ୍ଗା ପଥରର ଅଟ୍ଟାଳିକା ଉଚ୍ଚ ସ୍ୱରରେ ହସି ଉଠିଲା । ଏମାନେ ଚିତ୍କାର କଲେ, ''ବନ୍ଦକର···ବନ୍ଦକର···ତୋର ଏ ହସ ।'' ଅଟ୍ଟାଳିକା ତଥାପି ହସୁଥାଏ । ସେ ନିର୍ବିକାର । ସେ ଜାଣିଛି—ସମସ୍ତ ବ୍ୟତୀତ ଆଉ କେହି ତାକୁ ଦୋହଲାଇ ପାରିବ ନାହିଁ । ଆଉ ଏ ମଣିଷ···ଏ ତ ନିଜେ ସମୟର କ୍ରୀତଦାସ ।

ନୀରବରେ ବିଦ୍ରୁପଭରା ସେ ହସକୁ ଏମାନେ ସହ୍ୟ କଲେ । ଥରେ ଆକାଶକୁ ଓ ଥରେ ମାଟିକୁ ଲକ୍ଷ୍ୟକଲେ । ତା'ପରେ କେତେକ ଦୀର୍ଘଶ୍ୱାସ । ପବନରେ କମ୍ପନ । ଶୀତର ବୁକୁରେ ସ୍ପନ୍ଦନ । ବୁଲା କୁକୁର ଦୁଇଟି କେଉଁଠି ପଛରେ ରହିଗଲେଣି କେତେବେଳୁ ।

ଜଣେ କିଏ ସିଗାରେଟ ଲଗାଇଲା । ଡିଆସିଲିର କ୍ଷୀଣ ଆଲୋକରେ ପ୍ରତ୍ୟେକ ପ୍ରତ୍ୟେକଙ୍କ ମୁଖରେ ଆତ୍ମଗ୍ଲାନି, ପରାଜୟର ଚିହ୍ନ ଦେଖି ଚମକି ପଡ଼ିଲେ । ଯାତ୍ରା ଏବେ ବି ସରିନି । ଏଇଟା ତ ଆରମ୍ଭ ମାତ୍ର । ଲକ୍ଷ୍ୟ ଆହୁରି ଅନେକ ଦୂର ।

ସେମାନେ ଗ୍ଭଲିଲେ । ଜ୍ୟୋସ୍ନା ବି ଗ୍ଭଲିଲା । ସମୟ ମଧ୍ୟ ଗ୍ଭଲିଲା । ପ୍ରତ୍ୟେକ ଗ୍ଭଲିବା ଆରମ୍ଭ କଲେ । ବୟସ, ସମୟ, ଜ୍ୟୋସ୍ନା, କାମନା, ଇଚ୍ଛା, ରାତି···ପ୍ରତ୍ୟେକ ନିଜ ନିଜ ଅକ୍ଷରେ ଘୂରିବା ଆରମ୍ଭ କରିଦେଲେ ।

ବାତାବରଣରେ ଏକ ଶିଶୁର କ୍ରନ୍ଦନ ସ୍ୱର । ସେମାନେ ଠିଆହେଲେ । ଜଣେ କହିଲା—''ମୋ ପୁଅ ମୋ କଥା ଭାବୁଥିବ ।'' ଆଉ ଜଣେ କହିଲା—''ଆଃ ! ମୋ ନବବିବାହିତା ପତ୍ନୀ ସୁନନ୍ଦା ! ତମେ କେତେ ଦୂରରେ ?'' ଆଉ ଜଣେ କହିଲା—''ମୋ ମା', ଭାଇ, ଭଉଣୀ, ପ୍ରେମିକା···ଏମାନେ ମୋତେ ମନେ ପକାଇ କାନ୍ଦୁଥିବେ ।'' ଅବିବାହିତ ନିଷ୍ଠୁର ଯୁବକଟି ଚିତ୍କାର କଲା—''ଆଃ ! ଚୁପ୍‌କର । ମା', ବାପା, ଭାଇ, ଭଉଣୀ, ପ୍ରେମିକା, ସ୍ତ୍ରୀ, ସନ୍ତାନ କେହି କାହାରି ନୁହଁନ୍ତି । ସବୁ କେବଳ ଛଳନାର ମାୟାଜାଲ । ଆମେ ମୁକ୍ତିର ମଶାଲ

ଧର ଆରେଇ ଚାଲୁଥିଲାବେଳେ ଏ ପ୍ରକାରର ମାୟାଜାଲ ଆମକୁ ବାନ୍ଧିରଖି ପାରିବ ନାହିଁ । ମୃତ୍ୟୁ ବ୍ୟତୀତ ସବୁ ମିଥ୍ୟା ।''

''କଅଣ ଜୀବନ ମଧ୍ୟ ମିଥ୍ୟା ?''

''ନିଶ୍ଚୟ ।''

''ତେବେ ଆମେ ବଞ୍ଚିଛେଁ କିପରି ?''

''କିଏ କହିଲା ଆମେ ବଞ୍ଚିଛେଁ ?

''ତେବେ ?''

''ଆମେ ସବୁ ପ୍ରେତାତ୍ମା···ଅଶରୀର ।''

ତା'ପରେ ସମସ୍ତେ ମିଳିମିଶି ବହେ ହସିଲେ ।

ଜଣେ ପ୍ରଶ୍ନକଲା—''ତୁମେ କହିବାକୁ ଚାହଁ ପ୍ରେମ ମଧ୍ୟ ମିଥ୍ୟା ।''

''ନିଶ୍ଚୟ ।''

''କିପରି ?''

''କାରଣ ତାହା ଅସ୍ତିତ୍ୱହୀନ । ତାହାଦ୍ୱାରା ପେଟ ପୂରିବ ନାହିଁ କିମ୍ବା ତାହାର ଅସ୍ତିତ୍ୱ ଆମେ କେବେ ଅନୁଭବ କରି ପାରିବା ନାହିଁ । ଯାହାର ଅସ୍ତିତ୍ୱ ନାହିଁ, ତାହା ମିଥ୍ୟା ।''

''ଈଶ୍ୱରଙ୍କ ଅସ୍ତିତ୍ୱ ବିଷୟରେ ତୁମର ମତ କଅଣ ?''

ପୁଣି ଏକ ସମ୍ମିଳିତ ହସ । ନିକଟ ଗଛ ଡାଳରେ ବସାବାନ୍ଧି ରହିଥିବା କେତୋଟି ପକ୍ଷୀ ଫଡ଼୍ ଫଡ଼୍ ହୋଇ ଉଡ଼ିଗଲେ ।

ସେମାନେ ପୁନର୍ବାର ଚାଲିବା ଆରମ୍ଭ କଲେ—ଯେପରି ଚାଲିବା ତାଙ୍କର ଧର୍ମ । ପାଦ ତଥାପି ଥକିନାହିଁ । ଦେଖାଯାଉ କିଏ ପ୍ରଥମେ ଥକି ପଡ଼ୁଛି । ଜ୍ୟୋତ୍ସ୍ନା···ପଥ···ଲକ୍ଷ୍ୟ···ଅଥବା ପାଦ···ମନ···ଶରୀର । ପ୍ରତିଯୋଗିତାର ଆରମ୍ଭରେ କଅଣ କିଛି କୁହାଯାଇ ପାରେ ?

ଏଇଟା ବି ଏକ ଛକ । ପ୍ରଥମଟି ଆଲୋକର କିନ୍ତୁ ଏଇଟି ଅନ୍ଧକାରର । ଏଇଠି ଥିବେ ଅନେକ ଅତୃପ୍ତ ଆଶା, କାମନା, ଯନ୍ତ୍ରଣା । ସେମାନେ ଅନ୍ଧକାର ମଧ୍ୟରେ କାନ୍ଦି କାନ୍ଦି ନୀରବ ହୁଅନ୍ତି ଏବଂ ଶେଷରେ ସ୍ଥାଣୁ ପାଲଟି ଯାଆନ୍ତି । ତା'ପରେ ସବୁ ଯେପରି ପଥର ।

ଛକରେ କିଏ ଜଣେ ଶୋଇଛି—ନିର୍ଦ୍ଦ୍ରିନ୍ତରେ । ଦୁନିଆର ସମସ୍ତ ଚିନ୍ତା, ଦୁଃଖ ଓ ଭୟକୁ ପାଶୋରି ପକେଇ ଶୋଇପଡ଼ିଛି, ମାଟି ଉପରେ ଖୋଲା

ଦେହରେ । ତାହାର ଦର୍ଶନ ହୁଏତ ଭିନ୍ନ ହୋଇପାରେ କିମ୍ବା ସେ ଅନ୍ୟ କୌଣସି କାରଣରୁ ଶୋଇ ପାରିଥାଏ । ହେଲେ ଏମାନେ ତାକୁ ଦେଖି ଖୁସି ହେଲେ । ଶରୀର ବି ତ ମାଟି···ମାଟି ସହିତ ମାଟିର ମିଳନକୁ ଦେଖି ସେମାନେ କାନ୍ଦିଲେ । ଅଶ୍ରୁଧାର ବହି ଚାଲିଲା । ଆହାଃ···ଏ ମିଳନ···ଏ ଯେ ଚିରନ୍ତନ ସତ୍ୟ ।

"କିଏ ତୁମେ ଭାଇ ଏଠି ଏପରି ଭାବେ ଶୋଇଛ ?"

ସେ ଉଠି ବସିଲା । ପାଟିରୁ ଦେଶୀ ମଦର ଗନ୍ଧ । ବୋଧହୁଏ ସେ ଜଣେ କୁଲି । ଦୁନିଆରେ ଏକା । ବାସସ୍ଥାନ ନାହିଁ । ଯାହା କମାଏ, ଖାଇପିଇ ଏଇ ମାଟି ଉପରେ ଶୋଇପଡ଼େ ।

"ମୁଁ ରାଜା···ମୁଁ ରାଜା···ହିଁ ହିଁ···ମୁଁ ରାଜା । ମୈଁ ରାଜା ହୁଁ ।"

"ହଁ ଭାଇ ତୁମେ ରାଜା ।"

ସେମାନେ ଭାବିଲେ, ଆଜିକାର ଗଣତାନ୍ତ୍ରିକ ସମାଜରେ ମଣିଷ ମନରେ ତଥାପି ବି ରାଜା ହେବାର ଲିପ୍ସା ରହିଛି । ଅବଚେତନ ମନ ସୁଯୋଗ ପାଇଲେ ଚେଇଁ ଉଠୁଛି । କିନ୍ତୁ କାହିଁକି ? ପ୍ରତ୍ୟେକ ଏଇ ପ୍ରଶ୍ନଟିର ଉତ୍ତର ପାଇଁ ପ୍ରତ୍ୟେକଙ୍କୁ ଚାହିଁଲେ । ହେଲେ ଉତ୍ତର ମିଳିଲା ନାହିଁ । ସେ ପ୍ରଶ୍ନର ଉତ୍ତର କଅଣ ଏତେ ସହଜ ?

"ମୋର ମନ୍ତ୍ରୀ କାହିଁ ? ଡାକ ତାକୁ ଆଜି ଦରବାର ହେବ ।"

"ଭାଇ ତୁମେ ଉଠ···ଥଣ୍ଡା ହେଉଛି ପିଣ୍ଡାରେ ଶୋଇପଡ଼ ।"

"ମୋତେ ଛୁଅଁନାହିଁ । ମୁଁ ରାଜା । ଏ ସମଗ୍ର ପୃଥିବୀର ରାଜା ମୁଁ । ମୋର ମହଲ ମଧ୍ୟକୁ କେଉଁ ସାହସରେ ତୁମେମାନେ ପ୍ରବେଶ କଲ । ଯାଅ ବାହାରି ଯାଅ ।"

ସେମାନେ ଦୁଃଖିତ ହେଲେ । ମଣିଷ ମଦ ପିଇଲେ ରାଜା ହୁଏ ଏବଂ ରାଜା ମଦ ପିଇଲେ ପଶୁ ହୋଇଯାଏ । ଚତୁର୍ଦ୍ଦିଗରେ କେବଳ ପାର୍ଥକ୍ୟ ଓ ବ୍ୟବଧାନ ।

ଅନ୍ଧକାର ଛକର ରାଜାକୁ ଛାଡ଼ି ସେମାନେ ପୁନର୍ବାର ଚାଲିବା ଆରମ୍ଭ କଲେ । ଅନ୍ଧକାର ମଧ୍ୟରେ ଆଶା, କାମନାକୁ ଜଳା ଯାଉଛି । ଉକ୍ତ ମୂଲ୍ୟଆଟିର ଜୀଅନ୍ତା ଶବକୁ ପୋଡ଼ା ଯାଉଛି । ଉଃ ! ···କି ଉତ୍କଟ ଗନ୍ଧ । ପଛକୁ ବୁଲି ଲକ୍ଷ୍ୟ କରିବାପାଇଁ ସେମାନଙ୍କର ସାହସ ହେଲାନାହିଁ । ମୁକ୍ତିର ମଶାଲ ତାଙ୍କ ହାତରୁ ଯେପରି ଖସି ପଡ଼ୁଛି । ସେମାନେ ଭବିଷ୍ୟତ ପାଇଁ ଚିନ୍ତିତ··· ଉଦ୍‌ଭ୍ରାନ୍ତ । ତଥାପି ପାଦ ତ ଅଟକିନି । ପଥ ବି ଦମ୍ଭରେ ପଡ଼ି ରହିଛି ।

ଅନାବନା ଗଛର ଜଙ୍ଗଲ ମଧ୍ୟର ସରୁ କଚା ରାସ୍ତାଟିରେ ସେମାନେ ପଦାଘାତ କରି ଚାଲୁଥିଲେ । ସମ୍ମୁଖରେ କେତେକ ଭଙ୍ଗା ଘ୍ରେଟ ଘ୍ରେଟ ଘର । ଦୂରରେ ଏକ ପୁରାତନ ମନ୍ଦିର ଏବଂ ତା'ର ଅଳ୍ପ ଦୂରରେ ବିରାଟ ରାଜପ୍ରାସାଦ ଠିଆ ହୋଇଛି ଆକାଶକୁ ମୁଣ୍ଡଟେକି ।

ସେମାନେ ମନ୍ଦିର ନିକଟରେ ଠିଆହୋଇ ଚିତ୍କାର କଲେ—"ପ୍ରଭୁ... ଆମ ଗୁହାରି ଶୁଣ ।" ପ୍ରତ୍ୟୁତ୍ତରରେ କେତୋଟି ଚେମଣିଆ ଫଡ଼୍ ଫଡ଼୍ ହୋଇ ମନ୍ଦିର ମଧ୍ୟରୁ ବାହାରି ଆସିଲେ । ସେଗୁଡ଼ିକ କେତୋଟି ଜ୍ୱଳନ୍ତ ଚକ୍ଷୁରେ ସେମାନଙ୍କୁ ଲକ୍ଷ୍ୟକଲେ ଏବଂ ଅଳ୍ପ ଦୂରରେ କିଏ ଜଣେ ହସି ଉଠିଲା । ସେମାନେ ଚତୁର୍ଦ୍ଦିଗକୁ ଲକ୍ଷ୍ୟକଲେ । କାହିଁ କେହି ତ ନାହିଁ । କିଏ ହସିଲା... ?

ଏକ ଭଙ୍ଗା ପାଚେରୀ ଡେଇଁ ସେମାନେ ଆଗକୁ ଚାଲିଲେ । "ଶୁଣ", କିଏ ଜଣେ ଡାକିଲା । ସେମାନେ ଅଟକିଗଲେ । ପୁଣି ଥରେ ସେଇ ସ୍ୱର, "ଶୁଣ" । ଜଣେ କହିଲା, "ମୁଁ ଠିକ୍ ଶୁଣିଛି, ଏଇ ପାଚେରୀ ପଛପଟୁ କିଏ ଜଣେ ଡାକୁଛି ।" ଅନ୍ୟମାନେ କହିଲେ, "ଚାଲ ଦେଖିବା, ରାତ୍ରିର ନିସ୍ତବ୍ଧ ପ୍ରହରରେ କିଏ ଆମକୁ ଡାକୁଛି ।"

ପାଚେରୀ ନିକଟରେ ପହଞ୍ଚି ସେମାନେ ଚତୁର୍ଦ୍ଦିଗକୁ ଖୋଜିଲା ଦୃଷ୍ଟିରେ ଚାହିଁଲେ । ପୁଣି ହସର ଧ୍ୱନି । ସେମାନେ ଚିତ୍କାର କଲେ, "କିଏ...କିଏ ହସୁଛ ?" ଏକ ଗୁରୁଗମ୍ଭୀର ସ୍ୱର ପାଚେରୀ ମଧ୍ୟରୁ ବାହାରିଲା, "କାହାକୁ ପଚାରୁଛ ? ଅସ୍ତିତ୍ୱକୁ ଖୋଜୁଛ ତୁମେ ? ମୋର ଯେ ଅସ୍ତିତ୍ୱ ନାହିଁ ।"

"ତେବେ ତୁମେ କିଏ ?"

"ମୁଁ...ମୁଁ ଏଇ ଭଙ୍ଗା ପାଚେରୀ ।"

"ପାଚେରୀ ! ପଥରର ପାଚେରୀ ପୁଣି କଥା କହିପାରେ ?"

ହସିଲା ପାଚେରୀ, "ମୋର କଅଣ ଜୀବନ ନାହିଁ ?"

ସେମାନେ ବିଶ୍ୱାସ କଲେନାହିଁ । ପାଚେରୀ କହିଲା—"ଅତୀତ ମୁଁ ଦେଖିଛି...ବର୍ତ୍ତମାନ ଦେଖୁଛି ଏବଂ ଭବିଷ୍ୟତ ମୋ ଚକ୍ଷୁ ସମ୍ମୁଖରେ । ତୁମେ ବିଶ୍ୱାସ କରି ନ ପାର । ହେଲେ ଥରେ ମୋ ପଛପଟେ ବୁଲି ଚାହିଁ ଦେଖ ତ... କଅଣ ଅଛି ?"

ସେମାନେ ଦ୍ରୁତ ପାଦରେ ପାଚେରୀ ପଛପଟକୁ ଗଲେ । ବଡ଼ ବଡ଼ ଘାସ ମଧ୍ୟରେ ଏକ ଖପୁରି ଏବଂ କେତେଖଣ୍ଡ ହାଡ଼; ମଣିଷର ।

ପାଚେରୀ କହୁଲା—"ଏଇଟା ଅତୀତ ଓ ଭବିଷ୍ୟତ । ବର୍ତ୍ତମାନ ତୁମେ ନାହିଁ । ନିଜ ଶରୀରରୁ ଚର୍ମ, ମାଂସ ଓ ରକ୍ତକୁ ପୃଥକ୍ କରି ଦେଖ · କିଏ ତୁମେ ଓ କିଏ ତୁମେ ।"

ଜ୍ୟୋତ୍ସ୍ନା ହାରି ଯାଇଥିଲା । ଅନ୍ଧକାର ମଧ୍ୟରେ କେତୋଟି ଖୁପୁରୀ ଓ ଏକ ଭଙ୍ଗା ପାଚେରୀ । ପାଚେରୀ କହୁଥିଲା ଓ ଖୁପୁରୀମାନେ ଶୁଣୁଥିଲେ ।

ସେମାନେ ହସିଲେ । ପାଚେରୀ ମଧ୍ୟ ହସିଲା । କହୁଲା—"ହେ ମୁକ୍ତିକାମୀ ଯୁବକଗଣ ଥରେ ଭଲଭାବେ ଏଇ ଝିପୁରୀକୁ ଲକ୍ଷ୍ୟକରି ଦେଖ ତ ସେ କିଏ ?"

ସେମାନେ ଭଲଭାବେ ଲକ୍ଷ୍ୟକଲେ । ପରମୁହୂର୍ତ୍ତରେ ଚମକି ପଡ଼ିଲେ ସେମାନେ । ଜଣେ କହୁଲା—"ଇଏତ ମୋ ପୁଅର, ସ୍ତ୍ରୀର, ମୋର ।" ଅନ୍ୟ ଜଣେ କହୁଲା—"ଚୁପ୍‌କର ବଦମାସ, ଏଇଟା ତ ମୋର, ମୋ ପ୍ରେମିକାର, ମା'ର, ଭାଇର, ଭଉଣୀର··ମୋର ।" ତୃତୀୟ ସ୍ୱର, "ନା···ନା··· ଏଇଟା ମୋର···।"

"ମୋର ।"

"ମୋର ।"

"ଏଇଟା ମୋର ।"

ସେମାନେ ଚିତ୍କାର କରିବା ଆରମ୍ଭ କଲେ । ହାତ ମୁଠା କରି ଝଗଡ଼ା କରିବା ଆରମ୍ଭ କଲେ । ପବନ ପତ୍ର ଫାଙ୍କରେ ଲୁଚି ଯାଇଥିଲା । ଶୀତ ନଦୀ ଭିତରେ ଲୁଚି ଯାଇଥିଲା । ଫୁଲର ମହକ ଆକାଶକୁ ଉଡ଼ି ଯାଇଥିଲା । ପଥଟା ଆଖିବୁଜି ଶୋଇ ପଡ଼ିଥିଲା । ପାଚେରୀ ମୁକ୍ତ କଣ୍ଠରେ ହସୁଥିଲା ।।

ହଠାତ୍ ପାଚେରୀଟି ହୁସୁ ହୁସୁ ଭାଙ୍ଗି ପଡ଼ିଲା । ଖପୁରୀ ଓ ହାଡ଼ମାନଙ୍କ ଉପରେ ପଥର ଖଣ୍ଡମାନ ଶବ୍ଦ କରି ପଡ଼ିଗଲା । ବାତାବରଣରେ ଏକ ହସର ଲହଡ଼ି । ପବନ ହସିଲା, ଜ୍ୟୋତ୍ସ୍ନା ବି ହସିଲା । ସେମାନେ ଭୟଭୀତ ହୋଇ ଦୌଡ଼ିବା ଆରମ୍ଭ କଲେ । ତାଙ୍କ ପଛରେ କେତୋଟି ଗୁଡ଼ି ଭୂତ ପରି ତାଙ୍କୁ ଗୋଡ଼ାଉ ଥିଲେ ।

●

('ଝଙ୍କାର' ଜୁନ୍ ୧୯୭୬)

# ମାଇଲ ଖୁଣ୍ଟ

ପ୍ରତ୍ୟେକ ମନୁଷ୍ୟ ବିନା ଘାତପ୍ରତିଘାତ ବୟସର ପାହାଚ ଅତିକ୍ରମ କରିପାରେ ନାହିଁ । ବିତିଲା ପଥରେ ଅନେକ ମାଇଲ ଖୁଣ୍ଟ । ପ୍ରତ୍ୟେକ ମାଇଲ ଖୁଣ୍ଟରେ ସଂଲଗ୍ନ ଅନେକ କାହାଣୀ । ପଥ ସରେନି । ମାଇଲ ଖୁଣ୍ଟ ମଧ୍ୟ ସରେନି । ଜୀବନଟା ଯଦି ଏକ ଲମ୍ବା ପଥ, ଅତୀତ ବିତିଲା ପଥ, ତେବେ ଏଇ ମାଇଲ ଖୁଣ୍ଟ ହେବ ସ୍ମୃତି । ପଥିକ ଲକ୍ଷ୍ୟ ଉଦ୍ଦେଶ୍ୟରେ ଅଗ୍ରସର ହୁଏ । ମାଇଲ ଖୁଣ୍ଟ ସବୁ ପଛରେ ପଡ଼ି ରୁହନ୍ତି । ସମ୍ମୁଖରେ ଲମ୍ବା ପଥ, ଅସରନ୍ତି ମାଇଲ ଖୁଣ୍ଟ ଦିଏ ଭବିଷ୍ୟତର ସୂଚନା । ପଥିକ ଲକ୍ଷ୍ୟଭ୍ରଷ୍ଟ ହୋଇ ଅତୀତ ମଧ୍ୟରେ ପୁନର୍ବାର ଲକ୍ଷ୍ୟ ଖୋଜେ, ଭବିଷ୍ୟତ ପଛରେ ପଡ଼ିରୁହେ··· । ଅତୀତ ହୁଏ ଭବିଷ୍ୟତ ····· । ମାଇଲ ଖୁଣ୍ଟର ଦୁଇପଟେ ଲେଖା ହୋଇଥିବା ଭିନ୍ନ ସଂଖ୍ୟା ଲକ୍ଷଭ୍ରଷ୍ଟ ପଥିକର ଇଚ୍ଛା ଶକ୍ତିକୁ କମାଇ ଦିଏ ଧିରେ ଧିରେ । ଚିହ୍ନି ପାରେନା ସେ ପୂର୍ବ ପଶ୍ଚିମ ଦିଗକୁ । ଜୀବନସାରା ଲକ୍ଷ୍ୟ ପାଇଁ ତାକୁ ସହିବାକୁ ପଡ଼େ ଅନେକ ଘାତ ପ୍ରତିଘାତ ।

ଆଜି ଖୋଜୁଛି ମୁଁ ତାକୁ, ତା'ର ମହକକୁ, ତାର ଦେହର ସୁଗନ୍ଧକୁ । ତା'ର ଟିକେ ସ୍ପର୍ଶ ପାଇଁ ଉତ୍ତେଜିତ ମନ ଆଜି ଶାନ୍ତ, ଚନ୍ଦ୍ରର ଉଜ୍ଜ୍ୱଳତା ସହ ତା' ମୁହଁ ତୁଳନା କରିବା ଲକ୍ଷ୍ୟ ହଜିଯାଇଛି । ସିନେମା ହଲର ସେହି କୋଳାହଳମୟ ବାତାବରଣରେ ଥରେ ତା' ସାନ୍ନିଧ ମୋତେ ପ୍ରଗଲ୍‌ଭ କରିଥିଲା । ପ୍ରତିବନ୍ଧକ ରୂପେ ତା'ର ବାଧା ମୋର କମ୍ପିତ ହସ୍ତ ମାନି ନ ଥିଲା; କିନ୍ତୁ ପୃଷ୍ଠା ଆଜି ପୂରୁଣା ।

ରସାୟନ ବିଜ୍ଞାନ ପରୀକ୍ଷାଗାର ··ତେଇଶି ନମ୍ବର ସିଟ୍‌ଟା ମୋର ତ ? ଚବିଶି ନମ୍ବର ସିଟ୍‌ଟା ତା'ର ଯଦି, ମୋର ତେଇଶି ନିଶ୍ଚୟ । ନିଜ ଆପ୍ରନଟା ଦେଇ ଗତକାଲି ତାକୁ ବଞ୍ଚାଇଥିଲି ଡ଼କ୍ଟର ସାହୁଙ୍କ କୋପଦୃଷ୍ଟିରୁ, ନିଜ ପ୍ରତି ଭ୍ରୂକ୍ଷେପ ନ କରି ।

ଅତୀତର ମୋଟା ବହି ଲେଉଟାଇଲେ, ଗୋଟିଏ ପୃଷ୍ଠାରେ ଚକ୍ଷୁ ଲାଖି-ରହେ । ପୃଷ୍ଠାରେ ଏକ ପ୍ରତିଚ୍ଛବି ବନ୍ଧୁତା ଦାସର ।

ବନ୍ଧୁତା ଯେଉଁ ମୋଟା ଗାର ଟାଣି ଦେଇଥିଲା, ତା'ର ଚିହ୍ନ ଆଜି ଲିଭିଗଲାଣି । ମୋ ମଧ୍ୟ ଏକ ପ୍ରହସନ । ଜୁଆର ପରେ ଭଟ୍ଟା ପରି ମନ ସମୁଦ୍ର ଶାନ୍ତ । ଜୁଆରକୁ ନେଇ କେବେ ଗର୍ବ ନ କରିଥିବା ସମୁଦ୍ର, ଭଟ୍ଟାକୁ ନେଇ ଦୁଃଖ କରିବ କାହିଁକି ? ହସିଲିଗେ ଥରେ ଥରେ । ଧଳା ରଙ୍ଗ ପ୍ରତ୍ୟେକ ରଙ୍ଗ ସହ ମିଶି ନିଜର ଅସ୍ତିତ୍ୱ ଲୋପ କଲାପରି ମୁଁ ମଧ୍ୟ କଚ୍ଛାଦନ ଭୁଲିଥିଲି ନିଜର ଅସ୍ତିତ୍ୱ । ନାସ୍ତିକରୁ ଆସ୍ତିକ ହୋଇ, ଧର୍ମ କଅଣ ନ ଜାଣି ବା ପାଠକ ଦଣ୍ଡ ଗୀତା ଉପରେ ତା' ପ୍ରଦତ୍ତ ବାଇବେଲକୁ ରଖି କଚ୍ଛାଦନ ଗୀର୍ଜା ଯାଇଁ·ଚେଷ୍ଟା କରିଥିଲି 'ଆମିନ୍' କହି ଶିଖିବା ।

ଅତୀତର ମୋଟା ବହି ଖସିପଡ଼େ ଅବଶ ହାତରୁ ।

କିଶୋରରୁ ଯୌବନକୁ ଗୁଡ଼ାଏ ପାହାଚ ଦେଇ ଆସିଲି ସମୟରେ ଅନେକ ବୁଢ଼ିଆଣୀ ଜାଲ । ମନ ଛନ୍ଦି ହୋଇପଡ଼େ, ବିଶ୍ଳେଷଣ କରି ହୁଏନି । ତଥାପି ସେଇ ବୁଢ଼ିଆଣୀ ଜାଲ ମଧ୍ୟରେ ଅସ୍ପଷ୍ଟ ଏକ ପ୍ରତିଛବି । ଗୀତା ଭଟ୍ଟାଗ୍ରସ୍ତ । ଯୌବନ ଆସି ନ ଥାଏ, ତଥାପି ମନ ଆକାଶରେ ତାରା ଗଣିଲି । ସ୍କୁଲର ଶେଷବର୍ଷ ବିତିଲା ପରେ ଆକାଶ ସ୍ଥାନ ନେଲା ଭବିଷ୍ୟତ ଚିନ୍ତା । ନର୍ଦ୍ଦମାର ପାଣି ଫୋଟକା ପରି ଫୁଲି ଆସୁଥିବା ମନରୂପୀ ବେଲୁନ୍‌ଟି ଫାଟିଗଲା ।

କଲେଜର ଦ୍ୱିତୀୟ ବର୍ଷ । ଯୌବନ ଦ୍ୱାରରେ ଆଗନ୍ତୁକ ସ୍ୱପ୍ନବିଭୋର ମନକୁ କ୍ଷତକଲା ବନ୍ଧୁତା ଦାସ । ଆଜି ଜନନୀ ହୋଇ କେଉଁ ଏକ ସହରର କ୍ୟାଣ୍ଟନମେଣ୍ଟ ରୋଡ଼ରେ ନିଜ 'ବ୍ୟାଙ୍ଗଲୋ' 'ଲନ୍'ରେ ଆର୍ମଚେୟାରରେ ନିଜ ଭାରି ଶରୀରକୁ ଲମ୍ବେଇ ଦେଇ ଆଗନ୍ତୁକ ସନ୍ତାନ ନିମନ୍ତେ ହୁଏତ ସିଲେଇ କରୁଥିବ ମୋଜା ବା ସୁଏଟର । ତା' ମୋ ମଧ୍ୟରେ ଆଜି ଅନେକ ଶୂନ୍ୟତା, ଅନେକ ଦୂରତା, ଅନେକ ବ୍ୟବଧାନ, ଅନେକ ପ୍ରତିବନ୍ଧକ—ଏକ ସ୍ୱପ୍ନ ପରି, ସବୁ ଭୁଲି ହୋଇଗଲାଣି ।

ଥରେ ଜଣେ କହିଥିଲେ—"ଏକ ଶିଶୁ ବୃକ୍ଷର ଗଣ୍ଡିରେ ଏକ କଣ୍ଟା ଯଦି ପିଟି ଦିଆଯାଏ, ତେବେ ବୃକ୍ଷଟି କଣ୍ଟାବିଦ୍ଧ ସ୍ଥାନରୁ ଉପରକୁ ବଢ଼ି ଚାଲିବ । କଣ୍ଟାବିଦ୍ଧ ସ୍ଥାନରୁ ଭୂମିଯାଏଁ ବୃକ୍ଷଟିର ବଢ଼ିବା ଶକ୍ତି ବନ୍ଦ ହୋଇଯିବ ।" ବନ୍ଧୁତା କ୍ଷତ କଲା ପରେ ଉତ୍ତେଜନା ବିହୀନ ମନ, ଶରୀର ବୃଦ୍ଧି ସହ ତାଳ ଦେଲାନି । ଉତ୍ତେଜିତ ଶରୀର ସ୍ପୃହେଁ ଯୌନକ୍ଷୁଧା ନିବାରଣ । ଶାନ୍ତ ମନ ନପୁଂସକ ପୁରୁଷ ପରି ଉତ୍ତେଜନା ବିହୀନ । କ୍ଷୁଧା ପୌରୁଷ ସହି ପାରେନି ।

ପୁଷ୍ପା ପଟ୍ଟନାୟକ ଆଣିଲା ପରିବର୍ତ୍ତନ । ବଣ୍ଡ ପାଗଳ ଇଲେକ୍‌ଟ୍ରିକ ସକ୍ ପରେ ଜ୍ଞାନ ଫେରପାଇଲା ପରି, ନପୁଂସକ ମନ ଫେରପାଇଲା ଉତ୍ତେଜନା । ଯୌବନରୁ ପ୍ରୌଢ଼ତା ପର୍ଯ୍ୟନ୍ତ ଦୂରତା ଖୁବ୍ କମ୍ । ତଥାପି ପଥଚ୍ୟୁତ ହୁଅନ୍ତି ଅନେକ । କିନ୍ତୁ ଦୁର୍ଗମ ପଥରେ ଥରେ ପାଦ ଖସାଇ ସଚେତନ ମୁଁ କି ଆଉ ପଥ ଭୁଲିବ ?

ଦୃଢ଼ ନିଶ୍ଚିତ ମନରେ ଆଉ କିନ୍ତୁ ଗାର ପଡ଼ି ପାରିବନି । ତେଲିବୋଲା କାଗଜରେ କଲମଗାର ପକେଇ ନ ପାରିଲା ପରି, ଥରେ ବସନ୍ତ ରୋଗମୁକ୍ତ ବ୍ୟକ୍ତି ପୁନର୍ବାର ଆକ୍ରମିତ ନ ହେଲା ପରି, ମନରେ ଏକ ନିଷ୍ଠୁର···ଆଉ ଆଘାତ କୌଣସି ପ୍ରଭାବ ପକେଇ ପାରିବନି । ବର୍ତ୍ତମାନ ପଥରେ ଯେତେ ମାଇଲଖୁଣ୍ଟ ତାହା ଗଣିବା ମୋର କର୍ମ । ଜୀବନରେ ଯେତେ ଆସିବେ ଆସନ୍ତୁ । ପାଦ ଅବଶ ହେଲେ କ୍ଷଣେ ଠିଆ ହୋଇଯିବି, ଘନିଷ୍ଠତା ବଢ଼ିବ; କିନ୍ତୁ ଆଗକୁ ବଢ଼ିଲେ, ଅତୀତ ଭୁଲିବା ମୋର ଧର୍ମ ।

ପୁଷ୍ପା ନିଜ ଯୌବନକୁ ପିଆଲାରେ ଭରି ସାଜିଲା ସାକି । ବନ୍ଧୁତାର ମୁକ୍ତ ବିଦାୟ ନେଲା କ୍ଷତ ଚିହ୍ନକୁ ଲିଭାଇ । ଆଧୁନିକତାର ଛନ୍ଦ ସହିତ ନିଜକୁ ମିଳେଇ ନେଇଥିବା ଯୁବତୀକୁ ପ୍ରତାରଣା କରିବା ଅତି ସହଜ । ପୁଷ୍ପା ଭାବେ ସମସ୍ତ ସହିତ ମୁଁ ପୁରୁଣା ହୋଇ ଯାଉଛି । ସେ ସେଥିପାଇଁ ମୋତେ ପ୍ରତାରିତ କରେ ସାଗର ପାଇଁ । କିନ୍ତୁ ମୁଁ ଯେ ପ୍ରତାରିତ କରୁଛି ତାକୁ 'ବେଙ୍ଗ' ପାଇଁ ।

ଆପ୍ରନ୍ ପାଇଁ 'ବସ୍‌ଶେଡ଼'ର ମଧୁର ବାତାବରଣରେ ଧନ୍ୟବାଦଟା ପ୍ରକୃତରେ ବଡ଼ ଆନନ୍ଦଦାୟକ । ଧାରି ଠିକ୍ ରୂପେ ଗତିମାନ । ଅଭ୍ୟସ୍ତ ଚକ୍ଷୁ ଠିକ୍ ଚିହ୍ନିଛି । ଯେଉଁ ଆଘାତ ମୁଁ ପାଇଛି, ତାହାକୁ ଅନ୍ୟକୁ ଦେବା ମୋର ଲକ୍ଷ୍ୟ । ମୁଁ ନଷ୍ଟଚରିତ୍ର ନୁହେଁ । କାରଣ ବେଶ୍ୟାଳୟର ପଥ ମୋତେ ଅଜଣା । କୌଣସି ବାର ମାଲିକ ମୋତେ ଚିହ୍ନିନି । ତେଣୁ ଆଗନ୍ତୁକା ସନ୍ଦେହ କରି ପାରେନା ।···ବେଙ୍ଗ ମଧ କରନି··· ।

କିନ୍ତୁ ବେଙ୍ଗ ପରେ···?

ଯୌବନ ବଢ଼ଲେ···ପ୍ରୌଢ଼ତା ବଢ଼ଲେ, ବାର୍ଦ୍ଧକ୍ୟରେ କିଏ ?

ଏକ ନିଃସହାୟ ଜୀବ ପରି ଶୂନ୍ୟତା ମଧ୍ୟରେ ଘୂରି ଘୂରି ନିହାରିକାରୁ ଛିଣ୍ଡି ପୃଥିବୀ ପରି ଗ୍ରହ ଉପଗ୍ରହ ସୃଷ୍ଟି ହୋଇ ଏକ ଲୌହପିଣ୍ଡ ରୂପେ ଉଲ୍‌କାପାତ ହେଲାପରି, ଧୂମକେତୁ ପଛରେ ଧାଇଁ ଧାଇଁ, ଏକ ଫୁଲ ଫୁଟି ମହକ ଦେଇ ଦେବତାର ଚରଣରେ ଅର୍ପିତ ନ ହୋଇ ବଣରେ ଫୁଟି ଝଡ଼ିଗଲା

ପରି, ଏକ ବିରାଟ ଶ୍ମଶାନ ମଧ୍ୟରେ ନିଜ ଶରୀରର ହାଡ଼ମାଂସକୁ ଅଣୁପରମାଣୁରେ ମିଶେଇ ଦେବ ।

କିନ୍ତୁ ଏଇଟା କାହିଁକି ?

ଥରେ ଥରେ ମୁଁ ଭାବେ—"ମୁଁ ମଧ୍ୟ ଅନ୍ୟମାନଙ୍କ ପରି ମାଇଲଖୁଣ୍ଟ ପ୍ରତି ଦୃଷ୍ଟି ନିକ୍ଷେପ ନ କରି ଲକ୍ଷ୍ୟ ଉଦ୍ଦେଶ୍ୟରେ ଗତି କରୁନାହିଁ କାହିଁକି ? କାହିଁକି ପଥଭ୍ରଷ୍ଟ ହେଉଛି ? ଜଗତ ଅଶୃଙ୍ଖଳା ବା ଅନ୍ୟମାନଙ୍କ ପରି ପଥରେ ଗତିକଲା ସମୟରେ ନିଜକୁ ନିଜ ମଧ୍ୟରେ ସୀମିତ ନ ରଖୁଛି କାହିଁକି ।

ହେଲେ ମୃତ୍ୟୁ ସମ୍ମୁଖରେ ଅନୁତାପର ମୂଲ୍ୟ··· ?

ବାଧ୍ୟ ହୋଇ ମନକୁ ସାନ୍ତ୍ୱନା ଦେବାକୁ ପଡ଼େ—ଭବିଷ୍ୟତ ପାଇଁ ଚିନ୍ତା କାହିଁକି ? ମାଇଲଖୁଣ୍ଟ ଅସରନ୍ତି । ଅତୀତ ତ ଭସ୍ମ ଦେଖାଇ ପାରିନି । ଆଉ ନିଷ୍ଠୁର ବର୍ତ୍ତମାନ ତ ସମ୍ମୁଖରେ ନାଚୁଛି ।



('ନିତ୍ୟସତ୍ୟ' ସମ୍ବଲପୁର, ପୂଜାସଂଖ୍ୟା—୧୯୭୦)

# ଦଶହରାର ଇତିକଥା

ଆଜି ଦଶହରା··· ।

ଗତ ଦୁଇଦିନ କ୍ରମାଗତ ଭାବେ ଅକଥନୀୟ ପରିଶ୍ରମ କରି କରି ଶରୀର ଉଠିବା ନିମନ୍ତେ ପୁରାପୁରି ଅରାଜି । ଦଶହରା ବର୍ଷରେ ଥରେ ଆସେ । ତେଣୁ ଭାବିଥିଲି ସେହିଦିନ ହିଁ ପରିଶ୍ରମର ଉଚିତ ଫଳ ପାଇ ପାରିବି । କିନ୍ତୁ ସକାଳ ପହରରୁ ହିଁ ଶରୀରର ପ୍ରତ୍ୟେକ ସ୍ଥାନରେ ଅସମ୍ଭବ ରକମର ଯନ୍ତ୍ରଣା । ଟିକେ ତାତି ମଧ୍ୟ ଲାଗୁଛି । ଗତକାଲି ସନ୍ଧ୍ୟାର ବର୍ଷାରେ ଭିଜିବା ଫଳରେ ଏଇ ଦଶା । କେତେଟା ବାଜିବ କେଜାଣି ?

ରାତିସାରା ବର୍ଷା ହୋଇଥିବା ହେତୁ ସକାଳୁ ପାଗଟା କାଉଁଳିଆ ଅଛି । ଛାତି ଫାଙ୍କ ଦେଇ ମଇଳା ଆଲୋକ ଚଟାଣର କିଛି ଅଂଶକୁ ଆଲୋକିତ କରୁଛି । ଲକ୍ଷ୍ୟକଲି ସେହି ଆଲୋକିତ ସ୍ଥାନକୁ, ଅବଶ ଶରୀରକୁ ବାଧ୍ୟ କରି ଉଠାଇଲି । ପରିଧାନ ବସ୍ତ୍ରଟି ଓଦା ଜୁଡ଼ୁବୁଡ଼ୁ । ଚାହିଁଲି ଉପରକୁ, ପବନରେ ଛପର ଉଡ଼ିଯାଇ ଅନେକ ସ୍ଥାନରେ ଖୋଲା ଆକାଶ ପରିଲକ୍ଷିତ ହେଉଛି । ଗୃହ ମଧ୍ୟକୁ ଦୃଷ୍ଟି ଫେରାଇଲି । ଚାରିଆଡ଼େ କାଦୁଅ । ରାତିସାରା ବର୍ଷାଜଳ ଗୃହ ମଧ୍ୟରେ ଆଧିପତ୍ୟ ବିସ୍ତାର କରିଥିଲେ ତାହାହେଲେ ? ହସ ଲାଗିଲା । ବାହାରେ ଶୋଇ ପଡ଼ିଥିଲେ ହୋଇଥାନ୍ତା, ଅଯଥାରେ ଯାହା ଗୃହ ମଧ୍ୟରେ ଶୋଇବାକୁ ଦୁଇ ମାଇଲ ପଥ ଅତିକ୍ରମ କରି ଆସିଲି । ମୋ ନିମନ୍ତେ ଗୃହ ଯାହା, ବୃକ୍ଷତଳ ତାହା । ଗ୍ରୀଷ୍ମ, ବର୍ଷା, ଶୀତ ଏକା । ଖଣ୍ଡେ ଶୁଖିଲା ବସ୍ତ୍ର ନିମନ୍ତେ ସେହି ମଇଳା ଆଲୋକରେ ଗୃହର ଚାରିଆଡ଼େ ଦୃଷ୍ଟି ବୁଲାଇ ଆଣିଲି । ବସ୍ତ୍ର ବା ଆଉ ଅଧିକ କ'ଣ ? ଖଣ୍ଡେ ହାଫ୍ ପେଣ୍ଟ । ଦୁଇଖଣ୍ଡ ଲୁଙ୍ଗି । ଖଣ୍ଡେ ପିନ୍ଧିଛି ଆଉ ଦୁଇଟି ଓଦା ।

ଅସ୍ପଷ୍ଟ ରୂପେ ବାଦ୍ୟର ସ୍ୱର ଭାସି ଆସିଲା । ପୂଜା ଆରମ୍ଭ ହୋଇଗଲା ତାହାହେଲେ । କିଏ ଜଣେ ପାଟିକରି ଡାକ ଉଠିଲା । ଟଙ୍କା ପାଦରେ ପଚିଶ।

ଅଡ଼େଇ ଦେଇ । ଅସ୍ପଷ୍ଟ ବାଦ୍ୟଧ୍ୱନି ସ୍ପଷ୍ଟ ହୋଇ ଉଠିଲା । ସମ୍ମୁଖରେ ନିଜର ଚକ୍‌ଚକ୍ ରିକ୍‌ସା ଧରି ନାଥୁଆର ଠିଆ ହୋଇଥାଏ । ମୋତେ ଦେଖି ପାଟିକରି ଉଠିଲା, "କିବେ ଯିବୁନାହିଁ ନା କ'ଣ" ? "ଭଲ ଲାଗୁନି ଦିହଟା ।" ଧୀର ପାଦରେ ତା' ନିକଟକୁ ଅଗ୍ରସର ହେଲି । "ଦିହକୁ ଜଗିଲେ ଚଳିବ । ଦେଖୁନୁ, ପାଗଟା କିପରି ଅଛି । ଆଶା, ଆଜି ଥୋଡ଼ାଏ ରୋଜଗାର ହୋଇଯିବ । କାଲି ତ ବର୍ଷା ହୋଇ ନବମୀ ପୂଜା ବଜାରଟା ପୂରାପୂରି ମାଟି ହୋଇଗଲା । ଆଉ ଆଜି ଯଦି ଯିବୁନି, ତେବେ ଆଉ ରୋଜଗାର କ'ଣ କରିବୁ ?" ପକେଟରୁ ବିଡ଼ିଟାଏ କାଢ଼ି ଓଠରେ ଲଗାଇଲା ନାଥୁଆର । ଲୁଙ୍ଗିର ଏକ କୋଣରେ ମୁହଁ ପୋଛି କହିଲା, "କାଲି ସନ୍ଧ୍ୟାରୁ ରାତିସାରା ବର୍ଷାରେ ଭିଜି ଭିଜି ଦେହଟା ତାତି ଉଠିଛି । ଜର ଜର ମଧ୍ୟ ଲାଗୁଛି । ତେଣୁ ଭାବୁଛି, ଆଜି ଆଉ ଯିବିନାହିଁ ।" ଦୁଇ ତିନିଥର ବିଡ଼ିଟାକୁ ଜୋରରେ ଟାଣି ପାଟିକରି ଉଠିଲା ନାଥୁଆର, "ଦିହକୁ ଯଦି ଏତେ ଜଗୁଛୁ ତେବେ ରିକ୍‌ସା ଆଉ ଚଳାନା । ଦିନକର ଜରରେ ମରିଯିବୁନି ତୁ । ଏମିତି କେତେ ବର୍ଷା, ଶୀତ, ଖରା ଏହି ଦେହ ଉପରେ ମାଡ଼ି ଯାଇଛି । କେତେବେଳେ ଦେହ ଭାଙ୍ଗିଛି ତ, ଅନ୍ୟବେଳେ ପ୍ରକୃତି ଦେହ ସମ୍ମୁଖରେ ମଥାନତ କରିଛି, ତୁ କାଲି ଏକା ବର୍ଷାରେ ଭିଜିନାହୁଁ । ସମସ୍ତେ ଭିଜିଛନ୍ତି । କିନ୍ତୁ ଦେହ ଖରାପ କରି ଘରେ ବସି ନାହାନ୍ତି । ସମସ୍ତେ ବାହାରି ଗଲେଣି ନିଜ ନିଜର ଧନ୍ଦାରେ । ତୁ କ'ଣ ଭାବୁଛୁ, ତୋତେ ଏକା ଜର ? ମୋର ଦେହରେ ହାତମାର ତ ।"

ଚମକି ଉଠିଲି । ମୋର ଉଷ୍ମହାତ ଆଙ୍ଗୁଳି ଉଷ୍ମ ହୋଇ ଉଠିଲା । କହିଲି—"ଏ କ'ଣ ନାଥୁଆର, ତୋ ଦେହରେ ଏତେ ତାତି । ତଥାପି ତୁ ଖାଲି ଦେହରେ ଏମିତି·········।" ମୋ ବାକ୍ୟକୁ ପୂର୍ଣ୍ଣ ହେବାକୁ ନ ଦେଇ ହସି ଉଠିଲା ସେ, "ଏଇଟା ନୂଆ ନୁହେଁରେ । କେତେ ଝଡ଼ ଝଞ୍ଜା ବହି-ଗଲଣି ମୋ ଉପରକୁ, ତୁ ଜାଣିନୁ । ଦେହ ଆଜି ଖରାପ ହେଲେ, କାଲି ତା' ମନକୁ ଭଲ ହୋଇଯିବ । କିନ୍ତୁ ଦଶହରା ଆଜି ଗଲେ କାଲି ଆଉ ଥରେ ଆସିବନି; ଆସିବ ପୁଣି ବର୍ଷେ ପରେ । ଯାହା ନିକଟରେ ପଇସା ଅଛି, ସେ ଯେପରି ଏହି ଦିନଟାକୁ ହାତଛଡ଼ା ନ କରିବାକୁ ଚାହେଁ । ଠିକ୍ ସେହିପରି ଆମେ ମଧ୍ୟ ଏହି ଦିନଟିକୁ ଅନାଇଁ ବସିଥାଉ ।" ମନ ମଧ୍ୟରେ ମୋର ଏକ ଝଡ଼ ମୁଣ୍ଡ ଟେକୁଥାଏ । ପ୍ରଶ୍ନ କଲି—"ନାଥୁଆର, ସେମାନେ ଯେମିତି ମଣିଷ ଆମେ ବି ତ ସେମିତି ମଣିଷ, ଆମେ କ'ଣ ମଣିଷ ନୋହୁଁ ?" ହସି ଉଠିଲା ନାଥୁଆର । "ତୁ ନିଜର ସତ୍ତା ଏ ପର୍ଯ୍ୟନ୍ତ ମଣିଷ ସମାଜରେ ଖୋଜି ବୁଲୁଛୁ ? ଆରେ ତୋତେ କିଏ କହିଲା ଆମେ ମଣିଷ ? ମଣିଷ ହୋଇଥିଲେ ଆମେ କ'ଣ

ସମାଜର ପ୍ରତ୍ୟେକ ଖୁସିରେ ଖୁସି ହୁଅନ୍ତେ ନାହିଁ ? ସରକାରୀ ଅଫିସରେ କାମ କରୁଥିବା ଶ୍ରେଷ୍ଠ କର୍ମଚାରୀଙ୍କୁ ମଧ୍ୟ ଦଶହରାରେ ଛୁଟି ମିଳୁଛି । କିନ୍ତୁ ଆମର କେବେ ଛୁଟି କହ ତ ? ରାଧ ପରି ଖଟି ଖଟି କେତେ ପାଉଛୁ ଆମେ ? ଦୁଇ ଓଳି ଖାଇ ପାରୁନାହୁଁ ପେଟଭରି । ଦେହକୁ କଳିଲେ ରୋଜଗାର ବନ୍ଦ, ଓଃ କି ଜୀବନ ଅମର ?'' ନାୟାରଠାରେ ବିଦ୍ରୋହର ସ୍ପଷ୍ଟ ଆଭାସ । ଚୁପ୍ ରହିଲୁ ଦୁହେଁ କିଛିକ୍ଷଣ । ମନ ମୋର ଭାରି ହୋଇ ଆସିଲା । ବାଦ୍ୟର ତାଳ ଧିରେ ଧିରେ ତୀବ୍ର ହୋଇ ଆସୁଥାଏ । ନାୟାର ସିଟ୍ ତଳେ ଶ୍ରେଷ୍ଠ ବୋତଲଟିଏ ମୋ ହାତକୁ ବଢ଼ାଇ ଦେଇ ଭରା ଗଳାରେ କହିଲା—"ଟିକେ ପିଇ ଦେ, ତା'ପରେ ଦେଖିବୁ ତୋର ଅବଶତା କେଉଁଆଡ଼େ ଚାଲିଯିବ ।'' ପ୍ରଶ୍ନ କଲି—"କିନ୍ତୁ କ'ଣ ଏଇଟା ?'' ଗଳା ସଫା କରି କହିଲା—"କିଛି ପଚାରନା, ଚୁପଚାପ୍ ପିଇଦେ ।''

ଖାଲି ବୋତଲଟା ତା' ହାତକୁ ବଢ଼ାଇ ଦେଲି । ମୋ ପିଠିରେ ହାତ-ମାରି ସେ କହିଲା—"ତୁ ନୂଆ ହୋଇ ଆସିଛୁ କିନା ସେଥିପାଇଁ ଏବେ ବି ତୁ ଅନୁଭବ କରିବାର ଶକ୍ତି ବଜାୟ ରଖି ପାରିଛୁ । କିନ୍ତୁ ମୋ ପରି ହେବାକୁ ହେଲେ, ପ୍ରଥମେ ନିଜକୁ ମଣିଷ ଭାବିବା ଛାଡ଼ିଦେ । ତା'ପରେ ନିଜକୁ ପଥର କରିନେ । ଯେତେ ପ୍ରକାରର ଝଡ଼ଝଞ୍ଜା ସବୁ ମଥାପାତି ସହିନେ । ଏ ସ୍ୱାର୍ଥପର ଦୁନିଆରେ କେହି କାହା ବିଷୟରେ ଭାବିବାକୁ ମଧ୍ୟ ସମୟ ପାଏନାହିଁ । ଏ ଦୁନିଆଠାରୁ ନିଜକୁ ଦୂରେଇନେ, ତା'ପରେ ଦେଖିବୁ ସବୁ ଠିକ୍ ହୋଇଯିବ ।''

ସେ ଚାଲିଗଲା, ଅନେକ କିଛି କହି । ଛାଡ଼ିଗଲା ମୋତେ ବିଶ୍ଳେଷଣ କରିବାକୁ । ଚୁପ୍ ହୋଇ ଠିଆହେଲି କିଛିକ୍ଷଣ । ମୋ ପାଖ ଦେଇ ଦୁଇଟି ରିକ୍ସା ଚାଲିଗଲା । ଚାଳକଙ୍କର ମୁଖରେ ଆଶାର ଚିହ୍ନ । ଭିଡ଼ଆରେ ପ୍ରବେଶ କଲି ।

ରିକ୍ସା ଚାଳକମାନଙ୍କର ସେହି ଶ୍ରେଷ୍ଠ, ସମାଜ ପରିତ୍ୟକ୍ତ ଗଳି ମଧ୍ୟରୁ ରିକ୍ସା ଧରି ସହରର ରାଜପଥରେ ପାଦଦେଲି । ଚତୁଃପାର୍ଶ୍ୱରେ ପୂଜା ବଜାରର ସରଗରମ ପରିସ୍ଥିତି । ପ୍ରତି ଦୋକାନ ସମ୍ମୁଖରେ ଜନଗହଳି । କିଛି ଦୂରରେ ସହରର ପ୍ରଖ୍ୟାତ ଦେବୀ ମେଢ଼ । ବାଦ୍ୟର ଶବ୍ଦ କ୍ରମେ ତୀବ୍ରତର ହୋଇ ଉଠିଲାଣି । ଜନଗହଳି ହେତୁ ଧିରେ ଧିରେ ଗଡ଼ାଇ ନେଉଥାଏ ରିକ୍ସାଟିକୁ । ଦୁଇଜଣ କଥାବାର୍ତ୍ତା ହୋଇ ମୋ ନିକଟରେ ଚାଲୁଥାନ୍ତି—"ଯାହା କହ, ଏଥର କିନ୍ତୁ ଲୋକ ଗତବର୍ଷ ଅପେକ୍ଷା ବହୁତ କମ୍ ।'' ଅନ୍ୟ ଜଣକ

କହିଲା—"ଲୋକ କମ୍ ହେବାର ଦୁଇଟି କାରଣ । ପ୍ରଥମ ଅନାବୃଷ୍ଟି ଯୋଗୁଁ ଫସଲ ନଷ୍ଟ ହୋଇଥିବା ହେତୁ ଲୋକମାନଙ୍କର ଆଉ ଅଗ୍ରହ ନାହିଁ; ଦ୍ୱିତୀୟତଃ, ଲୋକମାନେ ଜାଣିଲେଣି ଯେ ଏ ଦେବୀ ପୂଜାରେ ମନ ଦେଇ ଅଯଥା ସମୟ ନଷ୍ଟ ନ କରିବା ହିଁ ଭଲ ।" ପୋଲିସ ହାତ ଠେକ ଅଟକାଇ ଦେଲା । ସମ୍ମୁଖରେ ଦେବୀଙ୍କର ମୂର୍ତ୍ତି । ଦେବୀ ଯଦି ପ୍ରକୃତରେ ଥାନ୍ତି, ତେବେ ଅଭିଯୋଗ ଅନେକ ଥିଲା । କିନ୍ତୁ ବିଶ୍ୱାସ ନ ଥିଲା । ଏହି ମାଟିକୁଟାରେ ତିଆରି ମୂର୍ତ୍ତି ଯେ ଆମର ଦୁଃଖ ଦୁର୍ଦ୍ଦଶା ଶୁଣି ତା'ର ପ୍ରତିକାର କରି ପାରିବ, ତାହା ମୁଁ ବିଶ୍ୱାସ କରିଲି ନାହିଁ । ପୁରାଣ କଥା କିଏ ଦେଖିଛୁ ? କିଏ ଦେଖିଛୁ ଯେ ଭଗବାନ୍ ପ୍ରକୃତରେ ପ୍ରାଣୀର ଦୁଃଖ ଶୁଣି ତା'ର ପ୍ରତିକାର କରିଥିଲେ ? କ'ଣ ପ୍ରମାଣ ଅଛି ଯେ, ଦୁର୍ଗା ମହିଷାସୁରକୁ ବଧ କରିଥିଲେ ? ଯଦି ପ୍ରକୃତରେ ଭଗବାନ ବୋଲି କିଛି ଗୋଟାଏ ଥାନ୍ତା, ତେବେ ଆଜି ମୁଁ ଉକ୍ସାବାଲା ହୋଇ ନ ଥାନ୍ତି । ଶିକ୍ଷିତ ସମ୍ପ୍ରଦାୟରେ ମୁଁ ମଧ୍ୟ ଜଣେ ହୋଇ ଠିଆ ହୋଇ-ଥାନ୍ତି । ଅର୍ଦ୍ଧଶିକ୍ଷିତ ହୋଇ ଆଜି ପଶୁ ରୂପେ ଗଣା ଯାଇ ନ ଥାନ୍ତି । ଆଜି ମୁଁ ସମସ୍ତେ ହସିଲା ସମୟରେ କାନ୍ଦି ନ ଥାନ୍ତି । ଦେବୀଙ୍କ ସମ୍ମୁଖରେ ଦୁଇଟି ଭିକାରି ନିଜର ହାତପାତି ବସିଥାନ୍ତି । ଦୁହେଁ ଅନ୍ଧ । ଅନେକ ଭକ୍ତ ଦେଖିଲି । ଆଖିବୁଜି ଦେବୀଙ୍କ ସମ୍ମୁଖରେ ପ୍ରାର୍ଥନା ଶେଷକରି ଭିକାରିଙ୍କ ବିକଳ ସ୍ୱରକୁ ଏଡ଼ାଇ ଆସି ବସୁଥାନ୍ତି ନିଜର ଗାଡ଼ିରେ । ହସ ଲାଗିଲା । କି ଛଳନା । ମାଟିକୁଟାର ମୂର୍ତ୍ତି ସମ୍ମୁଖରେ ଟଙ୍କା ଫୋପାଡ଼ିବାକୁ କୁଣ୍ଠାବୋଧ କରନ୍ତିନି ଏମାନେ । କିନ୍ତୁ ଦ୍ୱିଧା କରନ୍ତି ଭିକାରିଟିକୁ ଦାନ କରିବାକୁ ଦୁଇ ପଇସା ।

ତାହାହେଲେ ଏମାନେ ଭଗବାନଙ୍କୁ ଲାଞ୍ଚ ଦେଇ ନିଜର କରିବାକୁ ବସିଛନ୍ତି । ସେହି ଭଗବାନଙ୍କୁ, ଯାହାର ସନ୍ଧି ଏ ପର୍ଯ୍ୟନ୍ତ କେହି ପାଇ ପାରିନି ।

ପୋଲିସକୁ ଅତିକ୍ରମ କରି ଅନେକ ବେଳୁ ଚାଲି ଆସିଲିଣି । ଇଚ୍ଛା ହେଲାନାହିଁ ଅଉ ଅଗ୍ରସର ହେବାକୁ । ମନ ହେଲାନି ଏପରି ଏକ ଉତ୍ସବ ଦିନରେ ନିଜର ଦାରିଦ୍ର୍ୟକୁ ଅନ୍ୟମାନଙ୍କ ସମ୍ମୁଖରେ ନଗ୍ନ କରି ଦେବାକୁ ।

ଦୁଇଦିନର ହାଡ଼ଭଙ୍ଗା ଖଟଣି ପରେ ଯେଉଁ ତେର ଟଙ୍କା ସଂଚିଥିଲି, ତାହା ଖର୍ଚ୍ଚ କରି ଫେରିଲିବେଳକୁ ରାତି ଏଗାରଟା ! ସାରା ଗଳିଟି ସୁପ୍ତ । କିନ୍ତୁ ବାହାରେ ରାଜପଥରେ ଏବେ ବି ହଟ୍ଟଗୋଳ । କେତେ ପାର୍ଥକ୍ୟ ଏହି ଦୁଇ ମଧ୍ୟରେ । ଅତି ନିକଟରେ ଥାଇ ମଧ୍ୟ କେତେ ଦୂରରେ । କ'ଣ ପାଇଲି ଦିନସାରା ବୁଲି ବୁଲି; କେବଳ କ୍ଳାନ୍ତି । ଏହିପରି ବ୍ୟର୍ଥ ଜୀବନ ନେଇ କେତେଦିନ ଆଉ ପଶୁ ପରି ବଂଚି ରହିବି ?

ଗଳିଟିର ବୁଲା କୁକୁର ଦୁଇ ତିନୋଟି ଭୁକି ଉଠିଲେ । ଆକାଶରେ ଚନ୍ଦ୍ର ପରିଷ୍କାର ଭାବେ ଦେଖା ଯାଉଛି । ଚନ୍ଦ୍ରର ଅତି ନିକଟରେ ଏକ ତାରା । ଚନ୍ଦ୍ରର ଆଲୋକ ନିକଟରେ ତା'ର ସତ୍ତା ନାହିଁ (ଯଦିଓ ଚନ୍ଦ୍ରର ଆଲୋକ ତା'ର ନିଜର ନୁହେଁ ।) ଠିକ୍ ଆମର ସତ୍ତା ପରି । ଦୁହେଁ ଦୁହିଁଙ୍କ ଅତି ନିକଟରେ ଥାଇ ମଧ୍ୟ କେତେ ପାର୍ଥକ୍ୟ ଦୁହିଁଙ୍କ ମଧ୍ୟରେ ।

ଦୂରରୁ ଘଣ୍ଟା ପିଟାର ଶବ୍ଦ ଶୁଭିଲା । ବାରଟା ବାଜିଲା । ବିତିଗଲା ତାହାହେଲେ ଦଶହରା । ଦେବୀ ଯେଉଁ ମାଟିରୁ ତିଆରି ହୋଇଥିଲେ, ସକାଳେ ସେହି ମାଟିରେ ମିଶିଯିବେ ଜଳର ମାଧ୍ୟମରେ ।

ଖାଲି ରିକ୍ସାଟାଏ ଚାଲିଗଲା । ପାଟିକରି ଉଠିଲା ପରିଚିତ ଚାଳକଟି, "କିବେ କେତେ ରୋଜଗାର କଲୁ ଦଶହରାରେ ?" ଏବଂ ମୋ ଉତ୍ତରକୁ ଅପେକ୍ଷା ନ କରି ମୋତେ ଅତିକ୍ରମ କରି ଆଗକୁ ବଢ଼ିଗଲା । ଦଶହରା ତାହାହେଲେ ବଢ଼ିଗଲା ମୋର ଦାରିଦ୍ର୍ୟକୁ ପରିହାସ କରି । ଦଶହରା ତା' ହେଲେ ଧନୀମାନଙ୍କର; କିନ୍ତୁ ତଥାପି ମନ କହୁଛି—"ଦିନେ ହେଁ ପରିବର୍ତ୍ତନ ନିଶ୍ଚୟ ଆସିବ ।" ହେଲେ କେବେ ? ବୋଧହୁଏ ମୋ ପରି ବହୁ ବ୍ୟକ୍ତିଙ୍କ ତତଲା ଲୁହ ଓ ଲହୁର ମହୋଦଧି ପାରହୋଇ ପରିବର୍ତ୍ତନର ବୋଇତ ଏ ମାଟିର ବନ୍ଦରରେ ଲାଗିବ । ମୁଁ ଭାବିଲି ଏ ଚାକଚକ୍ୟପୂର୍ଣ୍ଣ ଓ ଆଭିଜାତ୍ୟଭରା ସମାଜକୁ ପରିବର୍ତ୍ତନର ମହାନଦୀ ଜଳରେ ଏଇପରି ଦିନେ ବିଲୀନ ହେବାକୁ ପଡ଼ିବ । ନିଶ୍ଚୟ ଧନବାଦୀ ବ୍ୟବସ୍ଥା ଦିନେ ସଲିଳ ସମାଧି ନେବ । ମୋ ମନ କହୁଛି "ସେ ଦିନ ଦୂର ନୁହେଁ ।"



('ସ୍ଫୁଲିଙ୍ଗ', ୧ମ ବର୍ଷ, ୧ମ ସଂଖ୍ୟା—ଜାନୁଆରୀ, ୧୯୭୯)

# ଏବଂ ମୁଁ ହାରିଗଲି

ସୁଲତାର ଚିଠି ମୁଁ ପାଇଥିଲି ଦୁଇଦିନ ତଳେ । 'ସୁଲତା' ଅର୍ଥ ଅତୀତର ଏକ ଅଧ୍ୟାୟ । ଏକ ସ୍ୱପ୍ନ···ଏକ କଳ୍ପନା । ଜୀବନର ପ୍ରଥମ ଏବଂ ଶେଷ ପ୍ରେମ ।

ଦୀର୍ଘ ଦୁଇ ବର୍ଷର ଘନିଷ୍ଠତା, ଅନ୍ତରଙ୍ଗତା ଓ ବୁଝାମଣା ପରେ ହଠାତ୍ ଏକ କମନୀୟ ସନ୍ଧ୍ୟାରେ ଲଣ୍ଡନ ଯିବାର ପ୍ରାୟ ଦୁଇମାସ ପୂର୍ବେ, ପାର୍କର ଶାନ୍ତ ସ୍ନିଗ୍ଧ ବାତାବରଣ ଓ ଫୁଲମାନଙ୍କର ଆକର୍ଷଣୀୟ ପରିବେଶ ମଧ୍ୟରେ ମୁଁ ତାକୁ 'ଏପ୍ରୋଚ' କରିଥିଲି ଏବଂ ସେ ସ୍ୱୀକାର କରିଥିଲା । ତାକୁ ନେଇ ମୁଁ ସ୍ୱପ୍ନ ଦେଖିଲି ଏବଂ ଅବଶେଷରେ ଲଣ୍ଡନ ଯିବାର ଦୁଇଦିନ ପୂର୍ବ ରାତିରେ ଏକାନ୍ତ କକ୍ଷରେ ତା' ଶରୀରର ଉତ୍ତେଜିତ ମହକ ଓ ଆକର୍ଷଣକୁ ଏଡ଼ାଇ ନ ପାରି ମୁଁ ହାତ ବଢ଼ାଇଥିଲି । ସେ ପ୍ରତିବାଦ କରି ନ ଥିଲା । ବିବାହ ପୂର୍ବରୁ ପ୍ରେମରେ ଶରୀର ସମ୍ପର୍କ ଏକ ନିହାତି ସାଧାରଣ କଥା ।

ତା'ପରେ ମୁଁ ଚାଲିଗଲି ଲଣ୍ଡନ । ତାକୁ ନେଇ ଦେଖିଥିବା ସ୍ୱପ୍ନକୁ ବାସ୍ତବରେ ପରିଣତ କରିବାର ଦୃଢ଼ ସଙ୍କଳ୍ପ ନେଇ, ଅନେକ ଅନିଶ୍ଚିତ ସମ୍ଭାବନାର ଆଶା ନେଇ ।

ଲଣ୍ଡନ ଅବସ୍ଥାନର ମାତ୍ର ଛ'ମାସ ପରେ ସମ୍ବାଦ ପାଇଲି ସୁଲତାର ବିବାହ ହେଉଛି । ଏକ ଅସମ୍ଭବ ଯନ୍ତ୍ରଣା ଓ ଅବିଶ୍ୱାସର ଭାବ ମୋତେ ଗ୍ରାସ କରି ପକାଇଲା ଏବଂ ବାରରେ ବସି ଡ୍ରିଙ୍କ କଲି ସମୟରେ ମୁଁ ସୁଲତାକୁ ଘୃଣା କରିବା ଆରମ୍ଭ କରିଦେଲି ।

କୋର୍ସ ସମାପ୍ତ କରି ସ୍ୱଦେଶ ପ୍ରତ୍ୟାବର୍ତ୍ତନ ପରେ ମୁଁ ସୁଲତା ବିଷୟରେ ସମସ୍ତ ତଥ୍ୟ ସଂଗ୍ରହ କରିଛି । ନିଜ ମନର ଉଦ୍‌ଗାରକୁ ଠୁଳ କରି ତା' ନିକଟକୁ ଅନେକ ଚିଠି ଦେଇଛି । ତା' ସ୍ୱାମୀକୁ ଆମର ସମ୍ପର୍କ ବିଷୟ ଜଣାଇ ଦେଇଛି । ଏକ ଛଳନାମୟୀ ନାରୀ ନିକଟରୁ ଯାହା ପ୍ରତିଶୋଧ ନେବାକଥା, ମୁଁ ନେଇଛି ।

ତଥାପି ମୁଁ ସନ୍ତୁଷ୍ଟ ହୋଇ ପାରିନ । ସର୍ବଦା ଏକ ଚିନ୍ତା, ଏକ ଦୁଃଖ, ଏକ ଅବଶୋଷ ମୋତେ ଗ୍ରାସ କରି ରଖିଛି । ମୁଁ ମାତାଲ କରକବଳିତ ହୋଇ ଯାଇଛି ଏବଂ କେବଳ ସୁଲତା କାହିଁକି ତା' ପରିବାରର ପ୍ରତ୍ୟେକଙ୍କୁ ଘୃଣା କରିବା ଆରମ୍ଭ କରି ଦେଇଛି । ଏପରିକି ରମା ଭାଉଜଙ୍କୁ ପୂର୍ବର ଏତେ ଘନିଷ୍ଠତା ସତ୍ତ୍ୱେ, ଲଣ୍ଡନରୁ ଫେରି ତାଙ୍କୁ ସାକ୍ଷାତ ମଧ୍ୟ କରିନ ।

ଏବଂ ଏହା ଭିତରେ ଅତିବାହିତ ହୋଇ ଯାଇଛି ଏକ ବର୍ଷ । ବର୍ଷକ ପରେ ହଠାତ୍ ଗତ ଦୁଇଦିନ ତଳେ ସୁଲତା ନିକଟରୁ ଖଣ୍ଡେ ଚିଠି ପାଇଛି । ଚିଠିଟି ପାଇଲା ପରେ ଆଶ୍ଚର୍ଯ୍ୟ ହେବା ମୋ ପକ୍ଷେ ନିହାତି ସ୍ୱାଭାବିକ ।

କମ୍ପିତ ହୃଦୟରେ ମୁଁ ଚିଠିଟି ଖୋଲିଲି । ଜାଣେନା କାହିଁକି ମୁଁ ଅନେକଟା ଉତ୍ତେଜିତ ହୋଇ ଉଠିଲି । ଥରେ, ଦୁଇଥର, ତିନିଥର···କ୍ରମାଗତ ତିନିଥର ଚିଠିଟିକୁ ମୁଁ ପଢ଼ିଲି···ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଏବଂ ତିନିଥରଯାକ ମୋ ଉପରେ ଉକ୍ତ ଚିଠିର ଭିନ୍ନ ଭିନ୍ନ ପ୍ରତିକ୍ରିୟା ହେଲା । ପ୍ରଥମେ ମୁଁ ଆନନ୍ଦିତ, ପରେ ସନ୍ତୁଷ୍ଟ ଓ ଶେଷଥର ଦୁଃଖିତ ହେଲି ।

ମୁଁ ମନେ ମନେ ଆଶ୍ଚର୍ଯ୍ୟ ହେଲି ନିଜ ଉପରେ । ହଠାତ୍ ମୋର ଏ ପରିବର୍ତ୍ତନ କାହିଁକି ? ମୁଁ ଚାହୁଁଥିଲି ସେ କେବେ ସୁଖୀ ନ ହେଉ । ତା'ର ବୈବାହିକ ଜୀବନ ନଷ୍ଟ ହୋଇଯାଉ ଏବଂ ତାହା ହିଁ ହୋଇଛି । ତଥାପି ମୁଁ କାହିଁକି ସନ୍ତୁଷ୍ଟ ହୋଇପାରୁ ନାହିଁ । ମୁଁ ଅନୁତପ୍ତ କାହିଁକି ?

ଅତୀତର ପ୍ରତ୍ୟେକ ଘଟଣାବଳୀ ମୋ ଆଖି ସାମ୍ନାରେ ସ୍ପଷ୍ଟ ହୋଇଗଲା । ମୁଁ ବିଶ୍ଳେଷଣ କରିବାକୁ ଲାଗିଲି । ମୋର ମନେହେଲା ଯେମିତି ମୁଁ ଭୁଲ୍ କରିଛି । ସୁଲତା କେବେ ମୋ ସହିତ ଛଳନା କରି ନ ପାରେ । ହୁଏତ ପରିସ୍ଥିତି ଦୃଷ୍ଟିରୁ ସେ ଅନ୍ୟକୁ ବିବାହ କରିବାକୁ ବାଧ୍ୟ ହୋଇଛି । ମୁଁ ତାକୁ ସାକ୍ଷାତ କରି ନିଜର ଭୁଲ୍ ପାଇଁ କ୍ଷମାମାଗି ନେବାକୁ ନିଶ୍ଚୟ କଲି ।

ଏବଂ ଆଜି ମୁଁ ସୁଲତାକୁ ସାକ୍ଷାତ କରିବାପାଇଁ ଟ୍ରେନରେ ଚଢ଼ି ଯାଉଛି । ଟ୍ରେନ ମନ୍ଥର ବା ନିଜ ସ୍ୱାଭାବିକ ଗତିରେ ଲକ୍ଷ୍ୟ ଉଦ୍ଦେଶ୍ୟରେ ଆଗେଇ ଚାଲିଛି ।

●

ପାଞ୍ଚ ନମ୍ବର ହେଲ୍ଡରର କର୍ଣ୍ଣିଷ୍ଟ ହ୍ୱାର୍ଟର ସମ୍ମୁଖରେ ଠିଆ ହୋଇ ମୁଁ ଅଯଥାରେ ଉତ୍ତେଜିତ ହୋଇ ପଡ଼ିଲି । ଏକ ଅଜଣା ଆଶଙ୍କା ମୋତେ ବଶୀଭୂତ କରି ପକାଇଲା । ସେ ମୋର ଆଗମନକୁ ଓ ମୋତେ କେମିତି ଗ୍ରହଣ

କରିବ, ତା' ମୁଁ ଭାବି ନ ପାରି ମନେ ମନେ ଆଶଙ୍କିତ ହୋଇ ଉଠିଥିଲି । ତା' ସମ୍ମୁଖରେ ଠିଆ ହେବାପାଇଁ ମୋ ନିକଟରେ ସତ୍‌ସାହସ ନ ଥିଲା । ଦୁନିଆରେ ଭଲ ତ କେହି କହିବେ ନାହିଁ । ତେଣୁ ଖରାପ କହିବା ପାଇଁ ସୁଯୋଗ ଦେବାଟା ମୂର୍ଖାମୀ ନୁହେଁ ତ ଆଉ କଅଣ ?

ସୁଲତାର କ୍ୱାର୍ଟର ସାମ୍ନାରେ ଠିଆ ହୋଇ ମୁଁ ଭାବୁଥିଲି, ତାକୁ ବରଂ କ୍ଷମା କରି ଦେଇଥିଲେ ଭଲ ହୋଇଥାନ୍ତା । ସେ ତ ମୋ ପ୍ରତି ଯାହା କୃତଜ୍ଞ ରହିଥାନ୍ତା, ତା'ପରେ ଦୁନିଆ ଆଗରେ ହିରୋ ମଧ୍ୟ ହୋଇ ପାରିଥାନ୍ତି···ଏ ଡିଭୋସନାଲ୍ ଲଭର, ତ୍ୟାଗର ପ୍ରତିମୂର୍ତ୍ତି ।

ରାସ୍ତାରେ କେହି ନ ଥାନ୍ତି । ତା' ସ୍ୱାମୀ ପ୍ଲାଣ୍ଟକୁ ଚାଲି ଯାଇଥିବାର ସମ୍ବାଦ ପାଇଲି ପରେ ହିଁ ମୁଁ ତା' ଘର ସମ୍ମୁଖରେ ଠିଆ ହୋଇ ନିଜକୁ ଭବିଷ୍ୟତର କଷ୍ଟପ୍ରଦ କ୍ଷଣମାନଙ୍କ ପାଇଁ ପ୍ରସ୍ତୁତ କରୁଥିଲି ।

●

ବର୍ତ୍ତମାନ ମୁଁ ତା' ଦ୍ୱାର ନିକଟରେ ଠିଆ ହୋଇ 'ନକ୍' କରୁଛି । ଦ୍ୱାର ଅପରପଟେ କାହାର ପାଦଶବ୍ଦ । ସୁଲତା ନୁହେଁ ତ ? ମୋର ହୃଦସ୍ପନ୍ଦନ ହଠାତ୍ ବୃଦ୍ଧି ପାଇଲା । ବର୍ଷେ ପରେ ତା' ସହିତ ଦେଖା । ତା'ର ଏଇ ନୂତନ ପରିପାର୍ଶ୍ୱକୁ ମୁଁ ଗ୍ରହଣ କରି ପାରିବି ତ ? ନିଜକୁ ମୁଁ ଦୃଢ଼ କରିଦେଲି ।

ଦ୍ୱାର ଖୋଲିଗଲା । ସମ୍ମୁଖରେ ଏକ କିଶୋର—"କାହାକୁ ଖୋଜୁଛନ୍ତି ?"

"ତୁମ ମା'ଙ୍କୁ ଟିକେ ଡାକିଦିଅ ।"

ଘର ଭିତରୁ ମୋର ଅତି ପରିଚିତ ସ୍ୱର—"କିଏ ଶିବ ?"

ତା'ପରେ ପାଦଶବ୍ଦ ନିକଟ, ନିକଟତର ଏବଂ ନିକଟତମ ହେଲା ପରେ ମୁଁ ଦେଖିଲି ସୁଲତାକୁ; ମୋର ଅତି ପରିଚିତା ସୁଲତାକୁ—ମଥାରେ ସିନ୍ଦୂର ଏବଂ ହାତରେ ଚୁଡ଼ି ପିନ୍ଧିଥିବା ବିବାହିତା ଏବଂ ଏକ ସନ୍ତାନର ଜନନୀ ସୁଲତାକୁ ।

ତା'ର ଗତି ହଠାତ୍ ବନ୍ଦ ହୋଇଗଲା ମୋତେ ଲକ୍ଷ୍ୟକରି । ପ୍ରଥମେ ଠିଆହେଲା ଆଖିରେ ଆଖିଏ ଆଶ୍ଚର୍ଯ୍ୟ ନେଇ । ତା'ପରେ ଆଖିରେ ଲୁହ ଭରିଗଲା । ମୁଁ ଧୀରେ ଧୀରେ ସ୍ମୃତି ଭିତରୁ ତରଳିବାକୁ ଆରମ୍ଭ କଲି । ସ୍ମୃତିର ଝୋଟା ଭିତରକୁ ଚାଲି ଯାଇଥିଲି ।

ମୋର ପ୍ରଥମ ପ୍ରଶ୍ନ—"କେମିତି ଅଛ ?"

ଦ୍ୱାରବନ୍ଧରେ ମୁଣ୍ଡ ଲଦଦେଇ ସେ କାନ୍ଦ ଆରମ୍ଭ କଲା । ମୁଁ କୈଫିୟତ ମାଗିବା ଭୁଲିଗଲି, ଚତୁଃପାର୍ଶ୍ୱର ବାତାବରଣକୁ ଭୁଲିଗଲି । ଭୁଲିଗଲି ଯେ ମୁଁ ନିଜ ଏକାନ୍ତ କକ୍ଷରେ ନୁହେଁ, ତା'ର ଘରେ ଅଛି ଏବଂ ଭୁଲିଗଲି ଯେ ସେ ବର୍ତ୍ତମାନ ବିବାହିତା—ଅନ୍ୟର ପତ୍ନୀ ।

ତା' ଶରୀରର କମ୍ପନକୁ ମୁଁ ସ୍ପଷ୍ଟ ଦେଖି ପାରୁଥିଲି । ସାନ୍ତ୍ୱନା ଦେବାପାଇଁ ଇଚ୍ଛା ଥିଲେ ମଧ୍ୟ ମୁଁ ଶବ୍ଦ, ଭାଷା କିଛି ଖୋଜି ଖୋଜି ପାଉ ନ ଥିଲି । ତା' ଶରୀରର ପରିବର୍ତ୍ତନ ମୁଁ ଲକ୍ଷ୍ୟ କରୁଥିଲି । ଆଖି ତଳର କଳା ଦାଗ ଏବଂ କ୍ଷୀଣ ଶରୀର ମୋତେ ପ୍ରଭାବିତ କରିଥିଲା ।

"ମୁଁ ଛଳନା କରିଛି ଏକଥା ତୁମେ ଭାବି ପାରିଲ ?" ତା'ର ସ୍ୱର ।

ମୁଁ କିଛି କହିପାରୁ ନ ଥିଲି ।

"ଦେଖିନଅ ଆସିଛ ଯେତେବେଳେ । କେଉଁ ସୁଖ ପାଇଁ ମୁଁ ତମ ସହିତ ଛଳନା କଲି ।" ତା' ସ୍ୱରରେ ତଥାପି କୋହ । ସେ ନିଜକୁ ସଂଯତ କରିବା ପାଇଁ ଚେଷ୍ଟା କରୁଥିଲା ।

"ତାହାହେଲେ ଏଇଟା ସମ୍ଭବ ହେଲା କେମିତି ?"

"ରମା ଭାଉଜ, ସମସ୍ତ ଚକ୍ରାନ୍ତ କରି ଏବେ ମୋତେ ନର୍କ ଯନ୍ତ୍ରଣା ଦେଉଛନ୍ତି । ତାଙ୍କରି ଦୟାରୁ ଏସବୁ ଘଟିଛି ।"

ରମା ଭାଉଜ···ମୋ ଆଖି ସମ୍ମୁଖରେ ସେଇ କାମନାପ୍ରିୟ ନାରୀଟିର ମୁଖ ଭାସି ଉଠିଲା । ଲଣ୍ଡନ ଯିବାର ପୂର୍ବଦିନ ରାତିରେ ରାଜଧାନୀର ବିଖ୍ୟାତ କ୍ଲବର ଉତ୍ତେଜକ ବାତାବରଣରେ ସେ ଓ ମୁଁ । ଅତି ତିକ୍ତ ଅନୁଭୂତ ।

"ତୁମେ ସୁଲତାକୁ ପ୍ରେମକର ନିଶ୍ଚୟ ?" ମୋ ଟେବୁଲରେ ବସିପଡ଼ି ସେ ହସି ହସି ମୋତେ ପ୍ରଶ୍ନ କରିଥିଲେ ।

"ଆପଣଙ୍କୁ ଠିକ୍ ଚିହ୍ନି ପାରିଲିନି ।" ମୁଁ ଆଶ୍ଚର୍ଯ୍ୟ ହୋଇଥିଲି ।

"ମୁଁ ସୁଲତାର ଭାଉଜ ।" ସେ ପୁନର୍ବାର ହସିଲେ ।

ତାଙ୍କ ଶରୀରର ଆକର୍ଷଣରେ ମୁଁ ମୁଗ୍ଧ ହୋଇ ଉଠିଥିଲି । ଆଖିରେ ନୁଗ ଯୁଗର କ୍ଷୁଧା । ଅଧରରେ ଆଦମ ଯୁଗର ତୃଷା । ମୁଁ ହଠାତ୍ ଅନ୍ୟମନସ୍କ ହୋଇ ଉଠିଥିଲି !

"ତୁମେ ଡ୍ୟାନ୍ସ ଜାଣ ?" ତାଙ୍କ ପାଦର ସ୍ପର୍ଶ ମୋ ବୁଟ୍ ଉପରେ ମୁଁ ଅନୁଭବ କରି ପାଦ ଘୁଞ୍ଚାଇ ଆଣିଥିଲି ।

"ନା···।" ମୋର କୁଣ୍ଠାଗ୍ରସ୍ତ ସ୍ୱର ।

ହଲ୍ ଅନ୍ଧାର ହୋଇ ଯାଉଥିଲା । ମହମବତୀର ଆଲୋକରେ ଗୁଣ୍ଡିମାନେ ନାଚୁଥିଲେ । ସେ ମୋ ହାତ ପାପୁଲିକୁ ଚିପିଧରି ଅସ୍ପଷ୍ଟ ସ୍ୱରରେ କହୁଥିଲେ—"ତୁମେ ଆଜି ବିନା ଦ୍ୱିଧାରେ ମୋ ସହିତ ରାତ୍ରି ଯାପନ କରିପାର ।"

ମୁଁ କିନ୍ତୁ ଉଠି ଚାଲି ଆସିଥିଲି । ତା'ର ଫଳ ସ୍ୱରୂପରେ ମୋ ଉପରେ ପ୍ରତିଶୋଧ ନେଇଛନ୍ତି ।

"ଆଜି ସମସ୍ତେ ମୋତେ ଘୃଣା କରୁଛନ୍ତି । ସମସ୍ତଙ୍କ ଆଖିରେ ମୁଁ ନୀଚ ।" ସୁଲତା କହୁଥିଲା ଏବଂ ମୁଁ ଅପରାଧୀ ପରି ତା' ସମ୍ମୁଖରେ ଠିଆ ହୋଇ-ଥିଲି । ମୁଁ ଯଦି ଅତୀତର ପୃଷ୍ଠାଗୁଡ଼ାକ ସମସ୍ତଙ୍କ ଚକ୍ଷୁ ସମ୍ମୁଖରେ ଖୋଲିଦେଇ ନ ଥାନ୍ତି, ତାହାହେଲେ ଅନେକ ନଷ୍ଟ ଚରିତ୍ର ଯୁବତୀମାନଙ୍କର ଚରିତ୍ର ବିବାହ ପରେ ଲୁଚିଗଲା ପରି, ଆଜି ସୁଲତା ମଧ୍ୟ ସମାଜରେ ଏକ ଉଚ୍ଚ ସ୍ଥାନ ଅଧିକାର କରି ପାରିଥାନ୍ତା ।

"ମୁଁ ତମକୁ ଦୋଷ ଦେଉନାହିଁ । ସବୁ ମୋ ଭାଗ୍ୟ । ତମକୁ ଦୋଷ ଦେଇ ଲାଭ ବା କଅଣ ?" ସେ ମୋତେ ସାନ୍ତ୍ୱନା ଦେଉଥିଲା । ମୁଁ ଦମ୍ଭ ତରଳି ଯାଉଥିଲି । ତା' ପାପୁଲିକୁ ଜାବୁଡ଼ିଧରି ବାଷ୍ପାରୁଦ୍ଧ କଣ୍ଠରେ କ୍ଷମାପ୍ରାର୍ଥନା କଲି—"ସୁଲତା···ମୋତେ କ୍ଷମା କରିଦିଅ ।"

ଏବଂ ସେ ମୋତେ କ୍ଷମା କରିଦେଲା ।



ବେଡ଼ରୁମ୍‌ର ଶାନ୍ତ ବାତାବରଣରେ ବସିରହି ମୁଁ ତାକୁ ଦେଖୁଥିଲି । ସେ କୈଫିୟତ ଦେଉଥିଲା ଏବଂ ମୁଁ କୈଫିୟତ ଦେଉଥିଲି । ଦୁହିଁଙ୍କଙ୍କ ମନରେ ଥିବା ଭୁଲ୍ ବୁଝାମଣା ଦୂର ହୋଇ ଯାଇଥିଲା । ମୁଁ ଧୀରେ ଧୀରେ ତା' ଶରୀରର ଗନ୍ଧରେ ଉତ୍ତେଜିତ ହୋଇ ଉଠୁଥିଲି ।

ସେ ନିଜ ଶାଶୁ ଶ୍ୱଶୁରଙ୍କ ବ୍ୟବହାର ଓ ସ୍ୱାମୀଙ୍କ ଅତ୍ୟାଚାରର ବର୍ଣ୍ଣନା କରି ଚାଲିଥାଏ ଏବଂ ମୁଁ ବସ୍ତ୍ରର ଆବରଣ ତଳେ ଲୁଚି ରହିଥିବା ତା' ନଗ୍ନ ଶରୀର ବିଷୟରେ ଚିନ୍ତା କରୁଥାଏ । ଅବଶେଷରେ ନିଜକୁ ଆୟତ୍ତ କରି ନ ପାରି ତାକୁ ଚୁମା ଦେଲି । ସେ ପ୍ରତିବାଦ କଲାନାହିଁ । ତା' ପରେ ଆଉ ଏକ ପଦକ୍ଷେପ···ଏବଂ ତା'ର ପ୍ରତିବାଦ···ଏକ କ୍ଷୀଣ ପ୍ରତିବାଦ—"ବର୍ତ୍ତମାନ ଏସବୁ ଉଚିତ ହେବନାହିଁ । ସେ ଜାଣିଲେ ମୋତେ ମାରି ପକାଇବେ ।"

ମୁଁ ଆଘାତ ପାଇଲି···ପ୍ରଚଣ୍ଡ ଆଘାତ । ଉଠି ଠିଆହୋଇ କହିଲି—"ଠିକ୍ ଅଛି ଲତା, ତାହାହେଲେ ଏଥର ମୁଁ ଆସୁଛି । ମୁଁ କେବେ ଜୋର କରି କମ୍ବା ତୁମ ଦୁର୍ବଳତାର ସୁଯୋଗ ନେବାପାଇଁ ଏଠାକୁ ଆସିନାହିଁ । ଆସିଥିଲି ତୁମକୁ ଥରେ ଦେଖିବା ପାଇଁ—ଦେଖିଲି ମଧ୍ୟ ଏବଂ ଦୀର୍ଘଦିନ—ଏଇ ଏକ ବର୍ଷ ଧରି ଯେଉଁ ଉଦ୍‌ଗାର ଓ କାମନା ମନରେ ଜମାଟ ବାନ୍ଧିଥିଲା, ତାହା ଆଜି ଉଗ୍ରଳିଗଲା । ମୁଁ ନିଜକୁ ଅଟକେଇ ପାରିଲି ନାହିଁ । ଭୁଲିଗଲି ତୁମେ ବିବାହିତା—ମୋର ନୁହଁ ଅନ୍ୟର ପତ୍ନୀ । ସେ ଅଧିକାର ମୁଁ ହରେଇ ବସିଛି ।

ସେ ମୋ ହାତଧରି ଅଟକେଇ ଦେଲା—"ମୋତେ ଭୁଲ୍ ବୁଝନାହିଁ । ଏମିତି ଚାଲିଯିବା ଅପେକ୍ଷା ବରଂ ମୋତେ ମାରିଦେଇ ଯାଅ ।"

ମୁଁ ଅଟକିଗଲି । ତା'ର ଲୁହଭିଜା ମୁହଁରେ ଚୁମା ଦେଲି ଏବଂ ତା'ପରେ ମୁଁ ହଜିଗଲି ଅତୀତର ଘଞ୍ଚ କଳା ଅନ୍ଧାର ମଧ୍ୟରେ । ପୁନରାବୃତ୍ତି ହେଲା ଆଦମ ଯୁଗର ସେହି ଖେଳ, ଯାହା ପାଇଁ ଆଜି ମଣିଷ ହୋଇ ଉଠିଛି ଏତେ ହିଂସ୍ର, ଏତେ ନୀଚ ।

ନିଜର ସମସ୍ତ ପ୍ରକାର ଉତ୍ତେଜନାର ଉପଶମ ପରେ ମୁଁ ଉଠି ଠିଆହେଲି । ବିଛଣାରେ ସୁଲତା ସେଇପରି ପଡ଼ିଥାଏ । ତା' ନଗ୍ନ ଶରୀରକୁ ଦେଖି ମୋର ଘୃଣାହେଲା । ଛିଃ ! ଏଇ ଘୃଣ୍ୟ, କଦର୍ଯ୍ୟ ଶରୀର ପାଇଁ ମୁଁ ହଠାତ୍ ଏତେ ତଳକୁ ଖସିଗଲି । ନିଜ ଉପରେ ମୋର ଘୃଣାହେଲା । କେଉଁ ଅଧିକାର ନେଇ ମୁଁ ଏକ ବିବାହିତା ନାରୀର ଶରୀରକୁ ଅଶ୍ଳୀଳ ଭାବେ ବ୍ୟବହାର କଲି ? ଏହାଠାରୁ ବରଂ ଭଲ କୌଣସି 'ବେଶ୍ୟା ନିକଟକୁ ଯାଇ ନିଜ ଉତ୍ତେଜନାର ଉପଶମ କରାଇ ନେବାଟା । କିନ୍ତୁ କୌଣସି ନାରୀର ଦୁର୍ବଳତାର ସୁଯୋଗ ନେଇ···। ନାଃ !

"ଲତା ମୋତେ କ୍ଷମାକର ! ମୁଁ ପାଗଳ ହୋଇ ଯାଇଥିଲି ।"

"ତମର କିଛି ଭୁଲ୍ ନାହିଁ । ଏ ନିହାତି ସ୍ୱାଭାବିକ କଥା । ତମର ପ୍ରାପ୍ୟ ତୁମେ ପାଇଗଲ । ଏଥର ଆଉ କିଛି ମୋ ଉପରେ ତୁମର ବାକି ରହିଲା ନାହିଁ ।" ସେ ନିଜକୁ ସଂଯତ କରିନେଇ ମୋତେ ଲକ୍ଷ୍ୟକଲା । ମୁଁ ତା' ଆଖିରେ ଆଖି ମିଳାଇ ପାରିଲି ନାହିଁ ।



ଦ୍ୱାର ନିକଟରେ ମୁଁ ତାକୁ ଅନେଇ ଠିଆ ହୋଇଛି । ସେ କାନ୍ଦୁଛି । ମୋ ଆଖିରେ ମଧ୍ୟ ଲୁହ । ଏହାପରେ କେବେ ଯେ ଆମର ସାକ୍ଷାତ ହେବ ତା'

ହୁଏତ କେହି କହି ପାରିବେ ନାହିଁ । ମୋତେ ଲାଗୁଛି ଯେମିତି ଏଇଟା ଆମର ଶେଷ ସାକ୍ଷାତ । ଏଇକ୍ଷଣ ପରେ ଆମେ ଆଉ କେହି କାହାକୁ ଚହ୍ନି ପାରିବୁ ନାହିଁ ।

ତା'ର ପରିସ୍ଥିତି ପ୍ରତି ମୋର ଦୟା ହେଉଛି । ମୁଁ ମନରେ କିଛି ଗୋଟାଏ ନିଷ୍ପତ୍ତି କରି ତାକୁ ପଚାରୁଛି—"ଲତା, ଗୋଟାଏ କଥା କହିବି ମାନିବ ?"

"କଅଣ କୁହ ।"

"ତୁମେ ନିଜ ସ୍ୱାମୀଙ୍କ ନିକଟରୁ ଡାଇଭୋର୍ସ ନେଇ ଆସ । ତା'ପରେ ମୁଁ ତୁମକୁ ବିବାହ କରିବି ।" ଏତିକ କହି ତା' ମୁହଁକୁ ମୁଁ ଲକ୍ଷ୍ୟକଲି । ମୁଁ ଭାବିଥିଲି ସେ ଆଶ୍ଚର୍ଯ୍ୟ ହେବ । କିନ୍ତୁ ସେ ଆଶ୍ଚର୍ଯ୍ୟ ନ ହୋଇ ହସିଲା—"ମୋ ନିକଟରେ ସେ ସାହସ ନାହିଁ । ସାହସ ଥିଲେ ମୁଁ ନିଜ ବିବାହରେ ପ୍ରତିବାଦ ଜଣାଇ ପାରି ନ ଥାନ୍ତି ? ଆଉ ମୋ ସ୍ୱାମୀ । ସେ କେବେ ମୋତେ ଡାଇଭୋର୍ସ ଦେବେନାହିଁ ।"

ମୁଁ ଆଶ୍ଚର୍ଯ୍ୟ ହେଲି—"ଏତେ ଘଟଣା ପରେ · ଏତେ ମନର ଅମେଳ ସତ୍ତ୍ୱେ ସେ ଛାଡ଼ିବା ପାଇଁ ପ୍ରସ୍ତୁତ ନୁହେଁ କାହିଁକି ?"

"ତୁମେ ବୋଧହୁଏ ଜାଣିନ, ଭାଉଜଙ୍କ ସହିତ ମୋ ସ୍ୱାମୀଙ୍କର ଅବୈଧ ସମ୍ପର୍କ ଅଛି । ସେଇଥିପାଇଁ ସେ ମୋତେ ଛାଡ଼ିପାରୁ ନାହାଁନ୍ତି । ନଚେତ୍ ମୋ ଅତୀତ ଜାଣି ସିଏ କେହି ମଧ୍ୟ ଗ୍ରହଣ କରିବାକୁ ପ୍ରସ୍ତୁତ ହୋଇ ନ ଥାନ୍ତା ।"

ମୁଁ ଦୁଃଖରେ ଭାଙ୍ଗିପଡ଼ିଲି । ଏକ ନୂତନ ରହସ୍ୟ ମୋ ଆଖି ସମ୍ମୁଖରେ ନିଜର ଭୟାବହ ସ୍ୱରୂପ ଦେଖାଇ ଅଟ୍ଟହାସ୍ୟ କଲା । ମୁଁ ବ୍ୟସ୍ତ ହୋଇ ପଡ଼ିଲି । ତାହାହେଲେ ସୁଲତାର ଭବିଷ୍ୟତ କଅଣ କେବଳ ଅନିଶ୍ଚିତରେ ରହିଯିବ ।

ସେ ବୋଧହୁଏ ମୋ ମନର ଦ୍ୱନ୍ଦ୍ୱକୁ ବୁଝିପାରିଲା । କହିଲା—"ତୁମେ ମୋ ପାଇଁ ଚିନ୍ତା କରନାହିଁ । ମୋ ଭାଗ୍ୟରେ ଯାହା ଅଛି—ମୁଁ ତାହା ଭୋଗିବି । ଯେଉଁ ବନ୍ଧନ ମଧ୍ୟରେ ଥରେ ବାନ୍ଧି ହୋଇ ଯାଇଛି, ଆଉ ତାକୁ କେବେ ଛିଣ୍ଡାଇ ପାରିବ ନାହିଁ । ତୁମ ପ୍ରତି ମୁଁ ଅଜାଣତରେ ଅନ୍ୟାୟ କରିଥିଲି । ତା'ର କ୍ଷତିପୂରଣ ଆଜି ନିଜ ଶରୀର ପ୍ରତିବଦଳରେ ଦେଇଦେଲି ।"

"କିନ୍ତୁ ତୁମର ଭବିଷ୍ୟତ ?" ମୁଁ ପ୍ରତିବାଦ କଲି ।

"ମୋ ଭବିଷ୍ୟତ ମୋ ସନ୍ତାନ । ମୁଁ ପ୍ରେମିକା ନୁହେଁ କିମ୍ବା ପତ୍ନୀ ନୁହେଁ କାହାର । ମୁଁ କେବଳ ମା' । ଏଥରକ ମୋ ସନ୍ତାନ ପାଇଁ ମୁଁ ବଞ୍ଚିବି ।"

କଥା ବନ୍ଦକରି ସେ ମୋତେ ଅନେଇଲା । ଯେମିତି ମୋତେ ପରଖି ନେବାକୁ ଚାହେଁ । ହଠାତ୍ ଗଳା ସଫାକରି କହିଲା—"ତୁମେ ମୋତେ ସୁଖୀ ଦେଖିବାକୁ ଚାହଁ, ସତ କହିବ ?"

ମୁଁ ମୂକ ହୋଇଗଲି ।

"ତାହାହେଲେ ମୋତେ ଗୋଟିଏ କଥା ଦିଅ ।" ତା' କଣ୍ଠସ୍ୱର ଦୃଢ଼ ହୋଇ ଆସିଲା ।

ମୁଁ ନୀରବ ରହିଲି ।

"ଅଜି ପରେ ଆଉ କେବେ ମୋତେ ଦେଖା କରିବାକୁ ଚେଷ୍ଟା କରିବ ନାହିଁ । ଭୁଲିଯିବ ସେଇ ସୁଲତାକୁ, ଯାହାକୁ କେବେ ଭଲ ପାଉଥିଲ । ଭୁଲିଯିବ କେବେ ତା' ଶରୀରକୁ ସ୍ପର୍ଶ କରିଥିଲ । ଏପରିକି କୌଣସି ପଥର ମୋଡ଼ରେ ଅଥବା ପଥ ମଧ୍ୟେ ଦେଖାହେଲେ ତୁମ ପାଇଁ ମୁଁ ହେବି ଅପରିଚିତା ଏବଂ ମୋ ପାଇଁ ତୁମେ ହେବ ଅପରିଚିତ । ଏକ ପ୍ରେମିକାଠାରୁ ଯାହା ପାଇବା କଥା ତାହା ତୁମେ ପାଇଛ । ଆଉ କିଛି ପାଇ ପାରିବ ନାହିଁ ବା ମୁଁ ଆଉ କିଛି ତୁମକୁ ଦେଇ ପାରିବି ନାହିଁ । କୁହ – ଏ ପ୍ରତିଜ୍ଞା ତୁମେ ମୋତେ ଛୁଇଁ କରି ପାରିବ ?"

ମୁଁ ନିର୍ବୋଧଙ୍କ ପରି ତାକୁ ଚାହିଁଥିଲି କେବଳ ।



ଅବଶେଷରେ ମୁଁ ତା' ଦେହ ଛୁଇଁ ପ୍ରତିଜ୍ଞା କଲି । ବିଶ୍ଳେଷଣ କରି ଦେଖିଲି ସେ ଠିକ୍ କହୁଛି । ଆମର ପୃଥକ ହୋଇଯିବା ହିଁ ଉଚିତ । ମନ ଭିତରେ ଦୁର୍ବଳତା ଅଥବା ଆକ୍ରୋଶ ଭରି ବଞ୍ଚି ରହିଲେ, କେହି ତ ସୁଖୀ ହୋଇ ପାରିବେ ନାହିଁ । ତେଣୁ ଭୁଲିଯିବା ହିଁ ଉଚିତ ହେବ ।

ମୁଁ ତା' ମଙ୍ଗଳକାମନା କରି ଶେଷଥର ପାଇଁ ତାକୁ ଦେଖି ଚାଲି ଆସିଲି ପରକ୍ଷଣରେ ସେ ଟିକେ ବି ଅପେକ୍ଷା ନ କରି କବାଟଟା ଧଡ଼୍ କରି ବନ୍ଦ କରିଦେଲା ।

ଏବଂ ସେଇ ନିର୍ଦ୍ଦିଷ୍ଟ କ୍ଷଣରେ ମୁଁ ସମ୍ପୂର୍ଣ୍ଣ ହାରିଯାଇ, ଲଜ୍ଜା ଓ ଅପମାନରେ ମଥା ତଳକୁ କଲି ।



('ଅଧୁନା' ଜାନୁୟାରି, ୧୯୭୦)

# ନିଭୃତ

ରାଜା ବିକ୍ରମ ସିଂହଙ୍କ ବିରାଟ ରାଜପ୍ରାସାଦ । ତା' ନିକଟରେ ଥିବା ଭଙ୍ଗା ପାଚେରୀ ଓ ସମ୍ମୁଖ ଗ୍ରେଟ ଗ୍ଲଲଘର ।

ଗ୍ଲଲଘର କାନ୍ଥରେ ଏକ ପୁରୁଣା ଟିଣରେ ଲେଖା ହୋଇଛି— "ଏଠାରେ ସମସ୍ତ ପ୍ରକାରର ଘଣ୍ଟା ମରାମତି ହୁଏ ।" ଦ୍ୱାର ସବୁବେଳେ ଖୋଲା । ଘର ଭିତରେ ଘରର ମାଲିକ ଦୀନବନ୍ଧୁ ନାକ ଉପରେ ଭଙ୍ଗା ଚଷମାଟିକୁ ଲଗେଇ ଗୋଲ ଟେବୁଲ ଉପରେ ଟେବୁଲ ଲାମ୍ପର ଆଲୋକରେ ସଦାସର୍ବଦା କୌଣସି ଘଣ୍ଟା ସହିତ ଲାଗିଥିବାର ଦେଖା ଯାଇଥାଏ । ବେଳେ-ବେଳେ କ୍ଲାନ୍ତି ଦୂର କରିବା ଉଦ୍ଦେଶ୍ୟରେ ଘର ମଧ୍ୟର ଟିକ୍ ଟିକ୍ ଶବ୍ଦକୁ ଶୁଣି ସମ୍ମୁଖ ଭଙ୍ଗା ପାଚେରୀକୁ ଲକ୍ଷ୍ୟକରି ସେ ଖୁସି ହୁଏ ।

ରାଜା ବିକ୍ରମ ସିଂହ ପୁରାତନର ମୂଲଦୁଆ ଉପରେ ବସି ଭାବନ୍ତି, ଆଉ କେତେଦିନ ? ଗଣତାନ୍ତ୍ରିକ ସରକାର ଗଠନ ହେଲା, ରାଜା ପଦବୀ ଗଲା । ଏଇ ଯେଉଁ ପ୍ରଜାମାନେ ଆଜି ମୁଣ୍ଡ ଉଠାଇ ଚାଲିଛନ୍ତି, ଗତକାଲି ତାଙ୍କୁ ଦେଖୁଥିଲେ ଆଣ୍ଠୁମାଡ଼ି ପଡ଼ି ଯାଉଥିଲେ । ଲଜ୍ଜା, ଅପମାନ··· । ନିଜ ଶୟନ କକ୍ଷର କାନ୍ଥରେ ସେ ଲକ୍ଷ୍ୟ କରନ୍ତି ଗତକାଲିର ବଂଶଧରମାନଙ୍କୁ । ଆଭିଜାତ୍ୟ, ପ୍ରତିଷ୍ଠା, ଗୌରବ ଯେପରି ସେମାନଙ୍କର ଶରୀରର ପ୍ରତ୍ୟେକ ଅଙ୍ଗରେ ଜମା ହୋଇଛି । ଯୁଗ ସହିତ ବଦଳିବା ମଣିଷର ଧର୍ମ ! ହେଲେ ସେ ଯେ ରାଜା ! ରାଜବଂଶରେ ଜନ୍ମ ହୋଇ ସେ ଏହି ସାଧାରଣ ମଣିଷମାନଙ୍କ ସହିତ ପାଦ ମିଳେଇ ଚାଲିବେ । ଅତୀତର ଗୌରବମୟ ଅଧ୍ୟାୟକୁ ଏତେ ସହଜରେ ଭୁଲେଇ ଦିଆଯାଇ ନ ପାରେ ।

ବିରାଟ ରାଜପ୍ରାସାଦ ଆଜି ଶୂନ୍ୟ, କେତୋଟି ଭୃତ୍ୟଙ୍କୁ ବାଦ୍‌ଦେଇ । ରାଜବଂଶର ଶେଷ ଦାୟାଦ ରାଜା ବିକ୍ରମ ସିଂହ ବିଚଳିତ ହୋଇ ପଡ଼ନ୍ତି । ଏ ରାଜବଂଶ କଅଣ ତାହାହେଲେ ଅମୁହାଁଣି ଛକ ନିକଟରେ ପହଞ୍ଚି ନିଜ ଗତି

ହରେଇବ ? ଦୁଇ ହାତ ପିଠିରେ ବାନ୍ଧି ସେ ବ୍ୟସ୍ତତାରେ ପଦଚାଳନା କରନ୍ତି । ସମସ୍ତ କଅଣ ଏଇଠି ଅଟକି ପାରନ୍ତା ନାହିଁ । ସମୟକୁ କଅଣ ଏଇଠି ଅଟକେଇ ଦିଆଯାଇ ପାରନ୍ତା ନାହିଁ । ଏତେ ଧନ ସମ୍ପତ୍ତି କୁଆଡ଼େ ଯିବ ? ସେ ଭାବି ପାରନ୍ତି ନାହିଁ । କାନ୍ଥରେ ଝୁଲୁଥିବା ଇଂରେଜ ଅମଳର ଅଟୋମେଟିକ ଓ୍ୟାଲକ୍ଲକକୁ ଲକ୍ଷ୍ୟ କରନ୍ତି । ନା...ସେ ସମୟକୁ ଅଟକେଇ ପାରିବେ ନାହିଁ । ସମୟ ତା' ନିଜ ଗତିରେ ଆଗେଇ ଚାଲିଛି...ଟିକ୍ ଟିକ୍ ଅବିରାମ ଗତିରେ । ସେ ଘଡ଼ିଟି ତାଙ୍କ ପିତାମହ ପାଇଥିଲେ ଲାଟସାହେବଙ୍କ ନିକଟରୁ ପୁରସ୍କାର ସ୍ୱରୂପ । ଆଜି ପର୍ଯ୍ୟନ୍ତ କେବେ ଚାବି ଦେବା ଦରକାର ପଡ଼ିନି କିମ୍ବା ମରାମତିର କେବେ ପ୍ରଶ୍ନ ଉଠିନି । ସେ ଚାଲିଛି ଠିକ୍ ସମୟ ସହିତ ତାଳ ଦେଇ । ସେ ତାଳରେ ଯେପରି ରାଜା ବିକ୍ରମ ସିଂହ ହାରି ଯାଇଛନ୍ତି । ହେଲେ ନିଜର ଅତୀତକୁ ସେ ଭୁଲିପାରି ନାହାଁନ୍ତି । ନିତ୍ୟ କର୍ମରେ କେବେ କୌଣସି ସମୟରେ ଟିକେ ବି ଖିଲାପ ହୋଇନି । ଓ୍ୟାଲକ୍ଲକ ସକାଳ ଛଅରେ ତାଙ୍କ ମସ୍ତିଷ୍କରେ ଛଅଥର ଠନ୍...ଠନ୍...ପ୍ରହାର କରେ । ସେ ଉଠି ବସନ୍ତି । ପରିଚାରକମାନେ ପୁରୁଣା କାଇଦାରେ ଠିଆ ହୋଇଥାନ୍ତି । ତା'ପରେ ତାଙ୍କର ଆରମ୍ଭ ହୁଏ ଦିନଚର୍ଯ୍ୟା । ସେ ଭାବନ୍ତି ଯଦି ଦିନେ ଏଇ ଘଣ୍ଟା ଖରାପ ହୋଇଯାଏ, ତେବେ ସେ କିପରି ତା'ର ଅଭାବ ବରଦାସ୍ତ କରିବେ ?

ସେ ବାଲକୋନିକୁ ଚାଲିଯାନ୍ତି । ସେଠି ଠିଆ ହୋଇ ସେ ଲକ୍ଷ୍ୟ କରନ୍ତି ନିକଟରେ ଧୀର ମନ୍ଥର ଗତିରେ ବହି ଯାଉଥିବା ନଦୀକୁ; ସୁଦୂର ବିସ୍ତୃତ ପୃଥିବୀକୁ, ଦୂର ଦିଗ୍‌ବଳୟକୁ, ବସନ୍ତକୁ ଏବଂ ତା' ସହିତ ବଉଳର ବାସ୍ନାକୁ ! ଚତୁର୍ଦ୍ଦିଗରେ ଏକ ସ୍ନିଗ୍ଧତା...ଏକ ନୀରବତା ! ସେ ଶାନ୍ତି ଅନୁଭବ କରନ୍ତି । ତଥାପି ମନରେ କେଉଁଠି ଟିକେ ଯେପରି ଫାଙ୍କ ରହିଯାଏ । ଆଜି ସେ ନିଃସ୍ୱ .. ଏକାକୀ । ଜୀବନର ଆଉ କେତୋଟା ଦିନକୁ ଏହିପରି ଖାପଛଡ଼ା ଭାବରେ ଅତିବାହିତ କରିବାର ଧୈର୍ଯ୍ୟ ସେ ନିଜ ଅନ୍ତର ମଧ୍ୟରେ ଖୋଜି ପାଆନ୍ତି ନାହିଁ ।

ସମ୍ମୁଖ ଗ୍ରେଟ ଗ୍ୟାଲେରିକୁ ଲକ୍ଷ୍ୟ କରନ୍ତି । ସାଇନ୍‌ବୋର୍ଡ଼କୁ ଲକ୍ଷ୍ୟ କରନ୍ତି । ହସନ୍ତି । ଘଡ଼ି ମରାମତି ହୁଏ ..ହୁଁଃ ! ଭାରତରେ ପୁଣି ଘଡ଼ି ତିଆରି ହୋଇପାରେ...ଏବଂ ଏଇ ଦେଶୀୟ ଲୋକଗୁଡ଼ାକ ପୁଣି ଘଡ଼ି ମରାମତି କରି ପାରନ୍ତି । ସେ ଅଟ୍ଟହାସ୍ୟ ଉଚ୍ଚ ସ୍ୱରରେ ହସନ୍ତି । ହସର ପ୍ରତିଧ୍ୱନି ବିକୃତ ହୋଇଉଠେ । ସେ ଚମକି ପଡ଼ନ୍ତି । ଅତୀତ ଭୂତ ହୋଇ ତାଙ୍କ ନିକଟକୁ ଧାଇଁ ଆସେ । ସେ ଚିତ୍କାର କରନ୍ତି—"ଆରେ କୋଇ ହାୟ !" ଗ୍ରେଟ ଗ୍ୟାଲେରୀର ମଧ୍ୟରୁ ଏକ ଗ୍ରେଟ ମୁଣ୍ଡ ସାଇନବୋର୍ଡ଼ ପଛରୁ ତାଙ୍କୁ ଲକ୍ଷ୍ୟ କରେ ।

ରାଜା ବିକ୍ରମ ସିଂହ ଦେଖନ୍ତି ସେ ହସୁଛନ୍ତି । ବିଦ୍ରୂପରେ ନୁହେଁ ତ ·· ଉପହାସରେ ନୁହେଁ ତ ? ସେ ଆହୁରି ଜୋରରେ ଚିତ୍କାର କରନ୍ତି—"ଆରେ କୋଇ ହାୟ ।" ପରମୁହୂର୍ତ୍ତରେ ଏକା ଅକ୍‌କା ପାଦର ଶବ୍ଦ···ପାଖେଇ ଆସେ । ସେ ପଛକୁ ଫେରନ୍ତି । ବୃଦ୍ଧ ପରିଚାରକ ଉପରେ ଅଜସ୍ର ଗାଳି ବୃଷ୍ଟି କରି ଆଲମୀରା ଖୋଲନ୍ତି । ଅନେକ ବିଦେଶୀ ମଦ ବୋତଲ । କିନ୍ତୁ ଶୂନ୍ୟ । ଏବେ ଦେଶୀ ମଦ ପିଇବାରେ ଏକ ଆନନ୍ଦ ଅଛି । ସେ ବୋତଲ ଖୋଲି ଓଠରେ ଲଗାନ୍ତି । ଦର୍ପଣରେ ପ୍ରତିଛବି ତାଙ୍କୁ ଡରାଏ, ଏକ ପ୍ରୌଢ଼ ପଳିତ କେଶର ମୁଖା ପିନ୍ଧି । ସେ ନିଜ ମୁଖାରେ ଥିବା ବୟସର ରେଖା ଗଣନ୍ତି । ପରମୁହୂର୍ତ୍ତରେ ଏକ ଶବ୍ଦ ଏବଂ ବୋତଲର ଭଙ୍ଗା କାଚ ବୃଦ୍ଧ ପରିଚାରକ ସଫା କରୁଥିବାର ଦେଖାଯାଏ । କାନ୍ଥଘଣ୍ଟା ହସେ ଏବଂ ପୁଣି ଆଗକୁ ବଢ଼ିଚାଲେ···ଟିକ୍···ଟିକ୍··· ।

ସକାଳ···ଦ୍ୱିପ୍ରହର···ସନ୍ଧ୍ୟା···ଏବଂ ରାତି । ଏଇ ଚାରୋଟି ପର୍ଯ୍ୟାୟ ଦେଇ ଦିନ ବିତେ । କିନ୍ତୁ ରାଜା ବିକ୍ରମ ସିଂହ କିଛି ଅନୁଭବ କରି ପାରନ୍ତି ନାହିଁ । ନିଜ ଶୟନକକ୍ଷ···ଲାଇବ୍ରେରୀ···ଭୋଜନକକ୍ଷ ବ୍ୟତୀତ ବାହାର ଦୁନିଆ ସହ ତାଙ୍କର ସମ୍ପର୍କ ନାହିଁ । ସେ ଅନୁଭବ କରନ୍ତି···ଧୀରେ ଧୀରେ ସେ ଯେପରି ଚଢ଼ଚଢ଼ା ହୋଇ ଯାଉଛନ୍ତି···ସ୍ଥାଣୁ ପାଲଟି ଯାଉଛନ୍ତି । ବାଲକୋନୀରେ ଠିଆହୋଇ ଲୁଚି ଲୁଚି ସେ ଲକ୍ଷ୍ୟ କରନ୍ତି ଘଡ଼ି ମରାମତି ଦୋକାନ ଆଡ଼େ । ଯେତେବେଳେ ସେ ଖୁବ୍ ଏକାକୀ ଅନୁଭବ କରନ୍ତି । ଇଚ୍ଛାହୁଏ ତଳକୁ ଓହ୍ଲାଇ ଯାଇ ଘଡ଼ି ମେକାନିକ ସହ ଆଳାପ କରିବା ପାଇଁ । କିନ୍ତୁ ପାଦରେ ଆଭିଜାତ୍ୟର ବେଡ଼ି । ନିଜର ଅସହାୟତାକୁ ଲୁଚାଇ ସେ ହସନ୍ତି । କାନ୍ଥଘଣ୍ଟା କୁହେ···ଟିକ୍···ଟିକ୍ ଏବଂ ରାଜପ୍ରାସାଦ ଗୁମୁରି ଗୁମୁରି ଗୁମୁରି କାନ୍ଦଉଠେ ।

ଦୀନବନ୍ଧୁ ଯେତେବେଳେ ପ୍ରଥମେ 'ଘଡ଼ି ମରାମତି ହୁଏ'ର ସାଇନ୍‌ବୋର୍ଡ ଘର ସାମ୍ନାରେ ଲଗାଇ ନିଜ ଦୋକାନର ଶୁଭାରମ୍ଭ କଲା । ସେତେବେଳେ ତା' ମନରେ ଦୃଢ଼ବିଶ୍ୱାସ ଥିଲା ଯେ, ଏଇ ରାଜପ୍ରାସାଦର ଅସଂଖ୍ୟ ଘଡ଼ି ମରାମତିର ଦାୟିତ୍ୱ ତାକୁ ହିଁ ନେବାକୁ ପଡ଼ିବ । ଏକାକୀ ଜୀବନ । ଆଗରେ କେହି ନାହିଁ କିମ୍ବା ପଛରେ କେହି ନାହିଁ । ଅଜଣା ପଥରେ ଚାଲି ଚାଲି ହଠାତ୍ ଏକ ମୋଡ଼ରେ ଏଇ ଉପାୟ ତାକୁ ଦେଖା ଦେଇଥିଲା । କାମ ଆରମ୍ଭ ହେଲା । ନିଜ ଗୁନ୍ନୁରାଣ ମୁତାବକ କାମ ପାଇଲା । କିନ୍ତୁ ମନରେ ତା'ର ଯେଉଁ ଆଶା ଥିଲା, ତାହା ଯେପରି ଖଣ୍ଡେ କାଠ ପରି ନଦୀର ସ୍ରୋତରେ କୁଆଡ଼େ

ଲୁଚିଗଲା । ଧୀରେ ଧୀରେ କାହିଁକି କେଜାଣି ଏଇ ରାଜପ୍ରାସାଦ ପ୍ରତି ତା' ମନରେ ଏକ ଅହେତୁକ ଘୃଣା ଜନ୍ମଲାଭ କଲା ଏବଂ ସେ ମନେ ମନେ କହିଲା— "ହୁଃ !···ରାଜପ୍ରାସାଦ ! ଗୋଟାଏ ଘଡ଼ି ମଧ୍ୟ ନାହିଁ ।" ପରକ୍ଷଣରେ ସେ ନିଜ କକ୍ଷର ଚତୁର୍ଦ୍ଦିଗରେ ଝୁଲୁଥିବା ଗ୍ରେଟ, ବଡ଼ ଘଡ଼ିମାନଙ୍କୁ ଲକ୍ଷ୍ୟକରି ଅକାରଣରେ ବହେ ହସିଲା । "ମୁଁ ସମୟକୁ ଠିକ୍ ବାଟ ଦେଖାଉଛି । ମୁଁ ଘଡ଼ି ମେକାନିକ । ମୁଁ ସମୟର ପରିଚାଳକ । ମୁଁ ନ ଥିଲେ ହୁଏତ ଏ ସହରର ପ୍ରତ୍ୟେକ ଘଡ଼ି ଅଚଳ ହୋଇଯାନ୍ତା ଏବଂ ସହରବାସୀ ଠିକ୍ ସମୟ ଜାଣି ପାରନ୍ତେ ନାହିଁ । ସେ ମନେ ମନେ ଗର୍ବ ଅନୁଭବ କଲା । ନିଜ ଚତୁର୍ଦ୍ଦିଗରେ ଟିକ୍ ଟିକ୍ ଶବ୍ଦକୁ ଶୁଣି···ଚଳନ୍ତା ଘଡ଼ିମାନଙ୍କୁ ଚାହିଁ ସତେ ଯେପରି ପ୍ରଶ୍ନ କଲା—"କୁହ, ମୁଁ କଅଣ ଭୁଲ୍ କହୁଛି ?" ସେମାନେ ମଧ୍ୟ ଯେପରି ତା' କଥାରେ ହଁ ଭରିଲେ । ସେ ଆହୁରି ଥରେ ହସିଲା ।···ଏଥର କିନ୍ତୁ ଗର୍ବରେ । ଘଡ଼ିମାନେ ମଧ୍ୟ ହସିଲେ ଏବଂ ପରକ୍ଷଣରେ ଆଗେଇ ଚାଲିଲେ ଅନିର୍ଦ୍ଦିଷ୍ଟର ସନ୍ଧି ଅନ୍ୱେଷଣେ·· ଟିକ୍ ଟିକ୍ କରି ।

ଥରେ ଥରେ କାମ କରି କରି ସେ କ୍ଳାନ୍ତ ହୋଇପଡ଼େ । ଅଳସ ଭାଙ୍ଗି ଆଙ୍ଗୁଳି ଫୁଟାଇ ସେ ଖୋଲାଦ୍ୱାର ଦେଇ ସାମ୍ନା ପାଚେରୀକୁ ଲକ୍ଷ୍ୟକରେ । ଭଙ୍ଗା ପାଚେରୀ । ରାଜା ବିକ୍ରମ ସିଂହଙ୍କର କେଉଁ ଏକ ପୂର୍ବତନ ବଂଶଧର ସେ ପାଚେରୀ ଦ୍ୱାରା ନିଜ ପ୍ରାସାଦକୁ ବାହାର ଦୁନିଆଠାରୁ ପୃଥକ କରି ଗଢ଼ିଥିଲେ । ଆଜି କିନ୍ତୁ ସମୟ ତାଙ୍କର ସେ ଗର୍ବ···ସେ ଦମ୍ଭ ଭାଙ୍ଗି ଦେଇଛି । ପାଚେରୀଟି ଭାଙ୍ଗି ଯାଇଛି । କ୍ଷତବିକ୍ଷତ ଅବସ୍ଥାରେ ସେ ସ୍ଥାଣୁପରି ଠିଆ ହୋଇ ରହିଛି । ତା'ର ଜୀବନ ନାହିଁ । ସେ ମୃତ କି ଜୀବିତ ବା ସୁପ୍ତ ତାହା ରାଜା ବିକ୍ରମ ସିଂହ କିମ୍ବା ଦୀନବନ୍ଧୁ, କେହି ଜାଣିପାରି ନାହାନ୍ତି ଅଥବା କେବେ ଜାଣିବାକୁ ଚେଷ୍ଟା ମଧ୍ୟ କରିନାହାଁନ୍ତି । ରାଜା ବିକ୍ରମ ସିଂହ ଯେପରି ସେ ପାଚେରୀକୁ ଲକ୍ଷ୍ୟ କରି କ୍ଷୁବ୍‌ଧ ହୁଅନ୍ତି ଏବଂ ଦିନେ ନ ଦେଖିଲେ କିଛି ଗୋଟାଏ ଖାପଛଡ଼ା ପରି ଲାଗେ, ଠିକ୍ ସେଇପରି ଦୀନବନ୍ଧୁଙ୍କୁ ମଧ୍ୟ ସେ ପାଚେରୀକୁ ଦିନେ ନ ଦେଖିଲେ ଭଲ ଲାଗେନାହିଁ । ରାଜ ପ୍ରାସାଦକୁ ଲକ୍ଷ୍ୟକରି ସେ ଉପହାସ କରେ ଏବଂ ପାଚେରୀ ପ୍ରତି ସମବେଦନା ଜ୍ଞାପନ କରେ ।

ପାଚେରୀରେ ଅନେକ ବିଜ୍ଞାପନ—ଆୟୁର୍ବେଦିକ ଔଷଧର, ସିନେମାର, ବିଭିନ୍ନ କର୍ମୀମାନଙ୍କର ବିଜ୍ଞାପନ ସେ ପାଚେରୀକୁ ବସ୍ତ୍ର ପିନ୍ଧାଇ ତା'ର ଦୁର୍ଦ୍ଦଶାକୁ ଅନେକ ପରିମାଣରେ ଲୁଚେଇ ଦେଇଛନ୍ତି । ଦୀନବନ୍ଧୁ ପାଚେରୀଟିରେ କିଛି କିଛି ଦିନର ବ୍ୟବଧାନରେ ଭିନ୍ନ ଭିନ୍ନ ବିଜ୍ଞାପନ ଦେଖି ଅନୁଭବ କରେ ଯେ

ଦୁନିଆରେ ପରିବର୍ତ୍ତନ ଏକ ସତ୍ୟ । ପରିବର୍ତ୍ତନ ନ ହେଲେ ମଣିଷ ବଞ୍ଚି ପାରିବ ନାହିଁ । ସମସ୍ତ ସତ୍ତ୍ୱ ନିଜକୁ ନିଜେ ପରିବର୍ତ୍ତନ ନ କଲେ, ଅତୀତ ଭୂତ ପରି ପଛରେ ଗୋଡ଼େଇଥିବ । ସେ ସେଇ ପାଚେରୀଟିକୁ ଲକ୍ଷ୍ୟକରି ଦେଶର ଅନେକ ସମସ୍ୟା ବିଷୟ ଉପଲବ୍‌ଧି କରିପାରେ । ଦେଶରେ ବୃଦ୍ଧି ପାଉଥିବା ଜନସଂଖ୍ୟା, ପରିବାର ନିୟନ୍ତ୍ରଣ ଯୋଜନା, ରାଜନୀତି, ମନ୍ତ୍ରୀଙ୍କ ଭାଷଣର ମର୍ମ, ଉତ୍କଟ ଖାଦ୍ୟାଭାବ—ସବୁ ସେ ସେହି ପାଚେରୀକୁ ଲକ୍ଷ୍ୟକରି ଜାଣିପାରେ । ସେ ଭାବେ ସେ ଧନ୍ୟ । ଏକ କ୍ଷୁଦ୍ର ପରିବେଷ୍ଟନୀ ମଧ୍ୟରେ ଆବଦ୍ଧ ରହି ମଧ୍ୟ ସେ ପ୍ରତ୍ୟେକ ସମସ୍ୟାର ସଠିକ୍ ଗୁରୁତ୍ୱ ଉପଲବ୍‌ଧି କରିବା ସଙ୍ଗେ ସଙ୍ଗେ ତା'ର ପରିଣାମ ଓ ଶେଷ ପରିଣତି ବିଷୟ କ୍ଷଣେ ଚିନ୍ତା କରେ ଏବଂ ପରମୁହୂର୍ତ୍ତରେ ନିଜ କାମରେ ଲାଗିଯାଏ । କାମ ହିଁ ଜୀବନ । ଜୀବନ ହିଁ ମୃତ୍ୟୁ ଏବଂ ମୃତ୍ୟୁ ହିଁ ସତ୍ୟ । ଏହା ତା'ର ନିଜସ୍ୱ ଦର୍ଶନ ।

ପ୍ରତି ସକାଳେ ସେ ରାଜା ବିକ୍ରମ ସିଂହଙ୍କୁ ଦେଖେ । ମନେ ମନେ କୁହେ—"ରାଜା···ଅରେ ତଳକୁ ଓହ୍ଲାଇ ଆସ । ଆଉ ଦେଖ···କି ବିରାଟ ଓ ସୁନ୍ଦର ଏ ଦୁନିଆ ।" ରାଜା କିନ୍ତୁ ଶୁଣି ପାରନ୍ତି ନାହିଁ । ସେ ହସେ । ରାଜା କ୍ଷୁବ୍‌ଧ ହୋଇ ଚାଲିଯାନ୍ତି । ସେ ଘଡ଼ିମାନଙ୍କୁ ଚାହେଁ । ଘଡ଼ିମାନେ ହସନ୍ତି··· ଟିକ୍···ଟିକ୍ ·· ।

ସେ ଭାବେ ରାଜା ସହ ଆଳାପ ହେଲେ ଏକାକୀର ସଙ୍ଗୀତ ବୋଧହୁଏ ଶୁଣିବାକୁ ପଡ଼ନ୍ତା ନାହିଁ । କିଛି ମିଛ ··କିଛି ସତ···କିଛି ଏ ଦୁନିଆର କିଛି ଆର ଦୁନିଆର ଅତୀତର ରୋମନ୍ଥନ···କିଛି ଗୁଲି···କିଛି ମଜା କଥା··· ବିରକ୍ତିର ବ୍ୟଥାକୁ ଅନେକ ପରିମାଣରେ ଉପଶମ କରି ଦିଅନ୍ତା ।

ଭଙ୍ଗା ପାଚେରୀ ଏ ସବୁ ଦେଖି କେବଳ ହସେ । ଉପନ୍ୟାସରେ କିମ୍ବା ବିଦ୍ରୂପରେ ନୁହେଁ, ଦୟାରେ । ପ୍ରତ୍ୟେକଙ୍କ ନିଜସ୍ୱ ଦର୍ଶନ । ତଥାପି ସମସ୍ତ ଦର୍ଶନ ମୂଳରେ ଅଛି ଯେଉଁ ଏକକ ଦର୍ଶନ ତାହା କେବଳ ପାଚେରୀ ବ୍ୟତୀତ ଅନ୍ୟ କେହି ଉପଲବ୍‌ଧି କରିପାରି ନାହାଁନ୍ତି ।

କେଉଁ ଅନାଦି କାଳରୁ ସେ ଦେଖୁଛି·· ସମସ୍ତ ତା'ର ପ୍ରଭାବ । ପରିବର୍ତ୍ତନ । କିନ୍ତୁ କିଛି କହୁନି ମୁହଁ ଖୋଲି । ସେ ଜାଣିଛି ଦର୍ପଣ କେବଳ ପ୍ରତିବିମ୍ବ ପାଇଁ । ସମସ୍ତ ତାକୁ ଭାଙ୍ଗିଛି । ସେ କିନ୍ତୁ ସର୍ବସହା । ନିଜ ଦୁଃଖ, କଷ୍ଟ, ଅନୁଭୂତି ସବୁକିଛି ସେ ଭୁଲି ଯାଇଛି । ତା' ଦେହରେ ଅନେକ ବିଜ୍ଞାପନ, କିନ୍ତୁ ତା' ନିଜ ଆତ୍ମାର ବିଜ୍ଞାପନ ।

ସେ ସ୍ଥାଣୁ···ନିର୍ବାକ···ନିସ୍ପନ୍ଦ···ଅବଚଳିତ ପରି ସବୁ ଦେଖୁଛି । ରାଜା ବିକ୍ରମ ସିଂହଙ୍କୁ ଓ ଘଡ଼ି ମେକାନିକ ଦୀନବନ୍ଧୁଙ୍କୁ । ତା' ସଙ୍ଗେ ସଙ୍ଗେ ସେ ପଥ ଦେଇ ଯାଉଥିବା ବ୍ୟକ୍ତିମାନଙ୍କୁ ।



ହଠାତ୍ ରାଜା ବିକ୍ରମ ସିଂହଙ୍କ ଅଟୋମେଟିକ ଓ୍ୱାଲକ୍ଲକ ହଠାତ୍ କୌଣସି କାରଣ ନ ଥାଇ ବନ୍ଦ ହୋଇଗଲା । ସମସ୍ତ ଯେପରି ରାଜପ୍ରାସାଦରେ ଅଟକିଗଲା । ଆଉ ପଥ ନାହିଁ । ବିକ୍ରମ ସିଂହ ଆଶ୍ଚର୍ଯ୍ୟ ହେଲେ । କିନ୍ତୁ ତା' ପରେ ପରେ ଯେଉଁ ସ୍ତବ୍ଧତା, ଶୂନ୍ୟତା ତାଙ୍କ ପ୍ରାସାଦ ମଧ୍ୟରେ କ୍ଷଣିକ ମଧ୍ୟରେ ଖେଳିଗଲା ତାକୁ ସେ ସହ୍ୟ କରି ପାରିଲେ ନାହିଁ । ଚିତ୍କାର କରି ଡାକିଲେ—"ଆରେ କୋଇ ହାଏ !" ବୃଦ୍ଧ ପରିଚାରକ କ୍ଲାନ୍ତ ପାଦରେ ଆସି ଠିଆହେଲା ହାତବାନ୍ଧି । ରାଜା ଆଦେଶ ଦେଲେ । ପାଞ୍ଚେଖି ମଧ୍ୟରେ ଜମ୍ପନ ।

ଦୀନବନ୍ଧୁ ଆଶ୍ଚର୍ଯ୍ୟ ହେଲା । ରାଜାଙ୍କ ଆଦେଶ । ତାହାହେଲେ ତାକୁ ନିଜର ଏଇ କ୍ଷୁଦ୍ର ପରିବେଷ୍ଟନୀ ମଧ୍ୟରୁ ବାହାରିବାକୁ ପଡ଼ିବ । ସେ ପାଞ୍ଚେଖିକୁ ଲକ୍ଷ୍ୟ କଲା । କେତେକ ଲୋକ ପୁରୁଣା ବିଜ୍ଞାପନ ଚିରି ପାଞ୍ଚେଖିରେ ଧଳାରଙ୍ଗ ମାରୁଛନ୍ତି । ବୋଧହୁଏ ଅନ୍ୟ କୌଣସି କମ୍ପାନୀର ଔଷଧ କିମ୍ବା ସିଗାରେଟ ବିଷୟରେ ଆସନ୍ତାକାଲି ବିଜ୍ଞାପନ ଲେଖାହେବ, ଏକ ସୁନ୍ଦରୀ ନାରୀ ଚିତ୍ର ସହିତ ।

ରାଜପ୍ରାସାଦକୁ ସେ ଲକ୍ଷ୍ୟକଲା ନିକଟରୁ । ଛୁଇଁ ଦେଖିଲା । ଖୁବ୍ ଚକ୍‌କଣ । ଆଭିଜାତ୍ୟ ତାହାହେଲେ ଶଙ୍ଖମାର୍ବଲ ପଥର ଓ ଦାମିକା ଆସବାବ ପତ୍ର ମଧ୍ୟରେ ଥାଏ । ଅବ୍ୟବସ୍ଥା ଯୋଗୁଁ ରାଜପ୍ରାସାଦ ଛିନ୍ନ । ସେ ଯେପରି କାନ୍ଦୁଛି—ଏକ ବିଧବା ନାରୀ ପରି ।

ରାଜା ପ୍ରଶ୍ନ କଲେ—"ତୁମେ ତାହାହେଲେ ଘଡ଼ି ମେକାନିକ ?"

ଦୀନବନ୍ଧୁ ହସିଲା—"ହଁ ଆଜ୍ଞା !" ସେ ଦେଖୁଥିଲା କାନ୍ଥରେ ଝୁଲୁ ହୋଇଥିବା ଅଟୋମେଟିକ ଓ୍ୱାଲକ୍ଲକକୁ ।

"ଏଇଟାକୁ ଠିକ୍ କରି ପାରିବ ?"

"ଚେଷ୍ଟା କରିବି ।

"ଚେଷ୍ଟା ନୁହେଁ । ସଠିକ୍ କୁହ ପାରିବ କି ନାହିଁ ? ଏଇଟା ଖୁବ୍ ଦାମିକା । ଇଂରେଜ ଅମଳର ଅଟୋମେଟିକ ।"

"ଚେଷ୍ଟା କଲେ ଅସମ୍ଭବ କିଛି ନାହିଁ ଆଜ୍ଞା । ମୁଁ ଠିକ୍ କରିଦେବି ।"

"କାଲି ସକାଳେ ।"

ଘଡ଼ିଟିକୁ ଧରି ବିଜୟୀ ଗର୍ବରେ ଦୀନବନ୍ଧୁ ଫେରିଲା । ସବୁ କାମ ଛାଡ଼ି ଲ୍ୟାମ୍ପ ଜଳାଇ ଘଡ଼ି ଖୋଲି ସଙ୍ଗେ ସଙ୍ଗେ କାମ ଆରମ୍ଭ କରିଦେଲା । ଅଟୋମେଟିକ ଘଡ଼ିର ମେସିନକୁ ବୁଝିବା ପାଇଁ ଟିକେ ସମୟ ଦରକାର ଏବଂ ଆସନ୍ତାକାଲି ସକାଳୁ ତାକୁ ରଜାଙ୍କୁ ଘଡ଼ି ଠିକ୍ କରି ଫେରାଇବାକୁ ପଡ଼ିବ । ସେ ଅଜଣା ଉତ୍ସାହରେ ଭରିଉଠିଲା ।

ସନ୍ଧ୍ୟା ଆସିବା ପାଇଁ ପ୍ରସ୍ତୁତ ହେଉଥାଏ । ଭଙ୍ଗା ପାଚେରିରେ ଲୋକମାନେ ଅଧା ରଙ୍ଗ ଲଗାଇ ସାରିଥିଲେ । ବାକି ଅଧା ପାଇଁ ଖୁବ୍ ଦ୍ରୁତ ଗତିରେ କାମ ଆରମ୍ଭ ହୋଇ ଯାଇଥିଲା । ଦୀନବନ୍ଧୁ କାମରେ ଲାଗିଥିଲା । କାନ୍ଥ ଘଣ୍ଟାଗୁଡ଼ାକ ହସୁଥିଲେ କି କାନ୍ଦୁଥିଲେ ଜଣାପଡ଼ୁ ନ ଥିଲା । କେବଳ ଶୁଭୁଥିଲା ଟିକ୍...ଟିକ୍... । ରଜା ବିକ୍ରମ ସିଂହ ନିସ୍ତବ୍ଧକକ୍ଷ ମଧ୍ୟରେ ପଦଚାଳନା କରୁ କରୁ ଓ୍ୱାଲକ୍ଲକ ଥିବା ଶୂନ୍ୟସ୍ଥାନକୁ ଲକ୍ଷ୍ୟ କରି ମନେ ମନେ ବ୍ୟସ୍ତ ହୋଇ ପଡ଼ୁଥିଲେ । ସମୟ କାହାରିକି ଅଟକିଗଲା...ସେ ଚାଲୁ...ଚାଲିବା ତା'ର ଧର୍ମ ।

ଦୀନବନ୍ଧୁ କାମ କରୁଥିଲା । ପାଚେରୀରେ ରଙ୍ଗ ଲଗା ଯାଉଥିଲା । ରଜା ବିକ୍ରମ ସିଂହ ନିଜ ଶୟନ କକ୍ଷ ମଧ୍ୟରେ ପଦଚାଳନା କରି କରି କ୍ଳାନ୍ତ ହୋଇ ପଡ଼ିଥିଲେ । ନିସ୍ତବ୍ଧତା ତାଙ୍କୁ ଅସହ୍ୟ ବୋଧ ହେଉଥିଲା । ଓ୍ୱାଲକ୍ଲକର ବିନା ଟିକ୍...ଟିକ୍ ଶବ୍ଦର ବିନା...ତାଙ୍କ ଜୀବନଟା ଦୁର୍ବିସହ୍ୟ ହୋଇ ଉଠିଥିଲା, ସେଇ କେତେକ ଘଣ୍ଟା ମଧ୍ୟରେ । ସେ ବାଲକୋନୀରେ ଠିଆ ହେଲେ । ଚାଳଘର ମଧ୍ୟରେ ଦୀନବନ୍ଧୁ ଟେବୁଲ ଲ୍ୟାମ୍ପର ଆଲୋକରେ କାମ କରି ଚାଲିଥିଲା । କର୍ମ ହିଁ ଜୀବନ । ଜୀବନ ହିଁ ମୃତ୍ୟୁ ଏବଂ ମୃତ୍ୟୁ ହିଁ ସତ୍ୟ ।

ରାତି ଅନେକ ହୋଇ ଯାଇଛି । ରଜା ବିକ୍ରମ ସିଂହ ଦୀନବନ୍ଧୁକୁ ବାଲକୋନୀରୁ ଲକ୍ଷ୍ୟ କରୁଥିଲେ । ଦୀନବନ୍ଧୁର ଅଣ୍ଟାଟା ଆଉ ଟିକେ ତଳକୁ ଝୁଙ୍କି ପଡ଼ିଥିଲା ।

ପରଦିନ ସକାଳେ ।

ପାଚେରୀଟି ନୂତନ ବସ୍ତ୍ର ପିନ୍ଧି ସାରିଥିଲା । ରଜା ବିକ୍ରମ ସିଂହ କ୍ଳାନ୍ତ ହୋଇ ଶୋଇ ପଡ଼ିଥିଲେ ଚଟାଣ ଉପରେ ଏବଂ ଦୀନବନ୍ଧୁର ଦର୍ଶନ ସତ୍ୟ

ହୋଇ ଯାଉଥିଲା । ସ୍କୁଲଘର ଭିତରେ ଥିବା ଗ୍ରେଟ ବଡ଼ ସମସ୍ତ ଦୁଃଖରେ ଘଣ୍ଟା ନିଜର ଅତିପ୍ରିୟ ନର୍ମଦା ଯାଥିକୁ ହରାଇ ବିଳାପ କରୁଥିଲେ···ଟିକ୍·· ଟିକ୍··· ଟିକ୍··· ।

ଏବଂ ଗୋଲ ଟେବୁଲରେ ଦୀନବନ୍ଧୁ ମୁହଁରେ ବିଜୟୀର ଗର୍ବ ନେଇ ମୁହଁମାଡ଼ି ପଡ଼ିଥିଲା । ତା'ର ହାତ ପାଖରେ ଆଗନ୍ତୁକ ପୁରୁଣା ଇଂରେଜ ଅମଳର ଅଟୋମେଟିକ ଓ୍ୟାଲକ୍ଲକଟି ନିଦ ଭାଙ୍ଗି କିଛି ନ ବୁଝି ଅନ୍ୟମାନଙ୍କ ସହିତ ସ୍ୱର ମିଳେଇ ଦେଉଥିଲା···ଟିକ୍···ଟିକ୍···ଟିକ୍··· ।



('ଝଙ୍କାର' ଜୁଲାଇ, ୧୯୬୧)

# ମିଛ

ମାସର ଅନ୍ତିମ ସପ୍ତାହରେ ଖୁବ୍ କ୍ଲାନ୍ତ ଲାଗେ । ବିଶେଷ କରି ମାସର ଅନ୍ତିମ ରବିବାର ଦିନ କ୍ଲାନ୍ତିଟା ଅସହ୍ୟ ହୋଇଉଠେ । ମୁଁ ରବିବାର ଶଯ୍ୟାରେ ପଡ଼ି ପଡ଼ି ଭାବୁଥିଲି ଏବଂ କ୍ଲାନ୍ତି ଅନୁଭବ କରୁଥିଲି । ପକେଟରେ ପଇସା ନ ଥିଲେ ଖୁବ୍ ଦୁର୍ବଳ ଲାଗେ । ମୁଁ ମଧ୍ୟ ଦୁର୍ବଳ ହୋଇ ପଡ଼ିଥିଲି । ଦିନ ଦଶଟା ହୋଇ ଯାଇଥିଲେ ମଧ୍ୟ ଶଯ୍ୟା ତ୍ୟାଗ କରିବାପାଇଁ ସ୍ପୃହା ଜାଗୁ ନ ଥିଲା ମନରେ । କାରଣ ଶଯ୍ୟା ତ୍ୟାଗ କଲା ଅର୍ଥ ଖଣ୍ଡେ ସିଗାରେଟ ଓ କପେ ଚା' । ନଟ ସାହୁ ଗତକାଲି ବାକି ପଇସା ଚୁକ୍ତି ନ କଲା ପର୍ଯ୍ୟନ୍ତ ଆଉ ଧାର ଦେବନାହିଁ ବୋଲି ରୋକଠୋକ ଜବାବ ଶୁଣେଇ ଦେଇ ସାରିଛି । ତେଣୁ କେବଳ ଶଯ୍ୟାରେ ପଡ଼ି ରହି ଅତୀତ ବା ରୋମାଞ୍ଚକର ସ୍ମୃତି ରୋମନ୍ଥନ ବ୍ୟତୀତ ଆଉ କିଛି ଉପାୟ ମୋତେ ଦେଖାଯାଉ ନଥିଲା ।

ହୁଏତ ଖବରକାଗଜବାଲା ଆଜି ଆସି ଚିତ୍କାର କରିପାରେ । ଅଥବା ବସ୍ତି ପଣ୍ଡା ହୋଟେଲ ବାଲା ତା' ତିନି ମାସର ଟଙ୍କା ପାଇଁ ଆସି ଜୁଲୁମ କରିପାରେ । ସେମାନଙ୍କର ଚିତ୍କାର, ନାକଟେକା ଅଥବା ଜୁଲୁମକୁ ମଥାପାତି ସହିଯିବା ବ୍ୟତୀତ ମୋର ଅନ୍ୟୋପାୟ ନାହିଁ । ଶହେ ତିରିଶ ଟଙ୍କା ବେସିକର ସାଧାରଣ ଜଣେ ସରକାରୀ କର୍ମଚାରୀ ଆଉ ବା କଅଣ କରିପାରିବ ?

ଥରେ ଥରେ ମନଟା ଖୁବ୍ ଅଶାନ୍ତ ହୋଇପଡ଼େ ଏବଂ ମନେପଡ଼େ ନିଜ ଘର କଥା । ପ୍ରତି ରବିବାର ଏଇପରି ହୁଏ । ଅଫିସ ଦିନମାନଙ୍କରେ ଅଫିସ କ୍ୟାଣ୍ଟିନରେ ଧାର ଅଥବା କୌଣସି ସହକର୍ମୀ ପଛରେ ଲାଗି ଲାଗି ଖଣ୍ଡେ ସିଗାରେଟ ବା ଅଧ କପେ ଚା' । କିନ୍ତୁ ରବିବାର ଦିନମାନଙ୍କରେ ମୋର ମନେପଡ଼େ ବାପାଙ୍କ କଥା, ମା' କଥା, ସାନଭାଇ ପ୍ରକାଶ ଓ ଭଉଣୀ କାବେରୀ

କଥା ଏବଂ ମନେପଡ଼େ ତୁଳସୀ କଥା । ଯାହା ସବୁତ ମୋ ଅବସ୍ଥା ଏକା ପ୍ରକାର ସ୍ଥିର ହୋଇ ଯାଇଛି ।

ତେଡ଼ବର୍ଷ ହୋଇଗଲା, ଏଇ ଘରେ···ଏଇ ସହରରେ । ତେଡ଼ବର୍ଷ ହୋଇଗଲା ସହରକୁ ଆସି ଟଙ୍କା ରୋଜଗାର କରି ବୃଦ୍ଧ ପିତାମାତା ଓ ଭାଇଭଉଣୀଙ୍କ ଭବିଷ୍ୟତ ନିର୍ମାଣ କରିବାର ସ୍ୱପ୍ନକୁ କାଠଯୋଡ଼ି କୂଳ ବଗିଚା ଭିତର ମଧ୍ୟରେ ଲୁଚାଇ ଫିଙ୍ଗି ଦେଇ, ଏ ନଗରର ନିସ୍ତବ୍ଧ ବାତାବରଣରେ ଅଶ୍ରୁପାତର ଘଣ୍ଟାଟିକୁ । ନିଜ ପରିବାରବର୍ଗଙ୍କୁ ଶେଷଥର ପାଇଁ ଦେଖିଥିଲି ମଧ୍ୟ ସେଇ ଦୀର୍ଘ ତେଡ଼ବର୍ଷ ତଳେ ।

ପ୍ରଥମରୁ ବାପା କହି ଦେଇଥିଲେ, "ଦେଖ ବାବୁ, ତୋ ଉପରେ ଆମେ ଭରସା କରି ରହିଲୁ । ତାଦେଇର ବୟସ ହୋଇଗଲା । ତାକୁ ବାହା କରିବାର ଦାୟିତ୍ୱ ମଧ୍ୟ ତୋର । ମୁଁ ଆଉ ପାରିବିନି । ଜମିବାଡ଼ି ତ କିଛିନାହିଁ । ଯାହା କରିବୁ ତୁ କରିବୁ ।"

ମୁଁ ତାଙ୍କୁ ନିଶ୍ଚିନ୍ତ କରି ସହରକୁ ଆସିଥିଲି । କିନ୍ତୁ ପ୍ରତି ମାସର ଶେଷ ସପ୍ତାହରେ ଶୂନ୍ୟ ପକେଟରେ ହାତ ଭରି ମୁଁ ଖୋଲା ଆକାଶକୁ ପଚାରେ, "ଆଉ କେତେ ଦିନ···ଆଉ କେତେ ଦିନ ?"

ଗାଁରୁ ପ୍ରତି ସପ୍ତାହରେ ଚିଠି ଆସେ ସାନଭାଇ ଲେଖେ । ସାନ ଭଉଣୀ ଲେଖେ—"ବାପାଙ୍କ ଦେହ ଭଲ ନାହିଁ । ବୋଉକୁ ବାତ ହୋଇଛି । ଘର ଛପର ଉଡ଼ି ଗଲାଣି । ବନ୍ୟାରେ ସବୁ ଧୋଇ ଯାଇଛି । ବାତ୍ୟାରେ ଘର ଭାଙ୍ଗି ଯାଇଛି । ଖାଇବାକୁ କିଛି ମିଳୁନି ଇତ୍ୟାଦି·· ଇତ୍ୟାଦି ।" କେବେ କେବେ ତୁଳସୀ ଲେଖେ—"ଆଜି କଅଣ ବୃଦ୍ଧି ହେବ ତମ ପାଇଁ ଅପେକ୍ଷା କରି କରି ।"

ଏ ସବୁ ପଢ଼ି ହଠାତ୍ ଭୋ ଭୋ ହୋଇ କାନ୍ଦିବାକୁ ଇଚ୍ଛା ହୁଏ । ଘରକୁ ଫେରି ଯିବାକୁ ଇଚ୍ଛା ହୁଏ । କିନ୍ତୁ ଶୂନ୍ୟ ହସ୍ତରେ କେଉଁ ମୁହଁରେ ଫେରିବି ? ସାହସ ହୁଏନି । ତେଣୁ ଚିଠିର ଉତ୍ତର ମଧ୍ୟ ଦିଏନି । ତେଡ଼ବର୍ଷ ହୋଇଗଲା ତାଙ୍କର କୌଣସି ଚିଠିର ଉତ୍ତର ଦେଇନି । କିମ୍ବା ପାଞ୍ଚଟା ଟଙ୍କା ମଧ୍ୟ ତାକୁ ପଠାଇ ପାରିନି । ଦରମା ପାଇଲା ଦିନ ଭାବେ, ଏଥର କିଛି ପଠାଇ ଦେବି । କିନ୍ତୁ ସବୁ ଧାର ଶୁଝି ସାରି ଦେଖେ କେତୋଟି ରେଜା ପଇସା ପକେଟରେ ଝଣଝାଣ ହେଉଛନ୍ତି ।

ସାନଭାଇ ଲେଖିଥିଲା, 'ଖଣ୍ଡେ ସାର୍ଟ ଆଣିବ ଭାଇ ।' ସାନ ଭଉଣୀ ଲେଖିଥିଲା, 'ଲାଲ୍ ରିବନ୍ ଆଣିବ' । ବୋଉ କହିଥିଲା, 'ଙ୍କଳିଆ ଚଷମା

ଆଣିବୁ'। ବାପା କହୁଥିଲେ, 'ଶୀଘ୍ର ହେଉଛୁ, ଖଣ୍ଡେ ସୁନ୍ଦର ଆଣିବୁ'। ଏବଂ ଆସିଲାଠାରୁ ମୁଁ ଭାବୁଛି ନିଜ ପାଇଁ ଖଣ୍ଡେ ପ୍ୟାଣ୍ଟ ସାର୍ଟ ତିଆରି କରିବାପାଇଁ, କିନ୍ତୁ ଦେଢ଼ବର୍ଷ ହେଲା କିଛି କରି ପାରୁନି। କେବଳ ଖାଇପିଇ ବଞ୍ଚିବା କଥା ଯାହା। ଯେମିତି ଜୀବନର ଅର୍ଥ କେବଳ ବଞ୍ଚିବା।

ମୁଁ ଭାବେ, ଏ ଦେଢ଼ବର୍ଷ ଭିତରେ କେତେ ଯେ ପରିବର୍ତ୍ତନ ହୋଇ ଯାଇଥିବ। ତୁଳସୀ ଗାଲରେ କଅଣ ସେଇପରି ହସିଲେ ଟୋପା ସୃଷ୍ଟି ହେଉଥିବ ? କାବେରୀ କଅଣ ଏବେ ମଧ୍ୟ ପିଜୁଳି ଗଛକୁ ଚଢ଼ି ଖେଳୁଥିବ ? ବାପା କଅଣ ଏବେ ମଧ୍ୟ ସନ୍ଧ୍ୟାରେ ପିଣ୍ଡାରେ ବସି ଅନ୍ୟମାନଙ୍କୁ ଭାଗବତ ପଢ଼ି ଶୁଣାଉଥିବେ ? ବୋଉ କଅଣ ସେମିତି ଘରେ ବସି କାଶୁଥିବ ?

ଥରେ ଥରେ ଅହେତୁକ କ୍ରୋଧ ହୁଏ ସେମାନଙ୍କ ଉପରେ। ମୋ ଉପରେ ଏତେ ଭାର କାହିଁକି ? କଅଣ ସେମାନେ ମୋ ପାଇଁ କରିଛନ୍ତି ? କେବଳ ବି.ଏ. ଟା ପାସ୍ କରିବା ପାଇଁ ସାହାଯ୍ୟ ଯାହା କରିଛନ୍ତି। କିନ୍ତୁ ପ୍ରତିବଦଳରେ ଏକ ଅନ୍ଧବିଶ୍ୱାସ, କୁ-ସଂସ୍କାର, ଭସ୍ମ ମୋ ମନ ଭିତରେ ଭର୍ତ୍ତିକରି ମୋତେ ଜହ୍ନାତ ସ୍ୱପ୍ନ, ଖିରୁ କରି ଦେଇଛନ୍ତି ଏବଂ ମୋଠାରୁ ପ୍ରତିଦାନ ସେ ଖୋଜୁଁଛନ୍ତି। ମୁଁ ଜୀବନ ଥିଲା ପର୍ଯ୍ୟନ୍ତ ସେମାନଙ୍କର ଋଣୀ ନୁହେଁ।

ନିଜ ପ୍ରତି କ୍ଷୋଭ ହୁଏ। ଜୀବନରେ, ଘଣାରେ ବନ୍ଧା ହୋଇଥିବା ବଳଦ ପରି କେବଳ ମୁଁ ନିଜ ସ୍ୱାର୍ଥପଟେ ଆଖି ବନ୍ଦକରି ବୁଲି ଚାଲିଛି। ଦିନରାତି—ସର୍ବଦା, ନିଜ ପାଇଁ ମୁଁ କଅଣ କରିଛି ! ଇଚ୍ଛାଥିଲା ଏମ୍.ଏ. ପଢ଼ିବି। କିନ୍ତୁ ପଢ଼ି ପାରିଲି ନାହିଁ। ରୋମାନ୍ସ ବୋଲି ବସ୍ତୁର ସନ୍ଧା ମୁଁ ଜାଣିଲି ନାହିଁ। କେବଳ ସନ୍ଧ୍ୟାର ନମ୍ର ଅନ୍ଧାର ଭିତରେ ତୁଳସୀର ଗୋରା ଗାଲରେ, ବଉଳଗଛ ମୂଳେ ଥରେ ଯାହା ଚୁମା।

ପୋଲିସ ଲାଇନରେ ଏଗାରଥର ଘଣ୍ଟା ପିଟା ହେବା ଶବ୍ଦରୁ ଜାଣି ପାରିଲି ଯେ ସମସ୍ତ ଦ୍ରୁତ ଗତିରେ ଆଗେଇ ଚାଲିଛି। ଆଜି ମୋ ନିକଟରେ ଗୋଟାଏ ପଇସା ନାହିଁ। ଡେଣ୍ଟୁ ଶାନ୍ତନୁ ନିକଟରେ ପଚାରୁଥିଲେ କେମିତି ହୁଅନ୍ତା। ହୁଏତ ଆଜି ସେ 'ମୁଡ୍'ରେ ଥାଇପାରେ। ଦିନେ ସାଙ୍ଗରେ ପଢ଼ୁଥିଲି, ଆଜି ବ୍ୟବସାୟ କରୁଛି।

ହାଇମାରି ଶଯ୍ୟାରେ ବସିଲି। କଲେଜ ବା ସ୍କୁଲରେ ପଢ଼ୁଥିଲାବେଳେ ଛୁଟିରେ ଗାଁକୁ ଯାଇ ଟିକେ ଡେରି ପର୍ଯ୍ୟନ୍ତ ଶୋଇ ପଡ଼ିଲେ ବାପା ପାଟି କରନ୍ତି—"ଏତେବେଳଯାଏଁ ତ ତୁ ଶୋଇବୁ। ପାଠ କେତେବେଳେ ପଢ଼ିବୁ ? ସକାଳର ସୂର୍ଯ୍ୟଙ୍କୁ ଉଠି ନମସ୍କାର କର। ଦିନ ଶୁଭ ହେବ।"

ମନେ ମନେ ମୁଁ ହସିଲି । ଆମେ ସବୁ ସୂର୍ଯ୍ୟବଂଶୀ । ତେଣୁ ସୂର୍ଯ୍ୟଙ୍କୁ ଦେଖିବା ଆମ ପକ୍ଷେ ସମ୍ଭବ ନୁହେଁ । ରାତିରେ ଡେରିରେ ଶୋଇବା ଏବଂ ଦିନରେ ଡେରିରେ ଉଠିବା । ଏଇଟା ଆମରି ଧର୍ମ । ବୁଢ଼ାମାନେ ସେକଥା ବୁଝିବେ କୁଆଡ଼ୁ ?

ବର୍ତ୍ତମାନ ଯଦି ବାପା ଆସି ପହଞ୍ଚନ୍ତି ଏବଂ ମୋତେ ଶୋଇଥିବାର ଦେଖନ୍ତି ତେବେ ସେ କଅଣ କହିବେ, ଏଇ କଥା ଭାବୁଥିଲି ବେଳେ ଦ୍ୱାରରେ ନକ୍ ହେଲା । 'ଖବର କାଗଜବାଲା ନିଶ୍ଚୟ ! ଦିନମାସ ହେଲା, ତାକୁ ଆଜି କାଲି କହି ଆସୁଛି । ଆଜି କମା ଗ୍ରୁଡ଼ିବ ନାହିଁ ।' ମୁଁ ଭାବିଲି ଏବଂ ଆଶଙ୍କାରେ ଜୁଡ଼ୁବୁଡ଼ୁ ହୋଇ ଦ୍ୱାର ଖୋଲିଲି । ସାମ୍ନାରେ ଦାମୋଦର ମଉସା, ବାପାଙ୍କର ଅନ୍ତରଙ୍ଗ ବନ୍ଧୁ ଓ ତୁଳସୀର ବାପା ଠିଆ ହୋଇ ମୋତେ ଲକ୍ଷ୍ୟ କରିଥାନ୍ତି । ତାଙ୍କୁ ଦେଖି ହଠାତ୍ ମୁଁ ଆଶ୍ଚର୍ଯ୍ୟ ହେଲି । ଏତେ ଦିନ ପରେ ସେ ଯେ ଏମିତି ଅତର୍କିତ ଭାବେ ଆସି ପହଞ୍ଚିଯିବେ, ତା' ମୁଁ କେବେ ଭାବିପାରି ନ ଥିଲି । ମୁଁ ଅପ୍ରସ୍ତୁତ ହୋଇ ତାଙ୍କୁ ନମସ୍କାର କରି ଭିତରକୁ ଡାକି ଆଣିଲି ।



ସେ ମୋ ବଢ଼ିଲା ଦାଢ଼ି ଓ ଶୁଖିଲା ମୁହଁକୁ ଲକ୍ଷ୍ୟକରି ସାମାନ୍ୟ ଚିନ୍ତିତ ହେଲେ ଏବଂ ସ୍ମିତ ହସି କହିଲେ—"ପଇସା ରଖୁଛୁ ବୋଲି ଖାଉନୁ ନା କଅଣ ?" ମୁଁ କିଛି କହିଲି ନାହିଁ । ସେ ଖଟ ଉପରେ ବସି ପକେଟରୁ ଖଣ୍ଡେ ଚିଠି ବାହାର କରି ମୋ ହାତକୁ ବଢ଼େଇ ଦେଲେ—"ତୋ ବାପା ଦେଇଛି । ବିଚରା ଭାରି ବ୍ୟସ୍ତ ହେଉଥିଲା । ତୁ ଗାଁକୁ ନ ଗଲେ ନାହିଁ । ଖଣ୍ଡେ ଚିଠି ତ ଦେବା କଥା । ତୋତେ କଅଣ ଏତିକି ସମୟ ହେଉନାହିଁ ?" ସେ ଟିକେ ବିରକ୍ତ ହେଲେ । ମୁଁ ସେଇପରି ମୂକ ହୋଇ ତାଙ୍କ ସମ୍ମୁଖରେ ଠିଆ ହୋଇଥାଏ ।

"ବର୍ତ୍ତମାନ ବୋଧେ ଉଠୁଛୁ ?" ସେ ମୋ ମୁହଁକୁ ଲକ୍ଷ୍ୟକରି ପ୍ରଶ୍ନ କଲେ ।

"ହଁ । ରବିବାର ବୋଲି···।"

"ଆଜିକାଲିକା ପିଲାମାନଙ୍କ ସ୍ୱଭାବ ନଷ୍ଟ ହୋଇଗଲାଣି ଏକ୍‌ବାରେ ।" ସେ ପୁନର୍ବାର ବିରକ୍ତ ହେଲେ ।

"ଆପଣ ଗାଁରୁ ଆସିଲେ ?" ମୁଁ ପ୍ରଶ୍ନ କଲି ।

"ହଁ ତୋ ବାପା କଅଣ ମୋତେ ରଖିଦେଲା, ବାଧ ହୋଇ ଆସିଲି ।" ଏଥରକ ସେ ହସିଲେ ।

"ବାପା ବୋଉଙ୍କ ଦେହ କେମିତ ଅଛ ?"

"ସମସ୍ତେ ଭଲ ଅଛନ୍ତି । ହେଲେ ବାପ, ତୋ ଭଉଣୀ କଥା ଟିକେ ଭାବ । ତା'ର ଯଥେଷ୍ଟ ବୟସ ହେଲଣି । ଏଥର ତାକୁ ଉଠେଇ ଦଅ । ଗାଁବାଲା ସମସ୍ତେ କହୁଛନ୍ତି । ତୋ ବାପା ଓ ମୁଁ ଗୋଟିଏ ପାତ୍ର ଦେଖିଛୁ । ଦୋକାନ କରୁଛି । ଖାଲି ଟଙ୍କା କଥାଟା ରହିଲା । ଆମ ଝିଅ ଆମେ ଯେମିତ ଭାବେ ଠିକ୍ କରିବା । ତୋ ବାପା କହୁଛ, ଏଥରକ ତୋ ଦାୟିତ୍ୱ ।" ଦାମୋଦର ମଉସା ମୋତେ ମର୍ମଭେଦୀ ଦୃଷ୍ଟିରେ ଚାହିଁଲେ—"ତୋ ଜବାବ ଶୁଣି ମୁଁ ସନ୍ଧ୍ୟା ବସ୍‌ରେ ଫେରିଯିବି ।"

ବାପାଙ୍କ ଚିଠି ପଢ଼ିବା ନିଷ୍ପ୍ରୟୋଜନ । ମୁଁ ଜାଣେ ଚିଠିରେ କଅଣ ଲେଖା ହୋଇଥିବ । ଚିଠିଟିକୁ ଟେବୁଲ ଉପରେ ରଖି, ତାଙ୍କୁ କହିଲି—"ମଉସା ଆପଣ ଟିକେ ବସିଥାନ୍ତୁ । ମୁଁ ଗାଧୋଇ ପଡ଼େ ।"

ସେ ମୁଣ୍ଡ ହଲାଇଲେ । ମୁଁ ସିଧା ପାଇଖାନା ଚାଲିଗଲି । ସେଠାରେ ଏକାନ୍ତରେ ବସି ମୁଁ ଚିନ୍ତାକଲି, 'ଏଥର କଅଣ କରାଯାଏ । ଏତେଦିନ ପରେ ଗାଁରୁ ଜଣେ ଗ୍ରାମ୍ୟ ସମ୍ପର୍କୀୟ ଆସିଛନ୍ତି, ତାଙ୍କର ଉପଯୁକ୍ତ ଓ ଯଥାସାଧ ଯତ୍ନ ତ ନିଶ୍ଚୟ ନେବାକୁ ପଡ଼ିବ । କିନ୍ତୁ ନିଜେ ତ ସମ୍ପୂର୍ଣ୍ଣ ସମ୍ବଳହୀନ । ସମସ୍ତ ପ୍ରକାରର ପଥ ମଧ୍ୟ ଅନେକ ଦିନୁ ବନ୍ଦ ହୋଇ ସାରିଛି । ମୋ ମୁଣ୍ଡ ଘୂରିବାକୁ ଲାଗିଲା । ନିଜ ଉପରେ ଅଯଥା କ୍ରୋଧ ହେଲା । ନିଜର ସ୍ଥିତି ଉପରେ ଅବିଶ୍ୱାସ ହେଲା ।

ଆଖି ବନ୍ଦକରି ଅନେକବେଳ ବସି ରହିଲି । ଦୁଃଖ, ଅବଶୋଷରେ ମୁଁ ଭରି ଯାଇଥାଏ । ଶେଷକୁ ନିଶ୍ଚୟ କଲି ମଉସାଙ୍କୁ ବସାଇ ଶାନ୍ତନୁ ନିକଟକୁ ଯିବି ଏବଂ ତାକୁ ନିଜର ପରିସ୍ଥିତି ବିଷୟରେ ସବୁ କଥା କହି କିଛି ଟଙ୍କା ଧାର ଆଣିବି ।

ହଠାତ୍ ଘର ଭିତରୁ ପାଟି ଶୁଭିଲା । ମୁଁ ଅଟକିଗଲି । ମୋ ପାଦ ଦୁଇଟା ଲୁହା ସ୍ତମ୍ଭପରି ଓଜନିଆ ହୋଇଗଲା । ମୁଁ ପାଟି ଠିକ୍ ଚିହ୍ନି ପାରିଲି । ଝିଅର କାଗଜବାଲା ମଉସାଙ୍କ ସହିତ ପାଟି କରୁଥାଏ । ମୁଁ ଲଜ୍ଜା ଓ ଅବସାଦରେ ଜୁଡ଼ୁବୁଡ଼ୁ ହୋଇଗଲି । ଧୀରେ ଧୀରେ ପାଟି ବନ୍ଦ ହୋଇଗଲା ।

ମୁଣ୍ଡ ତଳକୁ କରି ଓଜନିଆ ପାଦରେ ଉଦାସ ଆଖିରେ ମୁଁ ଘର ଭିତରେ ପ୍ରବେଶ କଲି । ମଉସା ମୋତେ ଏକ ଅଦ୍ଭୁତ ଦୃଷ୍ଟିରେ ଲକ୍ଷ୍ୟ କରିଥାନ୍ତି । ସତେ ଯେମିତି ସେ ବିଶ୍ୱାସ କରିପାରୁ ନ ଥିଲେ । ସେ ଯେଉଁ ସ୍ୱପ୍ନ ଦେଖି ଆସିଥିଲେ, ଯେଉଁ ଧାରଣା କରିଥିଲେ, ତାହା ଯେମିତି ଭାଙ୍ଗି ନଷ୍ଟ ହୋଇଗଲା । ସେ ଏକ ଅପରିଚିତର ଦୃଷ୍ଟିଭଙ୍ଗୀ ନେଇ ମୋତେ ଲକ୍ଷ୍ୟ କରୁଥିଲେ, ବିଶ୍ଳେଷଣ କରୁଥିଲେ । ଏବଂ ମୁଁ ଭାବୁଥିଲି, ସେ ଏଇକଥା ନେଇ ବାପାଙ୍କୁ କହିଦେବେ । ତା'ପରେ ବାପାଙ୍କର ମନୋସ୍ଥିତି କଅଣ ହେବ ? ସେ ସହି ପାରିବେ ତ ଏ ଆଘାତ ? ଯେଉଁ ସନ୍ତାନଠାରୁ ସେ ଆଶା କରୁଥିଲେ ଅନେକ କିଛି । ଯେଉଁ ସନ୍ତାନ ନିକଟରୁ ସେ ଚାହୁଁଥିଲେ, ତାଙ୍କର ଯତ୍ନ ନେବ, ଭଉଣୀର ବିବାହ କରିବ । ଯେତେବେଳେ ଜାଣିବେ ସେଇ ସନ୍ତାନ ନିଜେ ନିଜର ଯତ୍ନ ନେଇପାରୁ ନାହିଁ, ସେତେବେଳେ ତାଙ୍କର ଅବସ୍ଥା କଅଣ ହେବ ?

"ଖବର କାଗଜବାଲା ଆସି ପାଟି କରୁଥିଲା । ମୁଁ ତା' ପଇସା ଚୁକ୍ତି କରି ଦେଇଛି । ନେ ରଖ ରସିଦ ।" ସେ ମୋ ହାତକୁ ରସିଦଟା ବଢ଼େଇ ଦେଲେ । ମୁଁ କମ୍ପିତ ହସ୍ତରେ ରସିଦକୁ ଗ୍ରହଣ କଲି । ତା'ପରେ ମଉସା ଆଉ କିଛି କହିଲେ ନାହିଁ ।



ଆମେ ରାଜପଥରେ ଚାଲୁଥିଲୁ । ମଉସା ଗାଁ ବିଷୟରେ କହୁଥିଲେ । ବନ୍ୟା, ବାତ୍ୟା ଓ ମରୁଡ଼ି ଗା ଓ ଗ୍ରାମବାସୀମାନଙ୍କର ମନୋବଳକୁ ସମ୍ପୂର୍ଣ୍ଣ ଭାଙ୍ଗି ଦେଇଛି । ଫସଲ କଥା କହୁଥିଲେ । ବାପାଙ୍କ କଥା କହୁଥିଲେ । ବୋଉ କଥା କହୁଥିଲେ । ମୁଁ କିନ୍ତୁ କିଛି ଶୁଣିପାରୁ ନ ଥିଲି । ମୋ ମନରେ କେବଳ ମାତ୍ର ଗୋଟିଏ ଚିନ୍ତାଥିଲା, ବର୍ତ୍ତମାନ ବିଷ୍ଣୁ ପଣ୍ଡା ଦୁଇଟା ମିଲ୍‌ର ଦାମ୍ ବାକି ରଖିବ କି ନାହିଁ । ଯଦି ନ ରଖେ ତେବେ କେତେ ହନସ୍ତା ହେବାକୁ ପଡ଼ିବ । ଶାନ୍ତନୁ ନିକଟକୁ ମଧ୍ୟ ଯିବାର ସମସ୍ତ ନାହିଁ । ମଉସା ବୁଢ଼ାଲୋକ, ଭୋକ କରୁଥିବ । କିନ୍ତୁ··· । ସବୁ ଗୋଳମାଳିଆ ହୋଇ ଯାଉଥିଲା । ମୁଣ୍ଡ ଭିତରେ ଅନେକ ଚିନ୍ତା ମିଶିଯାଇ ମୋର ଚିନ୍ତାଶକ୍ତିକୁ ଦୁର୍ବଳ କରି ପକାଉଥିଲେ । ମୁଁ କିଛି କରିବା ଅବସ୍ଥାରେ ନ ଥିଲି । ତେଣୁ ନିଜକୁ ପରିସ୍ଥିତିର ତୋଡ଼ରେ ଛାଡ଼ି ଦେଇଥିଲି । ଯାହା ହେବ ·· ।

"କେଉଁଠି ଖାଇନେଲେ ହେବ ।" ମଉସା କହିଲେ ।

"ଆଗରେ ମୋ ହୋଟେଲ । ଆଉ ଅଳ୍ପବାଟ ।" ମୁଁ କହିଲି ।

"ଠିକ୍ ଅଛୁ ସେଇଠିକୁ ଯିବା ।"

ହୋଟେଲ ସମ୍ମୁଖରେ ପହଞ୍ଚିଲାବେଳକୁ ମୁଁ ଅତ୍ୟନ୍ତ କ୍ଲାନ୍ତ ହୋଇ ପଡ଼ିଥିଲି । କାଉଣ୍ଟରରେ ବଷ୍ଟୁ ପଣ୍ଡା ନିଜେ ବସିଥିଲା । ମୋତେ ଦେଖି ବ୍ୟଙ୍ଗରେ ହସିଲା—"କଉ ସାମନ୍ତ ବାବୁ···ଦିନ ଦିନ ହେଲା ଦେଖାନାହିଁ । କଅଣ ନ ଥିଲ କି ?"

ଅନିଚ୍ଛା ସତ୍ତ୍ୱେ ହସିବା ପାଇଁ ଚେଷ୍ଟାକଲି—"ଦେହ ଭଲ ନ ଥିଲା ।"

ମଉସାଙ୍କୁ ଟେବୁଲରେ ବସାଇ ମୁଁ ବଷ୍ଟୁ ପଣ୍ଡା ପାଖକୁ ଚାଲିଆସିଲି । ସେ ମୋତେ ଦେଖି ମୁଣ୍ଡଟେକି ବଙ୍କ ଚାହାଣିରେ ମୋତେ ଲକ୍ଷ୍ୟ କଲା—"କଅଣ ହେଲା ?"

"ଦେଖ ପଣ୍ଡା, ମୋ ମଉସା ଗାଁରୁ ଆସିଛନ୍ତି । ମୋ ପାଖରେ ବିଲକୁଲ୍ ଟଙ୍କା ନାହିଁ । ଆଜି ଦିନଟା ମୋ ସମ୍ମାନ ରକ୍ଷା କରିଦିଅ । ଦରମା ପାଇଲେ ତମ ଟଙ୍କା ମୁଁ ନିଶ୍ଚୟ ଦେଇଦେବି ।" ମୁଁ ବିକଳ ହୋଇ ଉଠିଲି ।

"ସେ କଥା ଛାଡ଼ ପ୍ରଧାନ ବାବୁ । ଆଜିକାଲି ହୋଇ କେତେଦିନ ହେଲଣି ହିସାବ ରଖିଛ ?"

"ଏଥରକ ନିଶ୍ଚୟ ଦେଇଦେବି । ତାଙ୍କ ଆଗରେ ଏସବୁ କଥା କୁହନି ନାହିଁ ।" ମୁଁ ହାତ ଧରି ନେହୁରା ହେଲି ।

"ନା···ପ୍ରଧାନ ବାବୁ । ତା' ହୋଇ ପାରିବ ନାହିଁ । ମୁଁ ଧାରି ପୂରାପୂରି ବନ୍ଦ କରି ଦେଇଛି ।"

"ଆଜି ଦିନଟା···" । ମୋତେ ଲାଗିଲା, ଆଉ ଥରେ କହିଲେ ମୁଁ କାନ୍ଦି ପକେଇବି ।

ମୁଁ ନିରାଶ ଓ ଉପାୟହୀନ ହୋଇ କଅଣ କରିବି ଚିନ୍ତା କଲାବେଳେ ମଉସା ଡାକ ଦେଲେ—"ନରେଶ···ଆରେ ଇଆଡ଼େ ଖାଇବାକୁ ଆସିଗଲାଣି ଯେ ! ଆ··· ।"

କ୍ଲାନ୍ତ ପାଦରେ ମୁଁ ଟେବୁଲ୍ ନିକଟରେ ପହଞ୍ଚିଲି । ମଉସା ଖାଇ ଚାଲିଥାନ୍ତି । ମୋ କ୍ଷୁଧା ଅନେକବେଳୁ ମରି ସାରିଥିଲା । ଏମିତି ଅନେକ ଥର ଏଇ ଦେଢ଼ବର୍ଷ ଭିତରେ ଆପେ ଆପେ ମୋ କ୍ଷୁଧା ମରିଛି ଏବଂ ମୁଁ ଖାଲି ପେଟରେ ଅଫିସ ଯାଇଛି; ରାତିରେ ଶୋଇଛି ।

ଅନିଚ୍ଛା ସତ୍ତ୍ୱେ ଖାଇଲି । ମୋତେ ଲାଗୁଥାଏ ବାନ୍ତି ହୋଇଯିବ । ପେଟ ଭିତରୁ କଅଣ ଗୋଟାଏ ଉଠି ଆସୁଥାଏ । ମୁଣ୍ଡରେ ଭୀଷଣ ଯନ୍ତ୍ରଣା ହେଉଥାଏ ଏବଂ ମୋତେ ଅତ୍ୟନ୍ତ କ୍ଳାନ୍ତ ଲାଗୁଥାଏ । ଜାଣିଜାଣି ମୁଁ ଧିରେ ଧିରେ ଖାଉଥାଏ । ମଉସା ଖାଇସାରି ହାତ ଧୋଇ, ଥରେ ମୋତେ ଅନେଇଲେ ଏବଂ ତା'ପରେ ବିଲ୍ ଦେଲେ । ମୁଁ କେତେକ କ୍ଷଣ ପାଇଁ ଭାତ ଗିଳି ପାରିଲି ନାହିଁ । ଲଜ୍ଜାରେ ମୋ ମୁଣ୍ଡ ତଳକୁ ହୋଇଗଲା ।



ପୁନର୍ବାର ରାସ୍ତା ଏବଂ ଆମେ ଦୁଇଜଣ । ଖରାରେ ଆମର ଛାଇଗୁଡ଼ାକ ଆମକୁ ଗୋଡ଼ାଇ ଥାନ୍ତି । ମଉସା ସମ୍ପୂର୍ଣ୍ଣ ନୀରବ ଥାନ୍ତି । ମୁଁ କିନ୍ତୁ ଚାହୁଁଥାଏ, ମଉସା କିଛି କୁହନ୍ତୁ । ମୋ ଅବସ୍ଥା ଦେଖି ମୋତେ ସହାନୁଭୂତି ପ୍ରଦର୍ଶନ କରନ୍ତୁ । ମୁଁ ନିଜ ଦୁଃଖ ତାଙ୍କ ଆଗରେ କହି ନିଜ ଅନ୍ତର ମଧ୍ୟରେ ଦେଢ଼ବର୍ଷ ହେଲା ଜଳୁଥିବା ନିଆଁକୁ ନିର୍ବାପିତ କରେ । ମୁଁ ଜାଣି ପାରିଥିଲି ଯେ ଏହାପରେ ତୁଳସୀ ଓ ମୋ ମଧ୍ୟର ସମ୍ପର୍କ ନିଶ୍ଚୟ ତୁଟିଯିବ ଏବଂ ଆସନ୍ତା ବର୍ଷ କୌଣସି ଏକ ଦିନରେ ମୁଁ ଶୁଣିବି ତୁଳସୀର ବିବାହ ହେଉଛି । କୌଣସି ଏକ ସୁ-ପାତ୍ରର ହାତରେ ତା' ହାତକୁ ଟେକି ଦିଆଯିବ । ମୁଁ ଏଇ କଳଙ୍କିତ ସହରର ଉପାନ୍ତରେ ସେଇପରି ବସିଥିବି ଏବଂ ମୋ ଚକ୍ଷୁ ସମ୍ମୁଖରେ କେବେ ନିର୍ମାଣ କରିଥିବା ଶ୍ରେଷ୍ଠ ଏକ ସୁନ୍ଦର ଘରର ସ୍ୱପ୍ନ ଭାଙ୍ଗି ନଷ୍ଟ ହୋଇଯିବ । ଏକ ଯୁବତୀ ପ୍ରଥମ ପ୍ରେମର ପ୍ରଥମ ଓ ଶେଷ ଚୁମାକୁ ନିଜ ବୈବାହିକ ଜୀବନର ଉତ୍ଥାନ ପତନ ମଧ୍ୟରେ ପାଶୋରି ଦେବ । ମୁଁ ତଥାପି ସେଇପରି ବସିଥିବି, ଭୋଗୁଥିବି ନର୍କର ଯନ୍ତ୍ରଣା । ମୋ ମୁଣ୍ଡ ଭିତରେ କିଛି ଗୋଟାଏ ବେଲୁନ ପରି ଫାଟିଗଲା ।

ହଠାତ୍ ମଉସା ମୋ ଭାବନାରେ ପୂର୍ଣ୍ଣଚ୍ଛେଦ ପକାଇ ପ୍ରଶ୍ନ କଲେ— "ଏ ଜୀବନ ଭଲ ଲାଗୁଛି ?"

ମୁଁ ହସିଲି, ଦୁଃଖରେ ଅଥବା ଅବଶୋଷରେ, "ଆଉ ଉପାୟ କଅଣ ମଉସା ! ଏ ଚାକିରି ଛାଡ଼ିଲେ ଅନ୍ୟ କୌଣସି ଚାକିରି ମିଳିବ ନାହିଁ । ଦେଢ଼-ବର୍ଷ ତଳେ ଯାହା ମିଳି ଯାଉଥିଲା ସହଜରେ, ତାହା ଆଜିକାଲି ଚେଷ୍ଟା କରି ମଧ୍ୟ ମିଳୁନାହିଁ ।"

ସେ ଆଉ କିଛି କହିଲେ ନାହିଁ ।

ହଠାତ୍ ମୋ ଆଖି ଆଗରେ କାବେରୀର ଛବି ନାଚି ଉଠିଲା । ମୁଁ ପଚାରିଲି—"ମଉସା, କାବେରୀର ବିବାହ କଥା କଅଣ କହୁଥିଲ ? କେଉଁଠି ଠିକ୍ ହେଲାଣି ?"

ମଉସା ଦୀର୍ଘଶ୍ୱାସ ଛାଡ଼ି ମୋତେ ଥରେ ଅନେଇ ହସିଲେ, ସତେ ଯେମିତ ଉପହାସ କଲେ, 'ତୁ ଜାଣି କଅଣ କରିବୁ' ? ତା'ପରେ କହିଲେ—"ସବୁ ଠିକ୍ ହୋଇଯିବ । ତୁ ଅଯଥା ବ୍ୟସ୍ତ ହୁଅନା ।"

"ତଥାପି ମଉସା··· ।"

"ଆମେ ସବୁ ଠିକ୍ କରିନେବୁ ।" ମଉସା କହିଲେ ।



ବସ୍ ଟିକେଟ ପାଇଁ ମୋତେ ଚିନ୍ତା କରିବାକୁ ପଡ଼ିଲା ନାହିଁ । ବସ୍‌ଷ୍ଟାଣ୍ଡରେ ପହଞ୍ଚି ମଉସା ନିଜେ କାଉଣ୍ଟରରୁ ଟିକେଟ କରି ବସ୍‌ରେ ବସିଲେ । ମୁଁ ତଳେ ଠିଆ ହୋଇଥାଏ । ବସ୍ ଛାଡ଼ିବା ପାଇଁ ତଥାପି ପନ୍ଦର ମିନିଟ୍ ବାକିଥାଏ ।

ମଉସା ମୋତେ ଅନେଇଲେ । ତାଙ୍କ ଆଖିରେ ମୋ ପ୍ରତି ଦୟା, ଅନୁରାଗ, ସହାନୁଭୂତି ଭରି ରହିଥିଲା । ମୁଁ ନିଜକୁ ଯଥାଶକ୍ତି ସଂଯତ କରି କହିଲି—"ମଉସା !"

ସେ ମୋତେ ଲକ୍ଷ୍ୟକଲେ—"କଅଣ କହିବୁ ?"

"ବାପାଙ୍କୁ ଏଠାକାର ବିଷୟ କିଛି କହିବ ନାହିଁ । ମୁଁ ବେଶ୍ ସୁଖୀ ଅଛି ।" ମୋ କଣ୍ଠ ବାଷ୍ପାରୁଦ୍ଧ ହୋଇଗଲା । ମଉସାଙ୍କ ମୁହଁ ଶୁଖି ଆସିଲା । ସେ କିଛି ନ କହି ମୁଣ୍ଡ ହଲେଇଲେ ଏବଂ ଠିକ୍ ସେତିକବେଳେ ବସ୍‌ଟା ଛାଡ଼ିଦେଲା ।



('ଝଙ୍କାର' ମାର୍ଚ୍ଚ, ୧୯୭୪)

# ଘର

ଆମେ ଅତ୍ୟନ୍ତ କ୍ଳାନ୍ତ ହୋଇ ପଡ଼ିଥିଲୁ । କାମ ସମାପ୍ତି କରି ମୁଁ ଓ ନିୟାଜ ଦୁହେଁ ଏକା ସଙ୍ଗେ ଚାଲି ବାହାରିଥିଲୁ । ଆମର ଚାଲିବା ସଙ୍ଗେ ସଙ୍ଗେ ସମସ୍ତ ମଧ୍ୟ ଚାଲିଥିଲା । ସନ୍ଧ୍ୟାର ଲାଲିମା ପରେ ଏକ କଦର୍ଯ୍ୟ ଅନ୍ଧାର ଓ ତା'ପରେ ହଠାତ୍ ଆଲୋକମାନଙ୍କର ସମ୍ମିଳିତ ହସ । ବଜାରଟା ଏକ ବେଶ୍ୟା ପରି ନିଜକୁ ସୁସଜ୍ଜିତ କରି ଗ୍ରାହକମାନଙ୍କ ଉଦ୍ଦେଶ୍ୟରେ ବସି ସାରିଥିଲା । ତା'ର ଲୋଭନୀୟ ରୂପ ଦେଖି ଆମେ ଓ ଆମର ମନ ଲାଳାୟିତ ହୋଇଥିଲେ ମଧ୍ୟ, ନିଜକୁ ସଯତ୍ନ କରି ବଜାରଠାରୁ ଅନେକ ଦୂରକୁ ଚାଲି ଆସିଥିଲୁ । ଆମ ପକେଟରେ ଧନକର ମଜୁରି ଅଢ଼େଇ ଟଙ୍କା ଥିଲା ଏବଂ ଅବଶେଷରେ ଯେତେବେଳେ ରାଜରାସ୍ତାର ବକ୍ଷରେ ନିଜର ପାଦଚିହ୍ନ ଛାଡ଼ି ଆମେ ପୁନର୍ବାର ଆରମ୍ଭ ଘରେ ପହଞ୍ଚିଗଲୁଁ, ସେତେବେଳେ ଆମେ ପ୍ରକୃତରେ ଅତ୍ୟନ୍ତ କ୍ଳାନ୍ତ ହୋଇ ପଡ଼ିଥିଲୁ । ଆମ ସାମ୍ନାରେ ଅର୍ଦ୍ଧ ନିର୍ମିତ ଅଟ୍ଟାଳିକା । ସେଠ ନଗରମଲଙ୍କ ଅଟ୍ଟାଳିକା । ବର୍ତ୍ତମାନ ପର୍ଯ୍ୟନ୍ତ ଆଠଟି ମହଲା ତିଆରି ହୋଇ ସାରିଲାଣି । ଆହୁରି ଚଉଦଟି ମହଲା ବାକି । ଏ ସହରର ସବୁଠାରୁ ଉଚ୍ଚ ଅଟ୍ଟାଳିକା ଏବଂ ସେଇ ଅଟ୍ଟାଳିକାର ଅସଂଖ୍ୟ ମଜୁରିଆମାନଙ୍କ ମଧ୍ୟରେ ନିୟାଜ ଓ ମୁଁ ଦୁହେଁ ସାମାନ୍ୟ ଦୁଇଜଣ ମଜୁରିଆ ।

ନିୟାଜ ବଡ଼ି ବାହାର କଲା । ଝଣ୍ଟେ ବଡ଼ି ନେଇ ଓଠରେ ଲଗାଇଲା । ନିୟାଜ ମାଚିସ ମାରି ମୋ ଆଗକୁ ନେଇ ଆସିଲା । ମୁଁ ବଡ଼ିରେ ଅଗ୍ନିସଂଯୋଗ କରି ଆକାଶକୁ ଛୁଇଁବାର ଅପଚେଷ୍ଟା କରୁଥିବା ଅର୍ଦ୍ଧନିର୍ମିତ ଅଟ୍ଟାଳିକାକୁ ଲକ୍ଷ୍ୟକରି ଦୀର୍ଘଶ୍ୱାସ ଛାଡ଼ିଲି । ନିୟାଜ ପ୍ରଥମେ ତା' ଘରେ ରହୁଥିଲା । ଦଶଦିନ ତଳେ ତା' ସହିତ ମୋର ପ୍ରଥମଥର ପାଇଁ ଦେଖା ହୋଇଥିଲା । ମୁଁ ନିଜ ବିବାହର ଆଠଦିନ ପରେ ସହରକୁ ଆସିଥିଲି କାମ ପାଇଁ ଓ ଏକ ଗ୍ଲେଟ ଘର ପାଇଁ । ଗ୍ଲେଟ ଏକ ଘର । ଆଠଫୁଟ ଲମ୍ବା ଓ ଆଠଫୁଟ ଚଉଡ଼ା । କାମ

ମିଳିଗଲା । ନିସ୍ୱାଜ ସହ ଦେଖାହେଲା ପରେ । କିନ୍ତୁ ଘର ମିଳିଲା କାହିଁ ! ପ୍ରତ୍ୟେକ ଦିନ କାମ ପରେ ସହରର ପ୍ରତ୍ୟେକ ଗଳିକନ୍ଦି ନିସ୍ୱାଜ ସହ ବୁଲିଲା ପରେ ମଧ୍ୟ ପ୍ରତ୍ୟେକ ସ୍ଥାନରୁ କେବଳ ଅସଫଳତା ହିଁ ମିଳିଲା । କେବଳ ମୋ ପାଇଁ ନିସ୍ୱାଜ ସାଥିରେ ଘରକୁ ଯାଉନି । ସେଇ ଅର୍ଦ୍ଧନିର୍ମିତ ଅଟ୍ଟାଳିକାର ଗୋଟାଏ କଣରେ ଆମେ ଦୁଇ ବନ୍ଧୁ ଭବିଷ୍ୟତ ଦିନର ସ୍ୱପ୍ନ ଦେଖି ଦେଖି ରାତିର ପ୍ରତ୍ୟେକ ପ୍ରହରର ସଙ୍ଗୀତକୁ ଉପଭୋଗ କରୁ । ନଗେନ୍ଦ୍ର ଶ୍ମଶାନ ରାସ୍ତାରେ ବିଡ଼ି ଟାଣି ପରିତ୍ୟକ୍ତ ବଜାର ଓ ସୁପ୍ତ ସହରକୁ ବିଦ୍ରୁପଭରା ଚକ୍ଷୁରେ ମଧ୍ୟ ଅନେକଥର ଭଲ ଲାଗେ, ଯେତେବେଳେ ନିଦ ହୁଏନି ଏବଂ ରାସ୍ତା ଆରପଟ ନର୍ଦ୍ଦମାରୁ ମଶା ଦଳ ବାନ୍ଧି ଆମ ଉପରେ ଆକ୍ରମଣ କରନ୍ତି ।

ଫୁଟପାଥରେ ଛୋଟ ଛୋଟ ଜିନିଷ ବିକୁଥିବା ବ୍ୟକ୍ତି; ଆମ ସହିତ କାମ କରୁଥିବା ଅନେକ ମଜୁରିଆ; ଜଗ୍ଗା ସିଂହ ହୋଟେଲର କଣା ବହିରା ଟୋକା ଓ ମୋଟା ମିସ୍ତ୍ରିଜନା ମଧ୍ୟ ସେଇ ଅଟ୍ଟାଳିକା ଭିତରେ ଆଶ୍ରୟ ନିଅନ୍ତି । ରାତିରେ ଗଞ୍ଜେଇ ଟାଣନ୍ତି, ମଦ ପିଅନ୍ତି ଏବଂ ଯୁବତୀ ଭିକାରୁଣୀମାନଙ୍କୁ ଡାକି ସେଇ ଅଟ୍ଟାଳିକା ତଳେ ନିଜର ବାସନା ମଧ୍ୟ ଶାନ୍ତ କରନ୍ତି । ମୋଟା ମିସ୍ତ୍ରିଜନା ବହିରା ଟୋକାର ଆପତ୍ତି ନ ମାନି ତା' ହାଫ୍‌ପେଣ୍ଟ ଖୋଲି ପକାଏ ଏବଂ ତାକୁ ନିଜର ମୋଟା ବାହୁ ଓ ମୋଟା ଜଙ୍ଘ ତଳେ ମାଡ଼ିବସେ । ପ୍ରଥମେ ମୋତେ ଖୁବ୍ ଅଡ଼ୁଆ ଲାଗୁଥିଲା । ହଠାତ୍ ଏପରି ପରିବେଶ ସହିତ ନିଜକୁ ଖାପଖୁଆଇ ନେବାପାଇଁ ମୋତେ କିନ୍ତୁ ବେଶୀ ସମୟ ଲାଗି ନ ଥିଲା । ପ୍ରତ୍ୟେକ ମଣିଷ ମୋଠାରୁ ପୃଥକ ଦୃଷ୍ଟିକୋଣରୁ ଭିନ୍ନ ହେଲେ ମଧ୍ୟ ତା' ଅନ୍ତର ମଧ୍ୟର ମଣିଷକୁ ମୁଁ ଚିହ୍ନିପାରେ, କାରଣ ଦର୍ପଣରେ ନିଜର ପ୍ରତିବିମ୍ବ ନିଜେ କେମିତି ଚିହ୍ନି ନ ପାରିବ ? ଗୋଟାଏ ନାରୀ ପାଇଲେ ଦଳ ବାନ୍ଧି ସେମାନେ ଆକ୍ରମଣ କରନ୍ତି । ନାରୀ ଚିତ୍କାର କରେ, ଗାଳିଦିଏ ଏବଂ ସେମାନେ ହସନ୍ତି ଆହୁରି ଜୋରରେ— ଚିତ୍କାର କଲାପରି । ସେମାନଙ୍କ ହସ ସହିତ ଜଗ୍ଗା ସିଂହ ହୋଟେଲର ଦେଶୀ ମଦ ଗନ୍ଧ ବାତାବରଣରେ ଖେଳାଇ ହୋଇଯାଏ । ସେ ଗନ୍ଧରେ ମୋ ନିଃଶ୍ୱାସ ବନ୍ଦ ହୋଇଗଲା ପରି ଲାଗେ । ମୋର ମନେପଡ଼େ ଯମୁନା କଥା । ଯମୁନା ମୋ ସ୍ତ୍ରୀ । ଭଲଭାବେ ତାକୁ ମୁଁ ଦେଖିପାରିନି, ଭଲଭାବେ ତା' ଅଙ୍ଗଗୁଡ଼ାକୁ ଛୁଇଁ ମଧ୍ୟ ପାରିନି । ଭାଇ-ଭାଉଜ ଦେଖିବେ ବୋଲି କେତେ ସନ୍ତର୍ପଣରେ ତାକୁ ଛୁଏଁ । ଆଃ ! ଏବେ କେମିତି ଥିବ ସେ ? ତା' ଓଠରେ କେତେ ଉଷ୍ଣତା ଥିଲା ସତେ ! ତା' ଶରୀରର ଗନ୍ଧ···ସେଇ ମହୁଆଲି ନିଶା କାହିଁ ? ମୁଁ ଚମକିପଡ଼େ । ନାରୀର ଚିତ୍କାର ବୃଦ୍ଧି ପାଏ । ଜଗ୍ଗା ସିଂହ ଲୁଙ୍ଗି ପିନ୍ଧି ପିନ୍ଧି ହୋଟେଲ କବାଟ

ଖୋଲି ବାହାର ଆସେ । ତାକୁ ଦେଖି ଅତ୍ୟାଗ୍ରହୀ ଓ ଲୁଣ୍ଠନକାରୀମାନେ ଲୁଚିଯାଆନ୍ତି ଏବଂ ନାରୀଟି ଉଠି ଯିବାକୁ ଉଦ୍ୟମ କରୁଥିବାବେଳେ ଜଗ୍‌ଗା ସିଂହ ତାକୁ ଧରି ପକାଏ—"ଶାଲୀ, ଯାଉଛୁ କୁଆଡ଼େ ?" ନାରୀଟିର ପ୍ରତିବାଦ କେହି ଶୁଣନ୍ତିନି । ସେମାନେ ଲୁଚି ଲୁଚି ହସନ୍ତି । ଜଗ୍‌ଗା ସିଂହ ନାରୀଟିକୁ ପୁଣି ସେଇ ବାଲି ଉପରେ ଶୁଆଇଦେଇ ନିଜ ଦାଢ଼ିବହୁଳ ମୁହଁକୁ ତା' ମୁହଁ ନିକଟକୁ ନେଇଯାଏ । ଏଇ ପଥରଦିନ ଏକ ତେର ବର୍ଷର ଭିକାରୁଣୀର ଲାସ୍ ମିଳିଥିଲା ଏଇ ଅଟ୍ଟାଳିକା ଭିତରୁ । ଜଗ୍‌ଗା ସିଂହ ପୋଲିସର ହାତ ଗରମ କଲା ଏବଂ ତା'ପରେ ମ୍ୟୁନିସିପାଲିଟିର ଠେଲାଗାଡ଼ି ଆସି ସେ ଶବଟିକୁ ନେଇ ଯାଇଥିଲା । ଏଇଟା ସହର ଏବଂ ଏଇଟା ଆମ ଘର । ଦିନେ ଦିନେ ମୁଁ ପଚାରେ ନିୟାଜକୁ—"ଆଚ୍ଛା ନିୟାଜ, ଆଜି ଏଇଟା ଚୋର, ମୋର ଆମ ସମସ୍ତଙ୍କ ଘର । କିନ୍ତୁ ଯେତେବେଳେ ଏଇଟା ସମ୍ପୂର୍ଣ୍ଣ ହୋଇଯିବ, ସେତେବେଳେ ଏ ଶହ ଶହ ବ୍ୟକ୍ତି ରହିବେ କେଉଁଠି ?" ନିୟାଜ ହସେ । କୁହେ—"ଏ ସହରରେ ପ୍ରତିଦିନ ନୂଆ ନୂଆ ଘର ତିଆରି ହେଉଛି ମୂର୍ଖ । ଏଠି ନ ହେଲେ ସେଠି । ଏମାନଙ୍କର ଚିନ୍ତା କଅଣ ? ତୋ ନିଜ କଥା ଭାବ—ଫୁଟପାଥରେ ଶୋଇପାରିବୁ ଦରକାର ପଡ଼ିଲେ ?"

ନିୟାଜର ଏକଥା ଶୁଣି ଦୁଃଖ ଲାଗେ । କିନ୍ତୁ ହୃଦୟ ଭିତରର ସେ ଦୁଃଖ କେବେ ବାହାରକୁ ବାହାରି ପାରେନାହିଁ । ନିରୂପାୟ ହୋଇ ପଡ଼ିଲେ, ଆଉ ଦୁଃଖ କରି ବା ଦୀର୍ଘଶ୍ୱାସ ତ୍ୟାଗ କରି ଲାଭ କଅଣ ? ସହରକୁ ନ ଆସି କଅଣ ବା କରି ପାରିଥାନ୍ତି ?

ନିୟାଜ ବଡ଼ ଟିପିଦେଇ ମୋ କାନ୍ଧରେ ହାତ ରଖିଲା । ମୁଁ ତାକୁ ଅନେଇଲି । ସେ ଯେମିତି ମୋତେ ପଚାରୁଥିଲା—"ଏଥର ?" ପାଦଦ୍ୱୟ କ୍ଳାନ୍ତିର ବୋଝରେ ନଇଁ ପଡ଼ିଥିଲେ । ଠିଆ ହେବାକୁ ଆଉ ଶକ୍ତି ନ ଥିଲା । ରାତିଟା ମଧ୍ୟ ଆଗକୁ ଆଗକୁ ବଢ଼ି ଚାଲିଥିଲା । ସହରର ଏ ପ୍ରାନ୍ତରେ ଜନଗହଳି ଖୁବ୍ କମ୍ । ରିକ୍‌ସାରେ ଦୁଇଟି ଯୁବତୀ ଚାଲିଗଲେ । ଜଗ୍‌ଗା ସିଂହ ଦୁଇ ଆଙ୍ଗୁଳି ଜିଭ ଭିତରେ ଦେଇ ସିଟି ମାରିଲା ଏବଂ ପଞ୍ଜାବୀ ଭାଷାରେ ଗୋଟାଏ ବଡ଼ ଗାଳିଦେଇ ନିୟାଜକୁ ଡାକିଲା । କିଛିଦିନ ହେବ ହଠାତ୍ ଅଣ୍ଡା ଆରମ୍ଭ ହୋଇ ଯାଇଛି । ନିୟାଜ ମୋ କାନ୍ଧରେ ହାତଦେଇ ଜଗ୍‌ଗା ସିଂହର ହୋଟେଲ ଆଡ଼କୁ ଟାଣିନେଲା ।

"ରାମଚନ୍ଦ୍ର କାହାର ନାଁ···ତୋର ନୁହେଁ ତ ?" ଜଗ୍‌ଗା ସିଂହ ଦୁଇଟି ପୋଷ୍ଟକାର୍ଡ଼ ହାତରେ ଧରି ମୋତେ ପଚାରିଲା ।" ମୁଁ କିଛି ଉତ୍ତର

ଦେବା ପୂର୍ବରୁ ନସ୍ଯାଜ ସେ ପୋଷ୍ଟକାର୍ଡ ଦୁଇଟିକୁ ଛଡ଼େଇ ଆଣି ମୋତେ ଭିତରକୁ ଠେଲି ନେଉ ନେଉ କହିଲା—"ହୁଁ ! ସର୍ଦ୍ଦାର ଶୀ—ଯ୍ଯାଗ ଦା ରାମଚନ୍ଦ୍ର । ରାମାୟଣର ରାମଚନ୍ଦ୍ର ଯେପରି ବନବାସ କରିଥିଲେ, ଇଏ ମଧ୍ଯ ଠିକ୍ ସେଇପରି ସହରବାସ କରୁଛି ।" ଜଗ୍‌ଗା ସିଂହ ହୋ ହୋ ହୋଇ ହସି ଉଠିଲା ।

ମୁଁ ଚିଠି ଦୁଇଟିକୁ ଧରିଥିଲି ଏବଂ ମୋ ଆଖି ଆଗରେ ଯମୁନାର ଅଳତା ଲଗା ଗୋରା ଗୋରା ପାଦ ଦୁଇଟି ନାଚୁଥିଲା । ଆସିଲାବେଳେ ଭାଉଜ କହୁଥିଲେ—"ରାମ, ଶୀଘ୍ର ସହରରେ ଘରର ବ୍ୟବସ୍ଥା କରି ଯମୁନାକୁ ନେଇଯିବ । ପିଲାଲୋକ । ତା' ପାଦରୁ ଅଳତା ଲିଭିନି, ତାକୁ ଛାଡ଼ି ଯାଉଛ । ଯିଏ ଶୁଣିବ ହସିବ ।" ମୁଁ ମଧ୍ଯ ହସିଥିଲି । ଯିଏ ହସି ହସି ସବୁ ସହିନଏ, ସେ ତ ପ୍ରକୃତ ପୁରୁଷ । ନିଜ ସ୍ୱାର୍ଥ ପାଇଁ ଭାଇ ଭାଉଜଙ୍କ ସୁଖରେ ମୁଁ ବାଧା କାହିଁକି ଦେବି ? ନା ସେମାନେ ତାଙ୍କ କର୍ତ୍ତବ୍ୟ କରିଛନ୍ତି । ଏଥର ମୁଁ ମୋ କର୍ତ୍ତବ୍ୟ କରିବି । କିନ୍ତୁ କବାଟ ଫାଙ୍କରୁ ଯମୁନାର ସରୁ ଚମ୍ପାକଢ଼ି ପରି ଆଙ୍ଗୁଳି ଓ ତା'ର ଲୁହଭରା ଆଖି···। ଆଃ ! ଏତେ ଯନ୍ତ୍ରଣା ! ନାରୀ ପାଇଁ ପୁରୁଷକୁ ଏତେ ଦୁଃଖ, ଯନ୍ତ୍ରଣା ସହିବାକୁ ହୁଏ, ଏପରିକି ନାରୀ ପାଇଁ ପୁରୁଷକୁ ତା'ର ଅନ୍ତରାତ୍ମାକୁ ମଧ୍ଯ ବିକିବାକୁ ହୁଏ, ନିଜକୁ ମଧ୍ଯ ସମୟ ପଡ଼ିଲେ ବିକିବାକୁ ପଡ଼େ । ନାରୀ ଆଖିର ଲୁହ, ତା' ଆଖିର ଆମନ୍ତ୍ରଣ ··· । ସବୁ ସହଜେ ଏଡ଼ାଇ ହୁଏନାହିଁ । ମୋ ହାତ ଥରି ଉଠିଲା । ମୁଁ ବିଚଳିତ ହୋଇ ପଡ଼ିଲି । ଯମୁନା ଯେମିତି ମୋ ଆଗରେ ଠିଆ ହୋଇ ପଚାରିଲା—"ମୋ ବିନା ରହି ପାରୁଛ ?" ମୁଁ ତା' ପ୍ରଶ୍ନର ଉତ୍ତର ଦେଇ ପାରିଲି ନାହିଁ । ଖାଲି ଦେଖୁଥିଲି ତା'ର ସେ ନାକର ଫୁଲକୁ, ଓଠର ଦୁଇପଟେ ପଡ଼ିଥିବା ଦୁଃଖର ଦାଗକୁ, ଲୁହଭରା ଆଖିକୁ, କାନର ଫୁଲକୁ, ସିନ୍ଦୂର ବିନ୍ଦୁକୁ, ତପ୍ତ ନିଃଶ୍ୱାସକୁ, ଯୌବନଭରା ଶରୀରକୁ···ତା'ର ପ୍ରତ୍ୟେକ ଅଙ୍ଗକୁ । ସେ ମୋର ସ୍ତ୍ରୀ । ସେ ସମ୍ପୂର୍ଣ୍ଣ ମୋର । ଆସିଲାବେଳେ କହିଥିଲା—"ଶୀଘ୍ର ମୋତେ ନେଇଯିବ ।" କିନ୍ତୁ କାହିଁ··· କେଉଁଠି । ଘର କାହିଁ···। ତାକୁ ଆଣି କଅଣ ଏଇ ଅର୍ଦ୍ଧନିର୍ମିତ ଅଟ୍ଟାଳିକା ମଧ୍ଯରେ ଆଶ୍ରୟ ଦେବି ଏବଂ ଦିନେ ରାତିରେ ପଶୁମାନେ ଦଳ ବାନ୍ଧି ଆକ୍ରମଣ କରିବେ । ହୁଏତ ତା' ପରଦିନ ସକାଳୁ ମ୍ୟୁନିସିପାଲିଟିର ଗାଡ଼ି ଆସି ତାକୁ ନେଇଯିବ । ନାଃ ! ଅସମ୍ଭବ । ମଣିଷ ଏତେ ବିବଶ ହୋଇପଡ଼େ କାହିଁକି ! ଏ ବିରାଟ ଦୁନିଆରେ ମୁଣ୍ଡ ଗୁଞ୍ଜିବାକୁ ଖଣ୍ଡେ ଛୋଟ ଆଠ ଫୁଟିଆ ଘର ମିଳେନି କାହିଁକି ? ମୋ ଛାତି ଭିତରେ କିଛି ଗୋଟାଏ ଫଡ଼୍ ଫଡ଼୍ ହେଲା । ଇଚ୍ଛା ହେଲା

ସମଗ୍ର ଦୁନିଆକୁ ଜାଳିଦେବି । ଏ ଦୁନିଆ ଯେତେବେଳେ ମୋତେ ଆଶ୍ରୟ ଦେଇପାରୁ ନାହିଁ, ସେତେବେଳେ ଏ ଦୁନିଆ ଥାଇ ମୋର ଲାଭ କଅଣ ?

ନିୟାଜ ମୋତେ ହଲେଇ ଦେଲା—"କଅଣ ହେଲା ? ଆରେ ଏଠି କେଉଁଠୁ ଆସିଛୁ ପରା । ଭାବୁଛୁ କଅଣ ?"

ମୁଁ ନିୟାଜକୁ ଲକ୍ଷ୍ୟକଲି—"ସତ କହ ନିୟାଜ ମୋତେ ଘର ମିଳିବ କି ନାହିଁ ?"

ମୋ ସ୍ୱରର ଆର୍ଦ୍ରତାକୁ ନିୟାଜ ସ୍ପଷ୍ଟ ଅନୁଭବ କଲା, କହିଲା—"ଘର କଥା ଛାଡ଼ । ତୋ ନିଜ କଥା କହ । ତୁ ଗାଁ ଛାଡ଼ି ସହରକୁ ଆସିଲୁ କାହିଁକି ? ତୋ ପରି ଭାବପ୍ରବଣ ବ୍ୟକ୍ତିମାନଙ୍କ ପାଇଁ ଏ ବିରାଟ ନିଷ୍ଠୁର ସହରରେ ସ୍ଥାନ ନାହିଁ । ଏ ସହରରେ ବିବାହ ଫୁଟପାଥରେ ହୁଏ, ହନିମୁନ୍ ସେଇଠି ଓ ପ୍ରସବ ମଧ୍ୟ ସେଇଠି ହୁଏ । ସମ୍ମାନ ଓ ସଭ୍ୟତାକୁ ଏଠି କେହି ପଚାରନ୍ତି ନାହିଁ । ତୁ ଯେମିତି ପ୍ରତ୍ୟେକଙ୍କ ପାଇଁ ଅପରିଚିତ । ପ୍ରତ୍ୟେକ ସେଇପରି ତୋ ପାଇଁ ଅପରିଚିତ । ଏଠି କେହି କାହାକୁ ଚିହ୍ନନ୍ତି ନାହିଁ । ଏଠି ଜଗ୍‌ଗା ସିଂହ ରହି ପାରିବ । ନିୟାଜ ଅହମ୍ମଦ ରହି ପାରିବ । ବିହାରୀ ଟୋକା ରାସ୍ତାରେ ମିଶ୍ରନନାର କୋଳରେ ଶୋଇ ପାରିବ । କିନ୍ତୁ ରାମଚନ୍ଦ୍ର, ତୁ ଏଠି ରହି ପାରିବୁ ନାହିଁ । ତୁ ଗାଁ ଛାଡ଼ି କାହିଁକି ଆସିଲୁ ? ତୁ ଗାଁ କାହିଁକି ଛାଡ଼ିଲୁ ? ଗାଁରେ ସୁନା ଫଳେ ପାଗଳ···ତୁ ସୁନା କାହିଁକି ଛାଡ଼ିଲୁ ?"

"ଗାଁ ନ ଛାଡ଼ି ଆଉ କଅଣ କରିଥାନ୍ତି ନିୟାଜ ? ପୈତୃକ ସମ୍ପତ୍ତି ଥିଲା ମାତ୍ର ଖଣ୍ଡେ ଗ୍ରେଟ ଘର । ଦୁଇ ଭାଇ ମଜୁରି କରି ଚଳୁ । ଭାଇଙ୍କର ବିବାହ ପରେ ମୁଁ ନିଜ ଆସ୍ଥାନ ଉଠେଇ ଆଣିଥିଲି ପିଣ୍ଡା ଉପରକୁ । ତା'ପରେ ମୋର ବିବାହ ଏବଂ ଘର ମଝିରେ ତାଟିର ବାଡ଼ । ଗ୍ରେଟ ଘରଟି ଦୁଇ ଭାଗରେ ବିଭକ୍ତ ହେଲା । ସେପଟେ ଭାଇ ଭାଉଜ । ଏପଟେ ମୁଁ ଓ ଯମୁନା । ସେପଟେ ଭାଇ ଭାଉଜ ମନ ଖୋଲି କଥାବାର୍ତ୍ତା ହୋଇ ପାରନ୍ତି ନାହିଁ । ଏପଟେ ମୁଁ ଓ ଯମୁନା ରାତିର ନିସ୍ତବ୍ଧ ପ୍ରହର ପର୍ଯ୍ୟନ୍ତ ନୀରବରେ ଅପେକ୍ଷା କରୁ । କାଳେ ଚୁଡ଼ିର ଝଣଝାଣ ଶବ୍ଦ ଓ ଆମ ଅସଂଯତ କଥା ଓ ଶବ୍ଦ ତାଙ୍କ ନିଦରେ ବ୍ୟାଘାତ ସୃଷ୍ଟି କରିବ ବୋଲି । ମନର ଇଚ୍ଛା ମନରେ ମରେ । ଶରୀରର ଉତ୍ତେଜନା ଶରୀରକୁ ଖାଇଯାଏ । ଦେଲକୁ ଦେଲ ଯନ୍ତ୍ରଣା ଅସହ୍ୟ ହେଲା । ତେଣୁ ଭାବିଲି ଏବଂ ନିଷ୍ପତ୍ତି କରି ନିଜର ଏଇ ଦୁଇବାହୁ ଉପରେ ଭରସା ରଖି ମୁଁ ଗାଁ ଛାଡ଼ିଲି, ସହରକୁ ଆସି ରୋଜଗାର କରି ଘର ଖଣ୍ଡେ ନେଇ ଯମୁନା ସହିତ ରହିବାପାଇଁ ।"

"ସହରରେ ଘର ମିଳିବ ରାମଚନ୍ଦ୍ର । କିନ୍ତୁ ସେମାନଙ୍କୁ, ଯେଉଁମାନେ ମଟର ଗାଡ଼ିରେ ଯାଆନ୍ତି । କଳା ବେପାର କରନ୍ତି । ବୁଦ୍ଧିଜୀବୀମାନଙ୍କର ମାନ ଇଜ୍ଜତକୁ ବଜାରରେ ପଣ୍ୟଦ୍ରବ୍ୟ କରି ବିକନ୍ତି । ଆମକୁ ନୁହେଁ । ଆମେ ତ ନିଜର ଏଇ ଦୁଇ ବାହୁ ଉପରେ ଭରସା କରି ଏତେଦିନ ଚଳି ଆସିଲୁ । କିନ୍ତୁ ଏ ସହର ଚାହେଁନା କେହି ନିଜ ଉପରେ ବିଶ୍ୱାସ ରଖୁ । ମଣିଷ ମଧ୍ୟର ଆତ୍ମବିଶ୍ୱାସକୁ ଏ ସହର ଛଡ଼େଇ ନିଏ ଏବଂ ଲଦିଦିଏ ଏକ ଅସଭ୍ୟ ସଭ୍ୟତା । ଏଠି ନିଷ୍ଠାପ୍ତ ହେଲେ ଚଳିବ ନାହିଁ ରାମଚନ୍ଦ୍ର । ଏଠି ତୋତେ ଘର ମିଳିବ ନାହିଁ ।"

"ହୋଟେଲ ମାଲିକ ଜଗ୍ଗା ସିଂହ ଆମ ନିକଟକୁ ଚାଲି ଆସିଲା । ନିୟାଜଠାରୁ ବିଡ଼ି ଖଣ୍ଡେ ନେଇ ନିଆଁ ଲଗାଇଲା । ମୋତେ ଅନେକ ସହାନୁଭୂତି ସ୍ୱରରେ କହିଲା, "ଓଃ...ରାମଚନ୍ଦ୍ର · ଘର ମିଳୁଥିଲେ ମୁଁ ନିଜ ସ୍ତ୍ରୀକୁ ନ ଆଣି ରାସ୍ତାର ଏଇ ଭିକାରୁଣୀମାନଙ୍କ କୋଳକୁ ନେଉଥାନ୍ତି । ତୁ ଭାବୁଛୁ ମୋତେ ଏ ସବୁ ଭଲ ଲାଗେ ? ନା...କେବେ· ନୁହେଁ । ତୁ ସଂଯମ ରକ୍ଷା କରୁଛୁ ତ ? କର...କେତେ ଦିନ କରିବୁ । ଦେଖିବା...ବର୍ଷେ.. ଦୁଇବର୍ଷ...ତିନିବର୍ଷ ତା'ପରେ, ତା'ପରେ ତୁ ପାଗଳ ହୋଇଯିବୁ ଏବଂ ସେତେବେଳେ ମୋଠାରୁ ଆହୁରି ଅଧିକା ହିଂସ୍ର ହୋଇଯିବୁ । ପେଟର ଭୋକ ଅପେକ୍ଷା ଦେହର ଭୋକ ଆହୁରି ଭୟଙ୍କର । ଘର ପାଇଁ ଚେଷ୍ଟା ନ କରି ବରଂ ତୁ ଗାଁକୁ ଫେରିଯା ।"

"ଗାଁକୁ ଯାଇ ମଧ୍ୟ କଅଣ କରିବି ?" ମୋ ଆଖିରେ ଲୁହ ଭରିଗଲା । ମଣିଷ ଅବଶ ବିବଶ ହୋଇ ପଡ଼ିଲେ କାନ୍ଦ ପକାଏ କାହିଁକି ଏବଂ କାନ୍ଦିଲା ପରେ ଏତେ ଶାନ୍ତି ଲାଗେ କାହିଁକି ? ମନଟା ଏତେ ହାଲୁକା ଲାଗେ କାହିଁକି ? ନିୟାଜ ସହାନୁଭୂତିରେ ମୋ ପିଠିରେ ହାତ ରଖି ପଚାରିଲା—"ତୁ କାନ୍ଦୁଛୁ ରାମ ?" ସହାନୁଭୂତି ପାଇଁ ବ୍ୟାକୁଳ ଥିବା ମୋର ପ୍ରାଣ ଅସ୍ଥିର ହୋଇ ଉଠିଲା । ତା' କାନ୍ଧରେ ମୁଣ୍ଡ ରଖି ବହେ କାନ୍ଦିଲି । ବ୍ୟଥିତ ହୃଦୟର ବ୍ୟଥା ବାହାରିଗଲା ପରେ, ଲୁହ ପୋଛି, ନାକ ପୋଛି, ପାଣି ପିଇ ପୋଷ୍ଟକାର୍ଡ଼ ଦୁଇଟି ପଢ଼ିଲି । ଗୋଟାଏ ଭାଇ ଲେଖିଥିଲେ ଯେ ଯମୁନା ତା' ବାପ ଘରକୁ ଚାଲିଯାଇଛି । ଅଉରଟି ଯମୁନା ଲେଖିଥିଲା ଯେ ମୋ ଭାଇ-ଭାଉଜଙ୍କ ଅତ୍ୟାଚାର ସହି ନ ପାରି ସେ ତା' ବାପ ଘରକୁ ଚାଲିଯାଇଛି ଏବଂ ଶୀଘ୍ର ଯାଇ ନେଇ ଆସିବା ପାଇଁ ବାରମ୍ବାର ବିନୀତ ଅନୁରୋଧ କରିଛି । ଚିଠି ପଢ଼ିସାରି ଟେବୁଲ ଉପରେ ରଖିଦେଲି । ନିୟାଜ ପଚାରିଲା । ତାକୁ ସବୁକଥା କହିଲି । ସେ ନୀରବ ରହିଲା । ଜଗ୍ଗା ସିଂହ କହିଲା—"ଗୋଟାଏ କଥା କହିବି ରାମ... ମାନିବୁ ?"

"କଅଣ କୁହ ସିଂହଜୀ ।"

"ଆଜି ମୋ ତରଫରୁ ତୁ ପିଇ · କଅଣ କହୁଛୁ ନସ୍ବାଜ ?"

ନସ୍ବାଜ ହସି ଉଠିଲା, "ବାଃ ! ସିଂହଜୀ ବାଃ !! ···ଏଇଟା ତ ବେଶ୍ ଭଲ କଥା । ମଦ ତ ସବୁ ଚନ୍ତାକୁ ନିମିଷକେ ଦୂର କରିଦେବ ।"

ମୁଁ ନସ୍ବାଜକୁ ଅନେଇଲି । ନସ୍ବାଜ ସତ କହୁଛି ତ । ତେବେ ମଦକୁ ସମସ୍ତେ ଖରାପ କାହିଁକି କୁହନ୍ତି ? ପଚାରିଲି, "ତୁ ସତ କହୁଛୁ ନସ୍ବାଜ···ମଦ ପିଇଲେ ମୁଁ ସବୁ ଭୁଲିଯିବି ?"

ଜଗ୍‌ଗା ସିଂହ ହସିଲା ହୋ ହୋ ହୋଇ । ନସ୍ବାଜ ମୁରୁକି ହସି କହିଲା, "ପିଇ ଭରି ଦେଖ ।"

କଣା ବହାଦୁର ଝୋକା ବୋତଲ ଆଣିଲା, ଗ୍ଲାସ ଆଣିଲା, ଚଣାଭଜା ଅଣିଲା, କଟା ପିଆଜ ଆଣିଲା । ରାତି ବୋଧହୁଏ ଅନେକ ହୋଇ ଯାଇଥିଲା । ରାସ୍ତାଟା ଅନ୍ଧାର ହୋଇ ଯାଇଥିଲା । ଅର୍ଦ୍ଧ ନିର୍ମିତ ଅଟ୍ଟାଳିକା ମଧ୍ୟରୁ କୁକୁରମାନେ ଭୁକୁଥିଲେ । ଏବଂ ରାସ୍ତା ଆରପଟ ବଡ଼ ବୋର୍ଡ଼ର ନିଅନ୍ ଲାଇଟଟା ଜଳୁଥିଲା ଲିଭୁଥିଲା—ଲିଭୁଥିଲା ଜଳୁଥିଲା, "ବିଦେଶ ଯାଆନ୍ତୁ···ଏୟାର ଇଣ୍ଡିଆ ।"

ମୁଁ ଭାବୁଥିଲି ଏପରି ଅନ୍ଧାର ରାତିରେ ଯମୁନା କଅଣ କରୁଥିବ ? ତା'ଓଠ ତ ଏ କେତେଦିନ ମଧ୍ୟରେ ଆହୁରି ଚିକ୍କଣ ହୋଇ ଯାଇଥିବ । ତା' ଶରୀରଟା··· ଆଃ ! ପଚିଶ ବର୍ଷ ଯୌବନର ପ୍ରଥମ ଯୁବତୀ ଥିଲା ସେ ମୋ ପାଇଁ । ମନଭରି ଯୌବନର ସ୍ୱାଦୁ ଚାଖିବା ପୂର୍ବରୁ ଏକ ଅନ୍ତରାଳ··· । ଗାଁ ଓ ସହର ।" ବିଦେଶ ଯାଆନ୍ତୁ···ଏୟାର ଇଣ୍ଡିଆ । ତା' ନାକ ଫୁଲର ପଥରଟା ଚକ୍‌ଚକ୍ କରୁଥିବ ଏବଂ ଆଖି ତୋଳାରେ ଥିବ ଲାଲ୍ ଗାର···ନିଃଶ୍ୱାସଟା ହୋଇ ଉଠିଥିବ ଉଷ୍ଣ··· ।

"ସି' ବେ କଅଣ ଭାବୁଛୁ ?" ନସ୍ବାଜ ମୋତେ ହଲାଇ ଦେଲା ।

ମୁଁ ଗ୍ଲାସ ଉଠାଇ ନେଲି । ଉତ୍କଟ ଗନ୍ଧ । ମନେହେଲା ପିଇ ହେବନାହିଁ । ମୋ ଆଖି ସାମ୍ନାରେ ସେ ଦୁଇଜଣ ଖାଲି ଗ୍ଲାସକୁ ଟେବୁଲ ଉପରେ ରଖି-ଦେଲେ । ନସ୍ବାଜ ମୋତେ ଗାଳିଦେଲା ପରି କହିଲା, "ଆବେ ଆଖି ବନ୍ଦ କରି ଏକା ନିଃଶ୍ୱାସକେ ପିଇ ଦେ ।" ଏବଂ ମୁଁ ପିଇଦେଲି ।

ଯମୁନା ମୋ ଆଗରେ ଆସି ଠିଆହେଲା । ହସି ହସି ପଚାରିଲା, "ଘର କାହିଁ । ଆମ ଘର କାହିଁ ? ମୋତେ ଛାଡ଼ି ସହର ଯାଇଥିଲ ପରା ଘର ପାଇଁ···କାହିଁ ସେ ଘର ?"

ନସ୍ୱାଜ ହଠାତ୍ ପାଟିକରି ଉଠିଲା—"ଖାଇବାକୁ ନ ମିଳିଲେ ଚଳିଯାଇ ହେବ । ପିଇବାକୁ ନ ମିଳିଲେ ମଧ୍ୟ ଚଳିଯାଇ ହେବ । କିନ୍ତୁ ମୁଣ୍ଡ ଗୁଞ୍ଜିବାକୁ ଖଣ୍ଡେ ଘର ନ ମିଳିଲେ…?"

ମୁଁ ବିରକ୍ତ ହେଲି । ଯମୁନା ଓ ମୋ ମଧ୍ୟରେ ହଠାତ୍ ଏ ନସ୍ୱାଜ, ଜଗ୍‌ଗା ସିଂହ ଓ ଘର ଆସିଲା କେଉଁଠୁ ? ପାଟିକଲି—"ଚୁପ୍‌କର…ଏସବୁ କଥା ବନ୍ଦ କର । କୁହ କେବଳ ଯମୁନା ବିଷୟରେ…କୁହ ତା' ପାଦର ପାଉଁଜି ବିଷୟରେ । କୁହ ତା' ପବିତ୍ରତା ବିଷୟରେ ।"

ଜଗ୍‌ଗା ସିଂହ ପ୍ରତିବାଦ କଲା—"ନା…କୁହ କୁଲବନ୍ତ କୌର ବିଷୟରେ ··।"

"କୁଲବନ୍ତ କୌର…।" ନସ୍ୱାଜ ଓ ମୁଁ ପ୍ରଶ୍ନକଲୁ—"ସେ କିଏ ?"

"ମୋ ପ୍ରେମିକା ।" ଜଗ୍‌ଗା ସିଂହ ଯେମିତି ଅତୀତର ଅନ୍ଧାର ମଧ୍ୟରେ ପଶି କୁଲବନ୍ତ କୌରକୁ ଖୋଜୁଥିଲା—"ତାକୁ ମୁଁ ଭଲ ପାଉଥିଲି ।"

"ତା'ପରେ ।" ନସ୍ୱାଜ ପ୍ରଶ୍ନକଲା ।

"ତାକୁ ମୁଁ ଏକ ଘର ଦେବାର ପ୍ରତିଶ୍ରୁତି ଦେଇଥିଲି । କିନ୍ତୁ ଦେଇ ପାରିଲି ନାହିଁ । ତେଣୁ ସେ ଅନ୍ୟର ହୋଇଗଲା । ସୁରଜିତ ସିଂହ, ଆମ ଗାଁର ଜମିଦାର ତାକୁ ଘର ଦେଲା । ଯାହା ମୁଁ ଦେଇ ପାରିଲି ନାହିଁ, ସୁରଜିତ ସିଂହ ତାକୁ ତାହା ଦେଲା ଏବଂ କୁଲବନ୍ତ ମୋତେ ଭୁଲିଗଲା । ନାରୀ ପୁରୁଷକୁ ଭୁଲିଗଲା । ପ୍ରେମର ପବିତ୍ରତାକୁ ଭୁଲିଗଲା । ଭବିଷ୍ୟତର ସ୍ୱପ୍ନକୁ ଭୁଲିଗଲା । ଏକାନ୍ତ କ୍ଷଣରେ ଆଖୁକ୍ଷେତର ପଛଆଡ଼େ ଦେଇଥିବା ସେ ଚୁମ୍ବନ ଓ ଆଲିଙ୍ଗନକୁ ଭୁଲିଗଲା । ହେଲେ ମୁଁ ତାକୁ ଭୁଲି ପାରିଲି ନାହିଁ । ଆଉ ଯାହାକୁ ବିବାହ କଲି, ତାକୁ ଭଲପାଇ ପାରିଲି ନାହିଁ । କାରଣ ସେ ମୋତେ ଘର ଦେଲା, ତାକୁ ମୁଁ ନୁହେଁ ।"

ମୁଁ ହସିଲି ଝୁବ୍ ଜୋରରେ । ସେମାନେ କଥା ବନ୍ଦ କରି ମୋତେ ପ୍ରଶ୍ନଭରା ଦୃଷ୍ଟିରେ ଚାହିଁଲେ । ମୁଁ ହସ ବନ୍ଦ କରି କହିଲି—"ତୁମେମାନେ କହୁଥିଲ ନା, ମଦ ପିଇଲେ ସବୁ ଚିନ୍ତା ଦୂର ହୋଇଯିବ । ସବୁ ଭୁଲି ହୋଇଯିବ । କିନ୍ତୁ ତୁମେମାନେ ମିଛ କହୁଥିଲ ।"

ହୋଟେଲରେ ଆମେ ତିନିଜଣ, ବିହାରୀ ଟୋକା ଓ ମିଶ୍ରଜନା ବ୍ୟତୀତ ଆଉ କେହି ନ ଥିଲେ । ମିଶ୍ରଜନା, ବିହାରୀ ଟୋକାକୁ ଲୋଲୁପ ଦୃଷ୍ଟିରେ

ଅନେଇ ରହିଥିଲି ଏବଂ ଆମେ ତିନିଜଣ ନୀରବ ହୋଇଯାଇ ସିଧା ଆଗପଟେ ନିଅନ ଲାଇଟ୍‌କୁ ଅନେଇଥିଲୁ ।

ନିସ୍ବାଜ ଆଖିରେ ହଠାତ୍ ଲୁହ ଭରିଗଲା । ସେ ଦୁଇ ପାପୁଲିରେ ଲୁହ ପୋଛି ମୋତେ ଓ ଜଗ୍‌ଗା ସିଂହକୁ ଅନେଇଲା । ଆଖିର ସେଇ ଲୁହ ମଧ୍ୟରେ ଯେପରି ତା'ର ସମସ୍ତ ଦମ୍ଭ ବୋହିଗଲା ପାଣିପରି ଏବଂ ସେ ଅତ୍ୟନ୍ତ ଦୁର୍ବଳ କଣ୍ଠରେ କହିଲା—"ମୁଁ କିନ୍ତୁ କାହାକୁ ଭଲ ପାଇପାରି ନାହିଁ । ଭାବିଥିଲି ଏକ ଶ୍ରେଷ୍ଠ ଘର ହେବ, ସେଥିରେ ମୁଁ ରହିବି ରହିବେ ମୋର ସନ୍ତାନ ଓ ତାଙ୍କର ମା' । କାମରୁ ଫେରିଲେ ନିଜର ଶ୍ରେଷ୍ଠ ପରିବାର ମଧ୍ୟରେ ନିଜର ସମସ୍ତ କ୍ଳାନ୍ତିକୁ ଭୁଲି ନିଶ୍ଚିନ୍ତରେ ଶୋଇପଡ଼ିବି । କିନ୍ତୁ ହେଲାନାହିଁ । କିଛି ହେଲାନାହିଁ । ମୁଁ ଚିରଦିନ ପାଇଁ ଅବିବାହିତ ରହିଯିବାକୁ ବାଧ୍ୟହେଲି ।"

"କିନ୍ତୁ କାହିଁକି ?" ମୁଁ ପ୍ରଶ୍ନକଲି ।

"ଘର । ଏକ ପବିତ୍ର ନାରୀ ଓ ଘର ମଧ୍ୟରେ ପ୍ରଭେଦ କିଛି ନାହିଁ । ଏକ ନାରୀ ପାଇବାକୁ ହେଲେ, ଏକ ଘର ଦରକାର । ନିଜ ଘର ।"

"ତୋର ତ ଘର ଅଛି ।" ଜଗ୍‌ଗା ସିଂହ କହିଲା ।

"ହଁ ଘର ଅଛି । ବାପା ମଲାବେଳେ ମୋତେ ଓ ମୋ ସାନ ଭଉଣୀକୁ ଜନ୍ମର ଉପହାର ସ୍ବରୂପ ଏକ ଶ୍ରେଷ୍ଠ ଘର ଦେଇ ଯାଇଥିଲା । ସେ ଥିଲା ମୋର ଓ ମୋ ଭଉଣୀର ସମ୍ପତ୍ତି । ଭାବିଥିଲି ଭଉଣୀକୁ ବାହା କରିଦେଇ ନିଜେ ବାହା ହେବି । କିନ୍ତୁ ମୋ ଭଉଣୀ ମଧ ଚିରଦିନ ପାଇଁ ଅବିବାହିତା ରହିଗଲା । ଆଉ ତା' ଆଗରେ ମୁଁ ବାହା ହୋଇଥାନ୍ତି କିପରି ? ଏକ ଶ୍ରେଷ୍ଠ ଘର ଭିତରେ ଏସବୁ କେମିତି ହୋଇଥାନ୍ତା ?"

"ତୋ ଭଉଣୀକୁ ବାହା କରାଇଲୁ ନାହିଁ କାହିଁକି ?" ମୁଁ ଉତ୍ତେଜିତ ହୋଇ ପଡ଼ିଲି ।

ନିସ୍ବାଜ ଦୀର୍ଘଶ୍ବାସ ତ୍ୟାଗ କଲା—"ସେ ଜଣକୁ ଭଲ ପାଉଥିଲା ।"

"ତୁ ତା' ପ୍ରେମ ପଥରେ ପ୍ରତିବନ୍ଧକ ନିଶ୍ଚୟ ସୃଷ୍ଟି କରିଥିବୁ ।" ଜଗ୍‌ଗା ସିଂହ ରାଗିଗଲା ।

"ନା···।" ନିସ୍ବାଜ ସ୍ବରରେ ଅସମ୍ଭବ କ୍ଳାନ୍ତି । ମୁଁ ଠିକ୍ ଅନୁଭବ କରି ପାରିଲି ।

"ତେବେ ?"

"ଯାହାକୁ ସେ ଭଲ ପାଉଥିଲା, ତା' ପାଖରେ ମଧ୍ୟ ଘର ନ ଥିଲା । ରଜନୀକୁ ଘର ଖୋଜିବାର ପ୍ରତିଶ୍ରୁତି ଦେଇ ସେ ଅନେକ ଦୂରକୁ ଚାଲି ଯାଇଛି ।"

"କୁଆଡ଼େ ?" ଜଗ୍ଗା ସିଂହ କଣ୍ଠରେ କୋହ ।

"ଜାଣେନା । ବର୍ଷେ ହେଲା ଯାଇଛି । ଆମ ଯେମିତି ଗାଁରୁ ଘର ଖୋଜି ସହରକୁ ଆସିଛୁ । ଠିକ୍ ସେମିତି ସେ ମଧ୍ୟ ଦୂରକୁ ଯାଇଛି । ଏ ସହରରୁ ବଡ଼ ସହରକୁ । କିନ୍ତୁ ଭୁଲିଯାଇଛି ଯେ ଆଗକୁ ଆଗକୁ··ଗାଁରୁ ସହରକୁ ··ସହରରୁ ବଡ଼ ସହରକୁ ଗଲେ ମଣିଷ ଭିଡ଼ ଭିତରେ ନିଜକୁ ହଜାଇ ବସେ, ଅଣନିଃଶ୍ୱାସୀ ହୋଇପଡ଼ି ସେଇଠି ମରିଯାଏ । ଆଉ କେବେ ଫେରି ପାରେନା । ରଜନୀ ଏବେ ମଧ୍ୟ ତା' ହୃଦୟରେ ଏକ ଘରର ଆଶା ନେଇ ବଞ୍ଚିଛି । ଯମୁନାର ହୃଦୟରେ ମଧ୍ୟ ଏକ ଘରର କାମନା···ଆମ ସମସ୍ତଙ୍କ ହୃଦୟରେ ଏକ ଘର···ଗ୍ରେଟ ଏକ ଘରର ଆଶା । ସେଇ ଆଶାରେ ହିଁ ଆମେ ବଞ୍ଚିଛେଁ ମଦ ପିଉଛେଁ···।" ନିୟାଜ କାନ୍ଦିବା ଆରମ୍ଭ କରି ଦେଇଥିଲା ।

ମୁଁ ଭାବୁଥିଲି, ହୁଏତ କେଉଁଦିନ ଯମୁନା ବା ରଜନୀ ଘର ଖୋଜି ଖୋଜି ଏଇ ଅର୍ଦ୍ଧନିର୍ମିତ ଅଟ୍ଟାଳିକା ନିକଟରେ ପହଞ୍ଚିବେ ଏବଂ ରାତିର ଅନ୍ଧାର ମଧ୍ୟରେ କାହାକୁ ଚିହ୍ନି ନ ପାରି, ଭୋକିଲା କୁକୁର ପରି ତାଙ୍କୁ ଘରର ପ୍ରଲୋଭନ ଦେଖାଇ · ପ୍ରତିଶ୍ରୁତି ଦେଇ, ଏକ ଅନ୍ଧାରୁଆ କୋଣକୁ ଟାଣିନେଇ, ଜଗ୍ଗା ସିଂହ ରୂପରେ ଖୋଜିବୁ କୌରବ୍ୟ, ରାମଚନ୍ଦ୍ର ରୂପରେ ଖୋଜିବୁ ଯମୁନାକୁ ଏବଂ ନିୟାଜ ରୂପରେ ଖୋଜିବୁ କୌଣସି ଏକ ନାରୀକୁ, ଯିଏ ତା' ସନ୍ତାନର ଜନନୀ ହୋଇ ପାରିବ ।

ଜଗ୍ଗା ସିଂହ, ନିୟାଜ, ରାମଚନ୍ଦ୍ର, ବହାଦୁର ଥୋକା, ମିସ୍ତ୍ରୀନନା··· ଇତ୍ୟାଦିଙ୍କ ପରେ ହୁଏତ ସକାଳୁ ମ୍ୟୁନିସିପାଲିଟିର ଠେଲା ଗାଡ଼ିରେ ଯାଉଥିବା ଯୁବତୀର ଶବକୁ ଚିହ୍ନିପାରି ଆମେ ଆଉ କେହି କାହାକୁ ଚିହ୍ନି ପାରିବୁ ନାହିଁ । ଅଥବା ଚିହ୍ନି ମଧ୍ୟ ନ ଚିହ୍ନିବାର ଛଳନା କରିବୁ । ଏପରିକି ନିଜ ଅନ୍ତରାତ୍ମାକୁ ମଧ୍ୟ ଚିହ୍ନି ପାରିବୁ ନାହିଁ ।

ହୁଏତ ସେତେବେଳକୁ ସାମ୍ନା ଅଟ୍ଟାଳିକାଟି ସମ୍ପୂର୍ଣ୍ଣ ହୋଇ ଯାଇଥିବ ।



('ଆସନ୍ତାକାଲି' ଫେବ୍ରୁଆରୀ, ୧୯୭୨)

# ଫାଙ୍କ

ଟ୍ରେନ୍ ନିର୍ଦ୍ଧାରିତ ସମୟର ସାମାନ୍ୟ ବିଳମ୍ବରେ ପ୍ଲାଟଫର୍ମରେ ପହଞ୍ଚିଥିଲି । ପ୍ଲାଟଫର୍ମରେ ପହଞ୍ଚିବାର କିଛିକ୍ଷଣ ପୂର୍ବରୁ ମୁଁ ତା' ବିଷୟ ଚିନ୍ତା କରୁଥିଲି । ତା' ବିଷୟ ଚିନ୍ତାକଲା ସମୟରେ ଆପେ ଆପେ ମୋ ନିଜ କଥା ମନେ ପଡ଼ିଯାଏ ଏବଂ ନିଜ କଥା ଚିନ୍ତାକଲା ସମୟରେ ତା' କଥା ମନେ ପଡ଼ିଯାଏ । ସତେ ଯେମିତି ତା' କଥା ମାନେ ମୋ ନିଜ କଥା ଏବଂ ମୋ ନିଜ କଥା ମାନେ ତା' କଥା । ପ୍ରତ୍ୟେକଥର ଏହିପରି ହୁଏ । ପରିଚିତ ଷ୍ଟେସନରେ ଟ୍ରେନ୍ ପହଞ୍ଚିଲା ସମୟରେ ମୋ ମନ ଭିତରେ ହଠାତ୍ ସେ ନିଜର ସମସ୍ତ ଭାବନା ସହ ଆନ୍ଦୋଳିତ ହୋଇଉଠେ ।

ସାତ ବର୍ଷ । ହଁ ! ଦୀର୍ଘ ସାତ ବର୍ଷ ଧରି ଏଇ ଜୀମରେ ଘଟଣାମାନ ଘଟିତ ହୋଇ ଚାଲିଛି ଏବଂ ମୁଁ ପ୍ରତ୍ୟେକଥର ଭାବିଛି, ଏଇଥର ସବୁ କଥାର ଏକ ମୀମାଂସା କରିଦେଇ ଯିବି; କିନ୍ତୁ କୌଣସିଥର କୌଣସି ପ୍ରକାରର ନିଷ୍ପତ୍ତି କରିପାରି ନାହିଁ । ସାତ ବର୍ଷ ତଳେ ଯେମିତି ଥିଲା ପରିସ୍ଥିତି, ଆଜି ବି ଠିକ୍ ସେଇମିତି ଅଛି, କିଛି ଟିକେ ବି ପରିବର୍ତ୍ତନ ହୋଇନାହିଁ, କେବଳ ନିଜ ଚିନ୍ତାଧାରା ଓ ଭାବନା ବ୍ୟତୀତ ।

ଗତଥର ହଠାତ୍ ଚାଲି ଯାଇଥିଲି ତାକୁ କିଛି ନ ଜଣାଇ । ଅବଶ୍ୟ ଘରେ ପହଞ୍ଚି ମୁଁ ନିଜ କୃତକର୍ମ ପାଇଁ ଯଥେଷ୍ଟ ଅନୁତାପ କରିଥିଲି । କ୍ଷମା ପ୍ରାର୍ଥନା କରି ତା' ନିକଟକୁ ଚିଠି ମଧ୍ୟ ଦେଇଥିଲି; କିନ୍ତୁ କୌଣସି ଚିଠିରେ ସେ ଉକ୍ତ ଘଟଣା ପାଇଁ ଦୁଃଖ ପ୍ରକାଶ କରି ନ ଥିଲା କିମ୍ବା ଉକ୍ତ ଘଟଣାକୁ ଗୁରୁତ୍ୱ ଦେଇ ନ ଥିଲା । ମୋତେ ଲାଗିଥିଲା ଯେମିତି ସେ ଧୀରେ ଧୀରେ ଭାବନା ଶୂନ୍ୟ ହୋଇ ପଡ଼ୁଛି ।

ଗତଥର ଆସିଥିଲି ଏକ 'ଇଣ୍ଟରଭ୍ୟୁ' ଦେବାପାଇଁ । ମନରେ ଯଥେଷ୍ଟ ଆଶା ଥିଲା । ଅନେକ ଅନିଶ୍ଚିତ ସମ୍ଭାବନାକୁ ନେଇ ଏକ ପାର୍କରେ ତା' ସହିତ ନିଜ ଭବିଷ୍ୟତ ପାଇଁ ଯେଥର ଯଥେଷ୍ଟ କଳ୍ପନା କରିଥିଲୁ, ଯେମିତି ଗତ ସାତ ବର୍ଷ ହେଲି କରି ଆସିଛୁ । ସେ ଯଥେଷ୍ଟ ଉତ୍ସାହିତ ଥିଲା । କିନ୍ତୁ ପୁନର୍ବାର ସେଇ ଅସଫଳତା । ମୁଁ ତାକୁ ନିଜ ଅସଫଳତା ବିଷୟ ଲେଖି ନ ଥିଲେ ମଧ୍ୟ ସେ ସବୁକଥା ଜାଣି ପାରିଥିଲା ଆପେ ଆପେ, ଯେମିତି ସବୁଥର ଜାଣିପାରେ ।

ଟ୍ରେନ୍ ପ୍ଲାଟଫର୍ମରେ ଅଟକିଲା । ମୁଁ ନୀରବରେ ନିଜ ସୁଟକେଶଟି ଧରି ଓହ୍ଲାଇ ଆସିଲି । ଘରୁ ତା' ନିକଟକୁ ଆଜି ଏଇ ଟ୍ରେନରେ ପହଞ୍ଚିବି ବୋଲି ଚିଠି ଦେଇଥିଲି । ମୋର ଦୃଢ଼ବିଶ୍ୱାସ ଥିଲା ସେ ଆସିବ, ପ୍ରତିଥର ଆସିଲା ପରି ସେଇ ନୀଳ ଶାଢ଼ୀ ପିନ୍ଧି ଯାହା ମୋତେ ଖୁବ୍ ଭଲଲାଗେ । ମୁଁ ତା' ପାଇଁ ପ୍ଲାଟଫର୍ମର ଚତୁର୍ଦ୍ଦିଗରେ ବୁଲି ବୁଲି ନିରୀକ୍ଷଣ କଲି; କିନ୍ତୁ ସେ ନ ଥିଲା । ମୁଁ ମନେ ମନେ ଦୁଃଖକଲି । ଭାବିଲି, ହୁଏତ ମୋ ଚିଠି ପାଇ ନ ଥିବ ।

ଏ ସହରର ପ୍ରତ୍ୟେକ ବସ୍ତୁ ମୋ ପାଇଁ ଅତି ପରିଚିତ । ମୁଁ ଏଠି ବଢ଼ିଛି, ପଢ଼ିଛି ଏବଂ ଜୀବନର ପ୍ରତ୍ୟେକ ମଧୁମୟ କ୍ଷଣକୁ ଏଇ ସହରର ଗଳିକନ୍ଦିରେ ଉପଭୋଗ କରିଛି । ବିଶ୍ୱବିଦ୍ୟାଳୟ ଛାଡ଼ିବା ପରେ ମୁଁ ଯଦିଓ ଫେରି ଯାଇଛି ନିଜ କ୍ଷୁଦ୍ର ସହରକୁ, ତଥାପି ମୋ ଜୀବନର ସମସ୍ତ ଅମୂଲ୍ୟ ସ୍ମୃତିକୁ ଛାଡ଼ିଯାଇଛି ଏଇ ସହରର ବାୟୁମଣ୍ଡଳରେ ଏବଂ ଏକ କ୍ଷୁଦ୍ର ଅପରିଷ୍କାର ଗଳିର ଶେଷ ମୁଣ୍ଡରେ ଥିବା ଏକ ଛୋଟ ଚାଳଘର ଭିତରେ, ଯେଉଁଠି ସେ ରହେ ।

ରିକ୍ସା ଚାଲିଥିଲା ମୋର ପରିଚିତ ହୋଟେଲ ଅଭିମୁଖେ । ମୁଁ ମନେ ମନେ ଆନ୍ଦୋଳିତ ହୋଇ ଉଠିଥିଲି । ସେ ତାହାହେଲେ ଆସିଲା ନାହିଁ । ଚିଠି ମୁଁ ପଠାଇଥିଲି ସାତ ଦିନ ତଳେ । ତେଣୁ ତା' ନ ପାଇବାର ପ୍ରଶ୍ନ ଉଠି ନ ପାରେ । ତାହାହେଲେ···? ମୁଁ ମନେ ମନେ ଆଶଙ୍କିତ ହୋଇ ଉଠିଲି ।

ଏଥର ସହର ବେଶ୍ ବଦଳି ଯାଇଛି । ପ୍ରତିଥର ବଦଳେ । ସାତ ବର୍ଷ ମଧ୍ୟରେ ଅନେକଥର ସହରର ପରିବର୍ତ୍ତନକୁ ମୁଁ ତଳେ ତଳେ ଅନୁଭବ କରିଛି, ଠିକ୍ ଯେମିତି ନିଜ ଅନ୍ତରର ପରିବର୍ତ୍ତନକୁ, ନିଜ ପାରିପାର୍ଶ୍ୱିକ ଅବସ୍ଥାର ପରିବର୍ତ୍ତନକୁ, ତା'ର ପରିବର୍ତ୍ତନକୁ ମୁଁ ତଳେ ତଳେ ଅନୁଭବ କରିଛି । ଗତଥର ମୁଁ ଅନୁଭବ କରିଥିଲି, ଯେମିତି ସହରଟା ପ୍ରତ୍ୟେକଙ୍କ ପାଇଁ ଖିଟଖିଟ ରୁକ୍ଷ ହୋଇ ଯାଉଛି; ଏବଂ ସେ ଯେମିତି ବୁଢ଼ୀ ହୋଇ ଯାଉଛି ।

ମୁଁ ତାଙ୍କୁ ପରିହାସରେ ଯେଉଁଥର କହିଥିଲି । ସେ ହସିଥିଲା । କହିଥିଲା—"ଏଥିରେ ମୋର ଦୋଷ କଅଣ ? ତମେ ଶୀଘ୍ର ବ୍ୟବସ୍ଥା କରନ୍ତୁ ।"

ସେ ଠିକ୍ କହିଥିଲା । ତେଣୁ ଏଥର ମୁଁ ଆସିଥିଲି ସବୁ କଥାର ମୀମାଂସା ପାଇଁ । ଏକ ବ୍ୟବସ୍ଥା ପାଇଁ ଏବଂ ତାଙ୍କୁ ଏକ 'ସରପ୍ରାଇଜ' ଦେବାପାଇଁ ।

କିନ୍ତୁ ସେ ଷ୍ଟେସନକୁ ଆସିଲା ନାହିଁ କାହିଁକି ?

ଗତଥର ଅଫିସରୁ ଛୁଟି ନେଇ ଯଥେଷ୍ଟ ପୂର୍ବରୁ ଆସି ମୋତେ ଅପେକ୍ଷା କରିଥିଲା । ସେଥର ଟ୍ରେନ ତିନିଘଣ୍ଟା ଲେଟ୍ ଥିଲା । ତଥାପି ସେ ଅପେକ୍ଷା କରିଥିଲା । ହେଲେ ଏଥର ! ମୁଁ ପୁନର୍ବାର ସନ୍ଦେହରେ ବୁଡ଼ିଗଲି ।

ରିକ୍ସା ଚାଲିଥିଲା ହୋଟେଲ ଅଭିମୁଖେ । ଏବଂ ମୁଁ ସହରର ପ୍ରତ୍ୟେକ କାନ୍ଥରେ ଲେଖା ହୋଇଥିବା ବିଭିନ୍ନ ରାଜନୈତିକ ପାର୍ଟିର ଫମ୍ପା ସ୍ଲୋଗାନକୁ ପଢ଼ିବାକୁ ଚେଷ୍ଟା କରୁଥିଲି । ସହରର ପ୍ରତ୍ୟେକ ଲୋକଙ୍କ ମୁଖରେ ମୁଁ ହତାଶାର ଛବି ଦେଖି ପାରୁଥିଲି ସ୍ପଷ୍ଟ ରୂପେ । ପ୍ରତ୍ୟେକଙ୍କ ଆଖି ଝୁଲି ପଡ଼ିଥିଲା ତନ୍ଦ୍ରାରେ ଏବଂ ସେମାନେ କେହି ହସୁ ନ ଥିଲେ । ମୋତେ ଲାଗିଲା ସେମାନେ ଯେପରି ହସ ଭୁଲି ଗଲେଣି ।

ପୁନର୍ବାର ସେଇ ପରିଚିତ ହୋଟେଲ, ଯେଉଁଠି ଗତ ପାଞ୍ଚ ବର୍ଷ ମଧ୍ୟରେ ପ୍ରତ୍ୟେକ ଅନ୍ତରାଳ ପରେ ମୁଁ ଅବସ୍ଥାନ କରେ ସାମାନ୍ୟ କେତୋଟି ଦିନ ପାଇଁ । ହୋଟେଲ ମ୍ୟାନେଜର ମୋର ପରିଚିତ । ରିକ୍ସାରୁ ଓହ୍ଲାଇବା ସଙ୍ଗେ ସଙ୍ଗେ ସେ ମୋତେ ଅଭ୍ୟର୍ଥନା ଜଣାଇଲା ।

"ଏଥର ଅନେକ ଦିନ ପରେ ଆସିଲେ । ଆଉ ସବୁ ଖବର କେମିତି ?"

ମୁଁ ମୁଣ୍ଡ ହଲାଇଲି—"ସବୁ ଭଲ ।"

ସେ ରେଜିଷ୍ଟାର ଖୋଲି ମୋ ସାମ୍ନାରେ ରଖି କହିଲା—"ଆପଣ ଖୁବ୍ ଲକି । ଗତଥର ଯେଉଁ ରୁମ୍‌ରେ ଥିଲେ, ତାହା ଭାଗ୍ୟକୁ ଏଥର ମଧ୍ୟ ଆପଣଙ୍କ ପାଇଁ ଖାଲିଅଛି । କେତେଦିନ ରହିବେ ?"

"କିଛି ଠିକ୍ ନାହିଁ । ଆଜି ଯାଇପାରେ ତିନିଦିନ ପରେ ମଧ୍ୟ ଯାଇପାରେ ।" ନିଜ ନାଁ ଏବଂ ଠିକଣା ରେଜିଷ୍ଟାରରେ ଲେଖି ମୁଁ ତାଙ୍କୁ ଲକ୍ଷ୍ୟ କଲି ।

ହୋଟେଲ ବୟ୍ ମୋ ସୁଟ୍‌କେଶଟିକୁ ଧରି ଆଗେ ଆଗେ ଚାଲିଲା ଏବଂ ମୁଁ ତାକୁ ଅନୁସରଣ କଲି । ମନେ ମନେ ମୁଁ ଅସ୍ଥିର ହୋଇ ଉଠିଥିଲି । ତା'ର ଏ ପ୍ରକାର ବ୍ୟବହାର ମୋତେ ବ୍ୟଥିତ କରି ପକାଇଥିଲା । ଅନେକ ଆଶା ନେଇ ମୁଁ ଏଠାକୁ ଆସିଥିଲି; କିନ୍ତୁ ପହଞ୍ଚିବାର ପ୍ରଥମ କ୍ଷଣରୁ ହିଁ ମୁଁ ଅଶାନ୍ତ ହୋଇ ଉଠିଥିଲି ।

ବୟ୍ ଦ୍ୱାର ଖୋଲିଦେଇ ଚାଲିଗଲା । ମୁଁ ଭିତରେ ପ୍ରବେଶ କଲି । ଆଃ ! ଏଇଟା ସେଇ ପରିଚିତ କକ୍ଷ । ଗତଥର ଏଇ କକ୍ଷରେ ଆମେ ଅନେକ ଅନ୍ତରଙ୍ଗ ଆବେମ ମୁହୂର୍ତ୍ତମାନ ଅତିବାହିତ କରିଥିଲୁ । ପ୍ରତ୍ୟେକଥର ପରି ସେଥର ମଧ୍ୟ ଆମେ ହସିଥିଲୁ, ଅଭିମାନ କରିଥିଲୁ ଏବଂ ଭବିଷ୍ୟତ ପାଇଁ କଳ୍ପନା ମଧ୍ୟ କରିଥିଲୁ । ଯେମିତି ଗତ ସାତ ବର୍ଷ ଧରି କରି ଆସୁଛୁ । ଅନେକ ଫମ୍ପା କଳ୍ପନା ମଧ୍ୟରେ ଆଜିଯାଏ ଆମେ ବଞ୍ଚି ଆସିଛୁଁ । ଯଦିଓ ଅନେକ ପୂର୍ବରୁ ସାତ ବର୍ଷ ତଳେ ମୁଁ ବା ସେ, ଦୁହେଁ ଜାଣି ପାରିଥିଲୁ ଯେ ଆମେ କେବଳ ନିଜକୁ ସାନ୍ତ୍ୱନା ଦେବାପାଇଁ ଏ ପ୍ରକାର କଳ୍ପନା କରିଚାଲିଛୁଁ । ତଥାପି କେହି କେବେ ନିଷ୍ଠୁର ଭାବେ ସତ୍ୟକୁ ପରିପ୍ରକାଶ କରି ପାରୁନାହୁଁ ଆଜିଯାଏଁ । ମୁଁ ଦୀର୍ଘଶ୍ୱାସ ତ୍ୟାଗକଲି ।

ଯାତ୍ରାଜନିତ କ୍ଳାନ୍ତିକୁ ଏକ ସୁନ୍ଦର ସ୍ନାନ ପରେ ଦୂରକରି ତା' ନିକଟକୁ ଯିବାର ନିଷ୍ପତ୍ତି କରି ଯେତେବେଳେ ମୁଁ ଯୋତା ଖୋଲି ପୋଷାକ ପରିବର୍ତ୍ତନ କରୁଥିଲି, ସେତେବେଳେ ହଠାତ୍ ଦ୍ୱାରରେ ଏକ ପରିଚିତ 'ନକ୍' ଶୁଣି ସେଇ ମୁହୂର୍ତ୍ତରେ ପୁଲକିତ ହୋଇ, ଦ୍ୱାର ଖୋଲି ତାକୁ ଦେଖିଲି, ଯିଏ ସାତ ବର୍ଷ ଧରି ମୋ ପ୍ରତି ବିଶ୍ୱସ୍ତ ରହି ଆସିଛି, ମୋତେ ପ୍ରତୀକ୍ଷା କରି ରହିଛି ।

ମୋର ମନ ପସନ୍ଦ ନୀଳ ଶାଢ଼ୀ ପିନ୍ଧି ସେ ଠିଆ ହୋଇଥିଲା ଦ୍ୱାରବନ୍ଧରେ । ଅଧରରେ ଲାଗି ରହିଥିଲା ଏକ ସ୍ମିତ ହାସ୍ୟରେଖା । ବ୍ୟସ୍ତତାର ସ୍ୱେଦବିନ୍ଦୁ ତା' ନାସିକା ଓ ନାସିକା ତଳେ ଫୁଟି ଉଠୁଥାଏ ବିନ୍ଦୁ ବିନ୍ଦୁ ହୋଇ । ସେ ମୋତେ ଦେଖି ହସିଲା । ମୁଁ ତାକୁ ଦେଖି ଆନନ୍ଦିତ ହୋଇ ଉଠିଲି । ସେ ନିଜ ମୁହଁରୁ ଝାଳ ପୋଛି ମୋତେ ଅନେଇଲା ।

"ଷ୍ଟେସନ ଗଲନାହିଁ···ମୁଁ ତମକୁ ଅନେକ ଖୋଜିଲି ।" ମୁଁ ତାକୁ ଲକ୍ଷ୍ୟକଲି ଏବଂ ମନେ ମନେ ହିସାବ କଲି । ଦୀର୍ଘ ଛଅ ମାସ ପରେ ତାକୁ ମୁଁ ଦେଖୁଛି କାହିଁ ଟିକେ ବି ତ ପରିବର୍ତ୍ତନ ନାହିଁ । ସାମାନ୍ୟ ଶୁଖିଲା ଓ ଭାବବିହ୍ୱଳ ଯାହା ହୋଇ ପଡ଼ିଛି ତା' ମୁହଁ । ନଚେତ୍ ଆଉ ତ କିଛି ପରିଲକ୍ଷଣୀୟ

ପରିବର୍ତ୍ତିତ ଦୃଷ୍ଟିଗୋଚର ହେଉନାହିଁ । ମଥାରେ ସେଇ କଳା କୁଙ୍କୁମ ବିନ୍ଦୁ । ବାଁ ହାତରେ ଷ୍ଟେପ୍ସାର ଓ୍ୱାଚ୍ ଏବଂ ଡାହାଣ ହାତରେ ପଟେ ସୁନାକାଚ । ଠିକ୍ କଲେଜରେ ପଢ଼ୁଥିବା ତରୁଣୀ ପରି । କେବଳ ବୟସ ଯାହା କିଛିଟା ପ୍ରଭାବ ଛାଡ଼ିଯାଇଛି ମୁହଁରେ ।

"ଷ୍ଟେସନରେ ପହଞ୍ଚିଲାବେଳକୁ ଟ୍ରେନ ଆସି ସାରିଥିଲା ଏବଂ ତମେ ପ୍ଲାଟଫର୍ମ ଛାଡ଼ି ସାରିଥିଲ । ମୁଁ ଭାବିଲି ତମେ ଏଇ ହୋଟେଲକୁ ନିଶ୍ଚୟ ଆସିଥିବ । ତେଣୁ ସିଧା ଷ୍ଟେସନରୁ ହୋଟେଲ ।" ସେ ମୋ ଆଖିରେ ଆଖି ମିଳାଇ ଉତ୍ତର ଦେଲା । ତା' ଆଖିରେ ମୁଁ ଦେଖିଲି ଏକ ଶୂନ୍ୟତା, ଯାହା ମୁଁ କେବେ ଦେଖି ନ ଥିଲି । ଯେମିତି ସେ ଭାଙ୍ଗି ପଡ଼ିଛି । ପରିସ୍ଥିତି ସମ୍ମୁଖରେ ମଥାପାତି ପରାଜୟ ସ୍ୱୀକାର କରି ନେଇଛି । ମୁଁ ଆଶ୍ଚର୍ଯ୍ୟ ହେଲି ।

ସେ ଖଟ ଉପରେ ବସିପଡ଼ିଲା । ଅଫିସରୁ ଛୁଟି ନେଇ ଆସୁ ଆସୁ ଟିକେ ଡେରି ହୋଇଗଲା ।

"ମୁଁ ତମ ଘରକୁ ଯିବି ଭାବିଥିଲି ।" ମୁଁ ତା' ନିକଟରେ ବସିପଡ଼ି କହିଲି ।

ସେ ଏକ ଦୀର୍ଘନିଃଶ୍ୱାସ ତ୍ୟାଗକଲା—"ନ ଯାଇ ଭଲ କରିଛ । ହୁଏତ ମୋ ପରିସ୍ଥିତି ଲକ୍ଷ୍ୟକରି ତମେ ମୋତେ ଦୟା କରିଥାନ୍ତ ଏବଂ ମୁଁ ଦୟାକୁ ଘୃଣାକରେ । ଅନ୍ୟର ଦୟାର ପାତ୍ର ହେବାପାଇଁ ଘୃଣାକରେ ।" ସେ ଉତ୍ତେଜିତ ହୋଇ ପଡ଼ିଲା ।

"ନିତା, ମୁଁ ମଧ୍ୟ ସେଇ ଅନ୍ୟ ଗୋଷ୍ଠୀର ଅନ୍ତର୍ଭୁକ୍ତ ତାହାହେଲେ ?" ମୁଁ ପ୍ରଶ୍ନକଲି । ସେ ମୋ ହାତ ପାପୁଲି ଚିପିଧରି କୋହଭରା କଣ୍ଠରେ କହିଲା— "ମୋତେ ଭୁଲ୍ ବୁଝନାହିଁ । ମୋ ମାନସିକ ଅବସ୍ଥା ଠିକ୍ ନାହିଁ । କଅଣ କେତେବେଳେ କହି ଦେଉଛି ତା' ମୁଁ ନିଜେ ବି ଜାଣିପାରୁ ନାହିଁ ।" ହଠାତ୍ ସେ ଅଟକିଗଲା । ମତେ ସଜଳ ଚକ୍ଷୁରେ ଚାହିଁଲା । ମୁଁ ଲକ୍ଷ୍ୟ କରିଥିଲି, ତା' ତଳ ଓଠ କମ୍ପି ଉଠିଲା ଏବଂ ସେ ନିତାନ୍ତ ଅସହାୟ ଓ ଅସଂଯତ ହୋଇ ମୋ କାନ୍ଧରେ ମୁଣ୍ଡ ଥାପି କାନ୍ଦି ଉଠିଲା—"ତମେ ମୋତେ ଛାଡ଼ି ଏତେ ଦୂରକୁ କାହିଁକି ଚାଲିଯାଉଛ ? ଏକାକୀ ମୁଁ ପାରୁନି । ଧୀରେ ଧୀରେ ମୁଁ ଦୁର୍ବଳ ହୋଇ ଯାଉଛି ପ୍ରଭାସ । ମୋତେ ସାହାଯ୍ୟ କର ।"

ମୁଁ ତାକୁ ସାନ୍ତ୍ୱନା ଦେବାପାଇଁ ଚେଷ୍ଟାକଲି । ସେ ସେହିପରି କାନ୍ଦୁଥାଏ । ଧୀରେ ଧୀରେ ସେ ସଂଯତ ହୋଇ ଉଠିଲା । ବାଥ୍‌ରୁମ୍‌ରେ ମୁହଁ

ଧୋଇ, ମୋତେ ଗୁହିଁ ହସିଲ—"ତମେ ଆସି ମୋତେ ସବୁଥର ଦୁର୍ବଳ କରି ପକାଅ ।"

"ପୁରୁଷ ସମ୍ମୁଖରେ ନାରୀର ଦୁର୍ବଳ ହେବା ପ୍ରକୃତିର ଧର୍ମ ଏବଂ ମୋ ମତରେ ଉଚିତ ମଧ୍ୟ ।" ମୁଁ କହିଲି ।

× × ×

ପାର୍କଟି ଶୂନ୍‌ଶାନ ଥିଲ । ଅପରାହ୍ଣରେ ସାଧାରଣତଃ ପାର୍କଗୁଡ଼ା ଶୂନ୍‌ଶାନ ଥାଏ । ଆମେ ଏକ ଦେବଦାରୁ ଗଛତଳେ ବସିଥିଲୁ । ସେ ମୋ ବାହୁରେ ମୁଣ୍ଡ ଥୋଇ ମୋତେ ଗୁହିଁଥିଲ ଏବଂ ମୁଁ ତା'ମୁଣ୍ଡର ଅଳକ କେଶରାଶିକୁ ସଜାଡ଼ି ଦେଉଥିଲି । ମନ୍ଦ ସମୀର ଚତୁର୍ଦ୍ଦିଗରୁ ଫୁଲମାନଙ୍କର ସୁଗନ୍ଧ ଆଣି ଆମ ନିକଟରେ ପହଞ୍ଚାଇ ଦେଉଥିଲ । ବାତାବରଣର ପ୍ରଭାବରେ ମୁଁ ଭାବପ୍ରବଣ ହୋଇ ଉଠୁଥିଲି ।

"କଲେଜ କଥା ମନେଅଛି ?" ସେ ଧୀର ସ୍ୱରରେ ପ୍ରଶ୍ନ କଲ ।

"ସମସ୍ତ କଥା ମନେଅଛି । ମୁଁ ହସିଲି ।" "କେବଳ କଲେଜ କାହିଁକି ? ଆରମ୍ଭ ଓ ଆଜିଯାଏଁ ଗଢ଼ କରିଥିବା ଜୀବନର ପ୍ରତ୍ୟେକ କ୍ଷଣ ସହିତ ତମର ସ୍ମୃତିକୁ ମୁଁ କେବେ ଭୁଲି ପାରିବ, ତୁମେ ଭାବୁଛ ?"

"କେତେ ସ୍ୱପ୍ନ ଦେଖିଥିଲେ · କେତେ କଳ୍ପନା କରିଥିଲେ···।" ତା' ସ୍ୱରରେ ହତାଶାର ରୂପରେଖା ସ୍ପଷ୍ଟ ହୋଇ ଉଠିଲ । ମୁଁ ମନେ ମନେ ଆଘାତ ପାଇଲି । ପ୍ରକୃତରେ ଏଇ ନାରୀଟିକୁ ଆଜି ପର୍ଯ୍ୟନ୍ତ କେବଳ ମାନସିକ ଯନ୍ତ୍ରଣା ଓ ପ୍ରତୀକ୍ଷା ବ୍ୟତୀତ ମୁଁ ଦେଇଛି କଅଣ ?

"କଅଣ ଭାବୁଛ ?" ସେ ମୋତେ ହଲାଇ ଦେଲ ।

"ତମ କଥା···ତମକୁ ଖୁବ୍ ଦୁଃଖ ଦେଲି ମୁଁ ।"

"ତମ କୋଳରେ ମୁଣ୍ଡ ରଖି ଶୋଇବାକୁ ମନ ହେଉଛି । ଶୋଇବ ।" ସେ ଦୁଷ୍ଟାମି ଗୁହାଣିରେ ମୋତେ ଗୁହିଁଲ । ମୁଁ ସ୍ୱୀକୃତିରେ ମୁଣ୍ଡ ହଲାଇ ହସିଲି ।

ସେ ମୋ କୋଳରେ ମଥା ରଖି ଶୋଇ କହିଲ—"ଆକାଶଟା କେତେ ତଳକୁ ଝୁଲି ପଡ଼ିଛି ଦେଖୁଛ ।" ମୁଁ ପୁନର୍ବାର ତା'ର ଭାବପ୍ରବଣତାରେ ମୁଗ୍ଧ ହୋଇ ହସିଲି ।

"ଗତଥର ଗଲାବେଳେ ମୋତେ ଖବର ବି କଲନାହିଁ ।" ସେ ଅଭିଯୋଗ କଲା ।

"ମୁଁ ଅସଫଳତାର ଆଘାତ ସହିପାରି ନ ଥିଲି; କିନ୍ତୁ ତମର ଚିଠିଗୁଡ଼ାକ ଏତେ ଫମ୍ପାଲ ହୋଇ ଯାଉଥିଲା କାହିଁକି ।" ମୁଁ ଅଭିଯୋଗ କଲି ।

ସେ ହସିଲା । ପୁନର୍ବାର ମୁଁ ତା' ଆଖିରେ ଦେଖିଲି ଏକ ପରାଜିତ ଓ ଭଗ୍ନ ବ୍ୟକ୍ତିର ଛବି । ହତାଶାର ଏକ ସ୍ପଷ୍ଟ ଇଙ୍ଗିତ । ମୁଁ ଉତ୍‌କଣ୍ଠିତ ହୋଇ ପଡ଼ିଲି ।

"କଅଣ ହୋଇଛି ତମର ?" ମୁଁ ପ୍ରଶ୍ନ କଲି ।

"କିଛିନାହିଁ ତ !" ସେ ଲୁଚାଇବାକୁ ଚେଷ୍ଟାକଲା ।

"ମିଛ କୁହନାହିଁ କିମ୍ବା ଛଳନା କରନାହିଁ ଲତା ! ହୋଟେଲ ରୁମ୍‌ରେ କାନ୍ଦ, ଉଦାସ ଚାହାଣି···ଏସବୁ କଅଣ ?"

ମୁହୂର୍ତ୍ତେ ସେ ଅଟକିଲା । ସତେ ଯେମିତି କହିବ କି ନାହିଁ ଚିନ୍ତାକରୁଛି । ତା'ପରେ ଦୀର୍ଘଶ୍ୱାସ ଟାଣି ଆରମ୍ଭ କଲା—"ମୁଁ ସରିଯାଇଛି ପ୍ରଭାସ··· ମୁଁ ହାରି ଯାଇଛି । ଆଜି କେବଳ ଛଳନା କରୁଛି ସଂଘର୍ଷର; କିନ୍ତୁ ପ୍ରକୃତରେ ଆଉ ଧୈର୍ଯ୍ୟ ନାହିଁ, ସାହସ ନାହିଁ, ତମର ପ୍ରେରଣା, ସାହଚର୍ଯ୍ୟ ଓ ସାହାଯ୍ୟ ପାଉଥିଲେ ହୁଏତ ବଞ୍ଚିଯାନ୍ତି । ସବୁ ଦୁଃଖକୁ ଭୁଲିଯାନ୍ତି; କିନ୍ତୁ ତମେ ବି ଅନେକ ଦୂରରେ । ଚିଠି ଦେଲେ ମଧ୍ୟ ଉତ୍ତର ପରେ ତମେ ପାଇବ । ସେତେବେଳକୁ··· ! ତମେ ହୁଏତ ଜାଣିନ ପ୍ରଭାସ, ବାପା ପାରାଲିସିସ୍ ରୋଗ ଦ୍ୱାରା ଆକ୍ରାନ୍ତ ହୋଇ ଆଉ ବିଛଣାରୁ ଉଠିପାରୁ ନାହାନ୍ତି । ବୋଉ ତ ଜାଣିଛ କ୍ୟାନସର ରୋଗରେ ଦୁଇ ବର୍ଷ ହେଲା । ବର୍ତ୍ତମାନ ଘରର ସବୁ ଦାୟିତ୍ୱ ମୋ ଉପରେ । ଏସବୁ ଜଞ୍ଜାଳ ମଧ୍ୟରେ ତମକୁ ବସି ଚିଠି ଲେଖିବି କେମିତି ବା ମନେ ପକେଇବି କେମିତି ? ଥରେ ଥରେ ମୋତେ ଲାଗୁଛି ମୁଁ ଯେମିତି ପାଗଳ ହୋଇଯିବି ଏ ସମସ୍ତ ବନ୍ଧନ ଓ ଦାୟିତ୍ୱ ମଧ୍ୟରେ ।"

ମୁଁ ଚମକି ଉଠିଲି ଆଶ୍ଚର୍ଯ୍ୟରେ—"ଲତା, ତମେ ଏତେ ଦୁଃଖ ସହୁଛ, ମାନସିକ ଅଶାନ୍ତି ସହୁଛ, ହେଲେ ମୋତେ ଥରେହେଲେ ବି ଲେଖି ପାରିଲ ନାହିଁ !"

ସେ ମୋ ହାତ ଧରି ପକାଇଲା—"ମୋତେ ଭୁଲ୍ ବୁଝନା । ତମର ଅଶାନ୍ତ ମନକୁ ମୁଁ ବିଷାକ୍ତ କାହିଁକି କରି ଦେଇଥାନ୍ତି ?"

ମୁଁ ତା' ପାପୁଲିକୁ ଚାପି ଧରିଲି—"ଏଥର ଆଉ କୌଣସି ପ୍ରକାରର ଚିନ୍ତା କରନାହିଁ । ମୁଁ ଚାକିରି ପାଇ ଯାଇଛି ।"

ସେ ଉଲ୍ଲସିତା ହୋଇ ଉଠିଲା—"ସତେ ।"

ମୁଁ ମୃଣ୍ଡ ହଲେଇଲି—"ଏଥର ଯେବେ କହିବ ତମକୁ ନିଜ ପାଖକୁ ନେଇଯିବ ।"

ହଠାତ୍ ଉଦାସର ଏକ ବାଦଲ ତାକୁ ଆଚ୍ଛନ୍ନ କରି ପକାଇଲା । ପରେ ଅନନ୍ଦ ଉଲ୍ଲାସ ସବୁ କ୍ଷଣକ ମଧ୍ୟରେ ଉଦାସର ଉକ୍ତ କଳାବାଦଲ ପଛପଟେ ଲୁଚିଗଲା । ସେ ନିଜ ଆଙ୍ଗୁଳିକୁ ମୋଡ଼ି ଶୂନ୍ୟକୁ ଲକ୍ଷ୍ୟକରି କହିଲା—"ତମେ ବଡ଼ ଡେରି କରିଦେଲ । ଛଅମାସ ପୂର୍ବରୁ ତମେ ଏ ଚାକିରି ପାଇଥିଲେ ମୁଁ ଆଖି ବନ୍ଦକରି ତମ ସହିତ ଚାଲିଯାଇ ପାରିଥାନ୍ତି । ହେଲେ ବର୍ତ୍ତମାନ···।" ସେ ଅଟକିଯାଇ ମୋତେ ଚାହିଁଲା ।

"ବର୍ତ୍ତମାନ କଅଣ ହେଲା ?" ମୁଁ ବିବ୍ରତ ଓ ବିଚଳିତ ହୋଇ ଉଠିଲି ।

ସେ ହସିଲା—"ଏଥର ଆଉ ମୁଁ କହି ପାରିବିନି; କିମ୍ବା ତମେ ମୋତେ ନେଇ ପାରିବନି । ଏକ ଅଜଣା ଅଚିହ୍ନା ବନ୍ଧନ ଭିତରେ ମୁଁ ଛନ୍ଦି ହୋଇ ଯାଇଛି ।

ମୁଁ ତଥାପି ବୁଝି ପାରିଲିନି । କେବଳ ଆଖିରେ ପ୍ରଶ୍ନବାଚୀର ମୋହର ଦେଇ ତାକୁ ଲକ୍ଷ୍ୟକଲି । ସେ ଆକାଶକୁ ଚାହିଁଥିଲା—"ସାନଭାଇ, ଘରର ଦାୟିତ୍ୱ, ବାପା ମାଆଙ୍କର ଦାୟିତ୍ୱ ନ ନେଲା ପର୍ଯ୍ୟନ୍ତ ମୁଁ ତମ ସହିତ କେମିତି ଯାଇ ପାରିବି ! ଏତେଟା ସ୍ୱାର୍ଥପର ମୁଁ ନୁହେଁ ପ୍ରଭାସ ।"

"କିନ୍ତୁ ସେମାନେ ବି ଆମ ସହିତ ରହି ପାରିବେ ।" ମୁଁ ତାକୁ ବୁଝାଇବା ପାଇଁ ଚେଷ୍ଟାକଲି ।

"ନା···ଅସମ୍ଭବ । ସେମାନଙ୍କୁ ତମ ଉପରେ ବୋଝ କରିବା ପାଇଁ ମୁଁ ଚାହେଁନି । ତା'ପରେ ତମର ବି ପରିବାର ଅଛନ୍ତି । ସେମାନେ କଅଣ କହିବେ ।"

"ତାହାହେଲେ ?" ମୁଁ ତାକୁ ଲକ୍ଷ୍ୟକଲି ।

ସେ ହସି ହସି ମୋ ମଥାର କେଶକୁ ଅଲଗା କରିଦେଲା—"ସାତ ବର୍ଷ ଧରି ଏଇ ପ୍ରଶ୍ନ ମୁଁ ପଚାରି ଆସୁଥିଲି ତମକୁ । ଏଥର ତମର ପାଳି···।"

ମୁଁ ଉଦାସ ହୋଇ ଉଠିଲି । ସେ ଦୂର ଉଦ୍ୟାନକୁ ଅନେଇ ମୋତେ ଭାବପ୍ରବଣ ହୋଇ ପ୍ରଶ୍ନକଲା—"ଦେଖୁଛ ସେ ଦୂର ବଗିଚ୍ଛକୁ··· ମନେଅଛି ମୁଁ କହୁଥିଲି···ଏମିତି ଏକ ବଗିଚ୍ଛ ଏକ ଛୋଟ ଘର··· ତୁମେ ଏବଂ ମୁଁ ଆଉ ଆମର କଳ୍ପନା । ମନେଅଛି ନା ?"

ମୁଁ ନୀରବରେ ମୁଣ୍ଡ ହଲାଇ ତାକୁ ସମର୍ଥନ ଜଣାଇଲି ।

"ଉଦାସ ହୁଅନା । ସାନଭାଇ ବି·ଏ· ଫାଇନାଲରେ ଅଛି । ଏମ୍·ଏ·ଟା ପାଶ୍ କରି ନେଲା ପରେ ମୋର ଛୁଟି । ତମର ବି ଏହା ଭିତରେ ପ୍ରମୋଶନ ହୋଇଥିବ···ବୁଝିଲ ?" ସେ ମୋତେ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଚାହିଁଲା ।

ଏହା ଭିତରେ ମୁଁ ବା ତମେ କଅଣ କରିବା । ମୁଁ ପ୍ରଶ୍ନ କଲି । "ଦୀର୍ଘ ସାତ ବର୍ଷ ଧରି ଯାହା କରୁଥିଲେ···କଳ୍ପନା", ସେ ହସିଲା ।

× × ×

ସନ୍ଧ୍ୟା ପର୍ଯ୍ୟନ୍ତ ନିହାତି ସାଧାରଣ କଥା । ମୁଁ ପାର୍କରୁ ବଡ଼ ଉତ୍ସାହହୀନ ହୋଇ ଯାଇଥିଲି । ପାର୍କରୁ ବାହାରି କଫି ହାଉସ । ସେଠାରେ ନିହାତି ସାଧାରଣ ଆଲୋଚନା, ତା'ର କେତୋଟି ପ୍ରଶ୍ନ ମୋ ପରିବାର ବିଷୟରେ, ମୋ ବିଷୟରେ, ମୋ ଚାକିରି ବିଷୟରେ, ମୋ ଦରମା ବିଷୟରେ, ପ୍ରମୋଶନ ବିଷୟରେ, ମୋ ସ୍ୱାସ୍ଥ୍ୟ ବିଷୟରେ, ତା'ର ପ୍ରତ୍ୟୁତ୍ତରରେ ମୋର କେତୋଟି ପ୍ରଶ୍ନ, ତା' ବାପାଙ୍କ ରୋଗ ବିଷୟରେ, ମାଆଙ୍କ ସ୍ୱାସ୍ଥ୍ୟ ବିଷୟରେ, ଡାକ୍ତରଙ୍କ ଉପଦେଶ ବିଷୟରେ, ତା' ନିଜ ବିଷୟରେ ।

ଆମେ ନିହାତି ଫର୍ମାଲ ହୋଇ ଉଠିଥିଲୁ ସନ୍ଧ୍ୟା ପର୍ଯ୍ୟନ୍ତ । ମୁଁ ସାତ ବର୍ଷର ଅବଧିକୁ ଏଇଠି ଶେଷକରି ଦେବାକୁ ଚାହୁଁଥିଲି; କିନ୍ତୁ ତାହା ଯେପରି ବଢ଼ି ଚାଲିଥିଲା । ମୁଁ ତାକୁ କିନ୍ତୁ ଦାୟୀ କରିପାରୁ ନ ଥିଲି । ସେ ଯାହା କହୁଥିଲା, ତା' ଯୁକ୍ତିଯୁକ୍ତ । ଆମେ ଏତେଟା ସ୍ୱାର୍ଥପର ହେବାଟା ଉଚିତ ହେବ ନାହିଁ । ଏତେ ସବୁ ବୁଝିବା ସତ୍ତ୍ୱେ ମୁଁ କେମିତି ଟିକେ ଖାପଛଡ଼ା ହୋଇ ପଡ଼ୁଥିଲି । ସେ ମଧ୍ୟ ନୀରବ ଥିଲା । ମୋ ଉତ୍ସାହକୁ ନଷ୍ଟକରି ଦେଇଥିବାରୁ ସେ ହୁଏତ ନିଜକୁ ଅପରାଧୀ ଭାବୁଥିଲା ।

ଲୋକାରଣ୍ୟ ବଜାରରେ ଆମେ ନିରୁଦ୍ଦିଷ୍ଟ ଭାବେ ଅନେକ ସମୟ ବୁଲିଲୁ । ଏକ ଛକରୁ ତା' ପାଇଁ ଗୋଟାଏ ଫୁଲ ଗଜରା କିଣି ତାକୁ ଉପହାର ଦେଲି । ସେ ହସିଲା ଈଷତ୍ ଲଜରେ ନିଜ ଗାଲକୁ ରଙ୍ଗିନ୍ କରି ।

"ମୁଁ ଆଜି ରାତି ଟ୍ରେନରେ ଫେରିଯିବି ।" ବାଟରେ ମୁଁ ତାକୁ କହିଲି ।

"ଆଜି ଫେରିଯିବ ?" ସେ ହଠାତ୍ ଉଦାସ ହୋଇ ପଡ଼ିଲା ।

"ହଁ ରାତି ଛଅଟାରେ ଏକ୍ସପ୍ରେସ ଅଛି ।"

କିଛିକ୍ଷଣର ନୀରବତା ପରେ ସେ ଏକ ଦୀର୍ଘନିଃଶ୍ୱାସ ତ୍ୟାଗକରି କହିଲା—"ଯାହା ତମ ଇଚ୍ଛା ।"

ମୁଁ ଭାବିଥିଲି ସେ ମୋତେ ବାଧା କରିବ; କିନ୍ତୁ ସେ ନିର୍ବିକାର ଭାବରେ ମୋର ପ୍ରସ୍ତାବକୁ ସ୍ୱୀକାର କରିନେଲା । ଯେମିତିକି ତା'ର ମୋ ଉପରେ କିଛି ଅଧିକାର ନାହିଁ, ସେ ଯଦି ଆଉଥରେ ମନା କରିଥାନ୍ତା, ଜୋର ଦେଇଥାନ୍ତା, ତେବେ ମୁଁ ରହି ଯାଇଥାନ୍ତି ।

ସନ୍ଧ୍ୟା ଅତିକ୍ରାନ୍ତ ହୋଇ ଯାଇଥିଲା ଅନେକବେଳୁଁ, ବଜାରରେ କେବଳ ରଙ୍ଗର ସମାହାର ପରିଲକ୍ଷିତ ହେଉଥିଲା ଏବଂ ଆମେ ଭିଡ଼ର ସମୁଦ୍ର ମଧ୍ୟ ଦେଇ ହୋଟେଲ ଅଭିମୁଖେ ଗତି କରୁଥିଲୁ ।

"ମୁଁ ହୋଟେଲ ଯିବି ?" ସେ ମୋତେ ନ ଚାହିଁ ପ୍ରଶ୍ନ କଲା ।

"ଯଦି ତମର ଅସୁବିଧା ନ ହୁଏ ।" ମୁଁ ନିର୍ଲିପ୍ତ ଭାବେ କହିଲି ।

ମୋତେ ଅନେଇ ସେ ହସିଲା, "ତମ ପରି ଲୋକ ମୁଁ କେଉଁଠି ଦେଖିନାହିଁ ।" ମୁଁ ତା'ର ସେଇ ହସରେ ପୁନର୍ବାର ସହଜ ହୋଇ ଉଠିଲି ।

ହୋଟେଲର ଉକ୍ତ ପରିଚିତ କକ୍ଷ । ଅନ୍ଧକାରର ସାମ୍ରାଜ୍ୟ ମଧ୍ୟରେ ସେ ଓ ମୁଁ । କକ୍ଷର ବାୟୁମଣ୍ଡଳରେ ଉଷ୍ଣତା । କକ୍ଷର ବାତାବରଣରେ ତା' ଶରୀରର ସୁଗନ୍ଧ ଭରି ଯାଇଥିଲା । ମୁଁ ଉକ୍ତ ସୁଗନ୍ଧକୁ ଆହରଣ କରି ଉତ୍ତେଜିତ ହୋଇ ଉଠିଥିଲି ।

ମୁଁ ପାଗଳଙ୍କ ପରି ତା' ନଗ୍ନ ଶରୀରକୁ ତନ୍ନ ତନ୍ନ କରି ନିଜର ହାତ-ମୁଠାରେ ପରୀକ୍ଷା କରୁଥିଲି । ସେ ଉନ୍ମାଦିନୀ ପରି ମୋତେ ଚୁମା ଦେଉଥିଲା । ସାତମାସର ବ୍ୟବଧାନ ପରେ ଏ ପ୍ରକାରର ଉତ୍ତେଜନା ଓ ଉନ୍ମାଦନା ନିତାନ୍ତ ସ୍ୱାଭାବିକ ।

ନିଃଶ୍ୱାସ ପ୍ରଶ୍ୱାସର ତୀବ୍ର ଚିତ୍କାର ମଧ୍ୟରେ ଆମେ ସାଗରର ଢେଉ ଉପରେ ଭାସିଲା ପରି ଉତ୍ତେଜନାର ସ୍ତର ସ୍ତର ଦେଇ ଶୀର୍ଷ ଦେଶକୁ ଗତି କରୁଥିଲୁ । ଅନ୍ଧକାର ମଧ୍ୟରେ ମୁଁ ତା' ଗୋରା ଶରୀରର ପ୍ରତ୍ୟେକ ଅଂଶକୁ ସ୍ପଷ୍ଟ ଦେଖି ପାରୁଥିଲି । ସେ ଆଖି ବନ୍ଦକରି ଉକ୍ତ ଚରମ ମୁହୂର୍ତ୍ତଟିର ପ୍ରତୀକ୍ଷାରେ ପଡ଼ିଥିଲା ଏବଂ ମୁଁ, ଏକ ଝୁଇ ପରି ତାକୁ ବେଢ଼ି ଯାଇଥିଲି ।

ଉତ୍ତେଜନାର ଅବସାନ ପରେ ମୁଁ ହଠାତ୍ କ୍ଲାନ୍ତ ହୋଇ ପଡ଼ିଗଲି । ସେ ବୁଝିପାରି ମୋ କ୍ଲାନ୍ତିକୁ ଦୂର କରିବାପାଇଁ, ମୋ ପିଠିରେ ଆଦର ଓ ସ୍ନେହରେ ହାତ ବୁଲାଇ ଧୀର ସ୍ୱରରେ କହିଲା, "ଜାଣିଛ ତୁମର ପାଇଁ ମୁଁ ଟ୍ୟାବ୍‌ଲେଟ୍ ଖାଉଛି !"

ହୋଟେଲର 'ଓ୍ୱେଟିଂ ରୁମ୍'ରେ ସେ ଓ ମୁଁ ସାମ୍ନାସାମ୍ନି ବସିଥିଲୁ । ରାତି ଦଶଟା ହୋଇ ସାରିଥିଲା । ଏଥର ତାକୁ ଯିବାକୁ ପଡ଼ିବ, ମୁଁ ଛାଡ଼ିବାକୁ ଯାଇପାରି ଥାନ୍ତି, କିନ୍ତୁ ସେ ପ୍ରତିବାଦ କଲା । ତା' ଗାଁର ଲୋକମାନେ ଭଲ ନୁହଁନ୍ତି । ତା' ଘରେ ତା' ସାନଭାଇ, ବାପା ମା' ଏମାନେ ଏତେ ରାତିରେ ଦୁହିଁଙ୍କୁ ଏକ ସଙ୍ଗେ ଦେଖି ପସନ୍ଦ କରି ନ ପାରନ୍ତି । ତେଣୁ ଅଗତ୍ୟା ତାକୁ ରିକ୍‌ସାରେ ବିଦା କରିବାପାଇଁ ବାଧ୍ୟ ହୋଇଥିଲି । ହୋଟେଲ ବୟ ଆଗ ଛକକୁ ରିକ୍‌ସା ଡାକିବାପାଇଁ ଯାଇଥିଲା ଏବଂ ଆମେ ସାମ୍ନାସାମ୍ନି ବସିଥିଲୁ ।

"ତାହାହେଲେ କଅଣ ଠିକ୍ କଲ ?" ମୁଁ ପ୍ରଶ୍ନକଲି ।

"ଯାହା ତମକୁ ଆଗରୁ କହିଛି । ନିଜ ସ୍ୱାର୍ଥ ପାଇଁ ମୁଁ ସେମାନଙ୍କୁ ଛାଡ଼ି ପାରିବି ନାହିଁ । ସାତବର୍ଷର ପ୍ରତୀକ୍ଷା । ପରେ ଆଉ ଦୁଇବର୍ଷର ପ୍ରତୀକ୍ଷା ମୋତେ ଅଧିକ ବ୍ୟଥିତ କରିପାରିବ ନାହିଁ । ମୁଁ ତମପାଇଁ ସାତବର୍ଷ ପ୍ରତୀକ୍ଷା କରିପାରିଲି । ହେଲେ ତମେ ମୋ ପାଇଁ ମାତ୍ର ଦୁଇ ବର୍ଷ ପ୍ରତୀକ୍ଷା କରିପାରିବ ନାହିଁ ।" ଏଥରକ ତା' ସ୍ୱରରେ ଦୃଢ଼ତା ମୁଁ ଅନୁଭବ କଲି ।

ଦୀର୍ଘଶ୍ୱାସ ତ୍ୟାଗକରି କହିଲି । "ତାହାହେଲେ ଠିକ୍ ଅଛି ।"

"ପୁଣି କେବେ ଆସିବ ?" ସେ ଦ୍ରବିତ ଗଳାରେ ପ୍ରଶ୍ନକଲା ।

"ସୁବିଧା ହେଲେ ।"

"ଚିଠି ଦେବ ?" ସେ ପୁଣି ପ୍ରଶ୍ନକଲା ।

"ତମେ ଦେଲେ ମୁଁ ନିଶ୍ଚୟ ଦେବି ।" ମୁଁ ସହଜ ହୋଇ ଉତ୍ତର ଦେଲି ।

"ପହଞ୍ଚିଲା ପରେ ଚିଠି ନିଶ୍ଚୟ ଦେବ ।"

ତା'ପରେ ଅସମ୍ଭବ ନୀରବତା । ସେ ଘଡ଼ିକୁ ବାରମ୍ବାର ଚାହୁଁଥାଏ ଏବଂ ମୁଁ ବାରମ୍ବାର ହୋଟେଲ ଦ୍ୱାରକୁ ରିକ୍‌ସା ଆସିଲା କି ନାହିଁ ଜାଣିବାପାଇଁ ଚାହୁଁଥାଏ ।

ନୀରବତାର ଏକ ଯୁଗ ପରେ ହଠାତ୍ ମନକୁ ମନ ସେ କହି ଉଠିଲା, "ଅନେକ ଡେ଼ରି ହୋଇଗଲା । ଘରେ ବ୍ୟସ୍ତ ହେଉଥିବେ ।"

ମୁଁ କିଛି କହିଲି ନାହିଁ । ଓ୍ୱାଲକ୍ଲକର ଟିକ୍ ଟିକ୍ ଶବ୍ଦ ବ୍ୟତୀତ ଆମ ମଧ୍ୟରେ ଆଉ କୌଣସି ପ୍ରକାରର ଶବ୍ଦ ନ ଥିଲା । ଏପରି ବାତାବରଣ ମଧ୍ୟରେ ବସିରହି ମୁଁ ବିରକ୍ତ ହୋଇ ଉଠିଥିଲି ।

ଆମ ମଧ୍ୟରେ କଥା ଯେମିତି ସମାପ୍ତ ହୋଇ ଯାଇଥିଲା । ସକାଳୁ ସଞ୍ଜ ମଧ୍ୟରେ ଆମ ମଧ୍ୟର ସମସ୍ତ ପ୍ରକାରର ସମ୍ବେଦନା ସମାପ୍ତ ହୋଇଯାଇ ଥିଲା ଏବଂ ଆମେ ନିହାତି ଫମାଲ ହୋଇ ଉଠିଥିଲୁ । ପ୍ରତ୍ୟେକ ନିଜ ନିଜ ଚିନ୍ତାରେ ବ୍ୟସ୍ତ ହୋଇ ଉଠିଥିଲୁ । ମୁଁ ମନେ ମନେ ବିରକ୍ତ ହେଉଥିଲି ହୋଟେଲ ବୟ ଉପରେ । ଏତେବେଳ ହେଲା ରିକ୍ସା ପାଇଁ ଗଲାଣି, ଅଥଚ ରିକ୍ସାର ଦେଖା-ନାହିଁ । ଅନ୍ତତଃ ରିକ୍ସାଟା ଆସିଗଲେ ଏ ପ୍ରକାର ବିରକ୍ତିକର ପରିସ୍ଥିତିରୁ ମୁକ୍ତି ମିଳନ୍ତା । ଏବଂ ମୁଁ ରାତି ଏକ୍ସପ୍ରେସ ପାଇଁ ପ୍ରସ୍ତୁତ ହୋଇ ପାରନ୍ତି ।

ସେ ବାରମ୍ବାର ଘଡ଼ିକୁ ଲକ୍ଷ୍ୟକରି ବ୍ୟସ୍ତ ହୋଇ ପଡ଼ୁଥିଲା । ତା' ମୁହଁଟା ଚିନ୍ତାରେ, ତା' ବୟସ ଅପେକ୍ଷା ଅଧିକ ବୟସ୍କା ଜଣା ପଡ଼ୁଥିଲା । ସେ ମୋ ଆଖିରେ ଆଖି ନ ମିଳାଇ ଇଆଡ଼େ ସିଆଡ଼େ, କାନ୍ଥକୁ, କ୍ୟାଲେଣ୍ଡରକୁ ଚାହୁଁଥିଲା ଏବଂ ମୁଁ ଅଯଥାରେ କାଶୁଥିଲି, ମୁଣ୍ଡ କୁଣ୍ଡାଉଥିଲି, ମନେ ମନେ ଏକ ପୁରୁଣା କଥାଚିତ୍ର ଗୀତର ସୁର ଧରିବାକୁ ଚେଷ୍ଟା କରୁଥିଲି । ବାତାବରଣଟା ମୋପାଇଁ ଅସହ୍ୟ ହୋଇ ଉଠିଥିଲା ।

ଉକ୍ତ କକ୍ଷର ବାୟୁମଣ୍ଡଳଟା ଆମର ନିଃଶ୍ୱାସ ଦ୍ୱାରା ଭରି ତଥା ଓଜନିଆ ହୋଇ ଉଠିଥିଲା । ଆମ ଅଜାଣତରେ ଏକ ଅଦୃଶ୍ୟ ଫାଙ୍କ ଆମ ମଧ୍ୟରେ ସୃଷ୍ଟି ହୋଇ ଯାଇଥିଲା ।

ମୁଁ ମନେ ମନେ ବିଶ୍ଳେଷଣ କରିବାକୁ ଚେଷ୍ଟା କରୁଥିଲି ଯେ, ଅଯଥାରେ ଏତେ ଦୂରକୁ ଆସିବାଟା ପ୍ରତ୍ୟେକ ଥର ଉଚିତ ହେଉନାହିଁ । ସେ ଯେତେବେଳେ ଉଦ୍‌ବିଗ୍ନା ହୋଇ ଦ୍ୱାରକୁ ଚାହୁଁଥିଲା ।

ହଠାତ୍ ହୋଟେଲ ବାହାରେ ରିକ୍ସା ଘଣ୍ଟି ବାଜିଲା । ସେ ସଙ୍ଗେ ସଙ୍ଗେ ଠିଆ ହୋଇ ପଡ଼ିଲା । ମୁଁ ସ୍ୱସ୍ତିର ନିଃଶ୍ୱାସ ମାରିଲି ଏବଂ ମୋତେ ଲାଗିଲା ଯେମିତି ବିଚ୍ଛେଦର ଏଇକ୍ଷଣଟିକୁ ଆମେ ଅନେକବେଳୁ ପ୍ରତୀକ୍ଷା କରି ରହିଥିଲୁ ।

(ମାନସ-ମଇ, ୧୯୭୪)

# ସ୍ୱପ୍ନ

ମୁଁ ତାଙ୍କୁ ଅପେକ୍ଷା କରି ବସି ରହିଥିଲି ବରଗଛ ତଳ ବହ୍ମାଣ୍ଡ ହୋଟେଲରେ ।

କ୍ରମାଗତଭାବେ ଦୀର୍ଘ ତିନ ବର୍ଷ ଧରି ତାଙ୍କ ସହିତ ବନ୍ଧୁତା । ଜୀବନର ଏଇ ଶେଷ ପର୍ଯ୍ୟାୟରେ ମଣିଷ ଏକ ବନ୍ଧୁ ଲୋଡ଼ିଥାଏ ଅଥବା ଏକ ବନ୍ଧୁର ପ୍ରୟୋଜନୀୟତା ସେ ଏକାନ୍ତ ପ୍ରହରମାନଙ୍କରେ ଅନୁଭବ କରିପାରେ । ଏବଂ ଶତାୟୁର କଳ୍ପ ପରେ ତାଙ୍କୁ ବନ୍ଧୁଭାବେ ପାଇ ମୁଁ ବେଶ୍ ସୁଖୀ ।

ସେଥର ସେ କଫି ପିଉଥିଲେ ଏବଂ ସେଇ ଏକ ଟେବୁଲ୍‌ରେ ବସି ମୁଁ ଚା' ପିଉଥିଲି । ମୋ ସିଗାରେଟ ଧୂଆଁ ଦ୍ୱାରା ସେ ବିବ୍ରତ ହେବାରୁ ମୁଁ ଦୁଃଖ ପ୍ରକାଶ କରି ସିଗାରେଟ ଲିଭାଇ ଦେଇଥିଲି । ସେ କୃତଜ୍ଞତା ଜଣାଇ କହିଥିଲେ—"ଧନ୍ୟବାଦ ।"

ସେଇଟା ତିନ ବର୍ଷ ତଳେ ଯେତେବେଳେ ମୁଁ ଥିଲି ଏକ ସରକାରୀ ଦପ୍ତରର ହେଡ଼୍ କ୍ଲର୍କ ଓ ସେ ଥିଲେ ଏକ ପ୍ରଖ୍ୟାତ ଡାକ୍ତରଙ୍କ କମ୍ପାଉଣ୍ଡର । ତାଙ୍କର ଥିଲେ ଗୋଟିଏ ପୁଅ ଓ ତିନୋଟି ଝିଅ ଓ ମୋର ଥିଲେ ମା'-ବିହୀନ ଦୁଇଟି ଝିଅ ଓ ବିଧବା ଭଉଣୀ ସହିତ ତା'ର ଦୁଇଟି ଝିଅ ଏବଂ ଗୋଟିଏ ପୁଅ ।

ସେଦିନ ସେ କଫି ପିଇଲେ ଓ ମୁଁ ଚା' ପିଇଲି । ଚା' ସହିତ ସିଗାରେଟ ନ ହେଲେ ମୁଁ ଖୁବ୍ ଅଶ୍ୱସ୍ତି ବୋଧକରେ । ତେଣୁ ସେଦିନ ମଧ୍ୟ ମୋର ଅନୁରୂପ ଅବସ୍ଥାକୁ ଲକ୍ଷ୍ୟକରି ସେ ଟିକିଏ ମୃଦୁ ହସି ସିଗାରେଟ ପିଇବା ପାଇଁ ମୋତେ ଅନୁମତି ଦେଇଥିଲେ । ଭଦ୍ରତା ଖାତିରରେ ପ୍ରଥମେ ମୁଁ ମନା କରିଥିଲେ ମଧ୍ୟ ପରେ ସିଗାରେଟରେ ଅଗ୍ନି ସଂଯୋଗ କରିଥିଲି । ତା'ପରେ ହଠାତ୍ ଆମେ ବନ୍ଧୁତା ସୂତ୍ରରେ ବାନ୍ଧି ହୋଇ ଯାଇଥିଲୁ, ସାମାନ୍ୟ ଦୁଇ ପଦ କଥୋପକଥନ ପରେ । ଏକ ଲକ୍ଷ୍ୟ ଉଦ୍ଦେଶ୍ୟରେ ଯାଉଥିବା ପଥିକଦ୍ୱୟ ଖୁବ୍

ଅଞ୍ଚଳରେ ଓ ଅତି ଶୀଘ୍ର ପରସ୍ପରକୁ ଚିହ୍ନି ପାରିଥିଲେ ଏବଂ ସହଯାତ୍ରୀ ପାଇଲେ ପଥ ଖୁବ୍ ଶୀଘ୍ର ବଢିଯାଏ ।

"ଯାହା ବି କହନ୍ତୁ, ବଜାର ଦର ଯେମିତି ବଢ଼ିଗଲାଣି, ସେଥିରେ ବଞ୍ଚିବା କହାତ ମୁସ୍କିଲ ହୋଇ ପଡ଼ିଲାଣି ।" ସେ ମୌନତା ଭାଙ୍ଗି ମୋତେ ଅନେଇଲେ ।

"ଠିକ୍ କହୁଛନ୍ତି ।" ମୁଁ ବାକ୍ୟ ଅଧା ଛାଡ଼ି ତାଙ୍କୁ ଲକ୍ଷ୍ୟକଲି ।

"ମୋ ନା ରାଧାରମଣ ଦାସ । ଡାକ୍ତର ନରୋତ୍ତମ ମହାନ୍ତିଙ୍କ କମ୍ପାଉଣ୍ଡର ।"

ତା'ପରେ ମୁଁ ନିଜ ପରିଚୟ ଦେଇଥିଲି ।

"ଦେଖୁ ନାହାନ୍ତି, ମୋ ପୁଅ ସୁରଜିତ ଏମ୍.ଏ. ପ୍ରଥମ ବର୍ଷରେ ଅଛି, ଝିଅ ଦିନୋଟି କଲେଜରେ ପାଠ ପଢ଼ୁଛନ୍ତି । ତା'ପରେ ଆମେ ସ୍ୱାମୀ ସ୍ତ୍ରୀ ଦୁଇଜଣ । ଆଉ ଦରମା ମାତ୍ର ଦୁଇ ଶହ ତିରିଶ ଟଙ୍କା । ଏଥିରେ କି ଚଳାହୁଏ ଏ ମହଙ୍ଗା ବଜାରରେ । ପୁଅର ପୁଣି କଲେଜ ଖର୍ଚ୍ଚ ଅଛି ।" ସେ ନିଜ ପରିବାର କଥା ଆରମ୍ଭ କରିଦେଲେ ।

ମୋର ହଠାତ୍ ମନେ ହୋଇଥିଲା, ଏଇଟା ଯେମିତି ତାଙ୍କ ପରିବାରର କଥା ନୁହେଁ, ମୋ ପରିବାରର କଥା । ଏଇଟା ଯେମିତି ସେ କହୁନାହାନ୍ତି । ମୁଁ କହୁଛି । ତାଙ୍କ ଶରୀର ଭିତରେ ମୋ ଆତ୍ମା ପଶିଯାଇ କଥା କହୁଛି ।

ଅବଶ୍ୟ ଏଇଟା କିଛି ନୂଆକଥା ନୁହେଁ । ପ୍ରତ୍ୟେକ ନିମ୍ନ-ମଧ୍ୟବିତ୍ତ ପରିବାରର ଗୃହକର୍ତ୍ତାଙ୍କ ଶରୀର ଭିନ୍ନ ଭିନ୍ନ ହୋଇଥିଲେ ମଧ୍ୟ ପ୍ରତ୍ୟେକଙ୍କର ଆତ୍ମା ସେଇ ଏକ । ପ୍ରତ୍ୟେକଙ୍କର ସେଇ ଏକା କଥା । ଆପଣ ଖାଲି ଥରେ ପ୍ରଶ୍ରୟ ଦେଇ ଦେଖନ୍ତୁ ନା । ମନର ଦ୍ୱାରରେ ପଡ଼ିଥିବା ତାଲାକୁ ଥରେ ଖୋଲି ଦେଇ ଭିତରଟା ପରୀକ୍ଷା କରନ୍ତୁ ତ ! ଦେଖିବେ ପ୍ରତ୍ୟେକଙ୍କର ହୃଦୟ ଭିତରେ କେତେ ସ୍ତର ସ୍ତର ହୋଇ ଦୁଃଶ୍ଚିନ୍ତା ଜମା ହୋଇ ରହିଥିବ, ପରିବାର ଚିନ୍ତା, କରଜ ଶୁଝିବା ଚିନ୍ତା, ପୁଅ ଝିଅଙ୍କୁ ବଡ଼ କରିବା ଚିନ୍ତା, ଭବିଷ୍ୟତ ଚିନ୍ତା । ଏଇମିତି କେତେ ଯେ ଚିନ୍ତା, କେତେ ଯେ ସ୍ୱପ୍ନ ଠୁଳ ହୋଇ ରହିଥିବ, ସେଇ ହାତ ମୁଠା ପରି କ୍ଷୁଦ୍ର ହୃଦୟଟି ମଧ୍ୟରେ ।

"ମୋର କିନ୍ତୁ କିଛି ଚିନ୍ତା ନାହିଁ ।" ସେ ହସିଲେ ।

ମୁଁ ଆଶ୍ଚର୍ଯ୍ୟ ହେଲି । ସେ କିଛି କହୁଥିଲେ । ମୁଁ ତାଙ୍କୁ ଲକ୍ଷ୍ୟକଲି ।

"ସୁରଜିତର ଏମ୍.ଏ.ଟା ସରିଗଲେ ମୋର ଆଉ ଚିନ୍ତା କଅଣ ? ପ୍ରଥମେ 'କମ୍ପିଟେଟିଭ' ଦେଇ ଦେଖିବ । ସେଇଟା ନ ହେଲେ ଅଧ୍ୟାପକର ଚାକିରି ତ କୁଆଡ଼େ ଯାଉନାହିଁ । ଏକଦମ୍ ଥୁଆ । ଏମ୍.ଏ. ପାଠର ମୂଲ୍ୟ ତ ନିଶ୍ଚୟ ଅଛି । ତା'ପରେ ସୁରଜିତ ଭଲ ପଢ଼େ । ତେଣୁ ମୋର ଚିନ୍ତା ନାହିଁ, ବର୍ତ୍ତମାନ ଯେମିତି ଚଳୁଛି ଚଳୁ । ସୁରଜିତ ଚାକିରି ପାଇଲେ ଏ ଦୁଃଖ, କଷ୍ଟ କଅଣ ଆଉ ରହିବ ? ସେ ହସିଲେ । ମୁଁ ଦେଖିଲି । ସେ ସାମ୍ନା ରାସ୍ତାକୁ ଚାହିଁ ସ୍ୱପ୍ନରେ ଭାସୁଥିଲେ । ଯେତେ ଯେମିତି ଭବିଷ୍ୟତର ଏକ ଅଧ୍ୟାୟକୁ ସେ ସେଇ କ୍ଷଣିକ ମଧ୍ୟରେ କଳ୍ପନା ଭିତରେ ମଗ୍ନ ରହି ଦେଖି ସାରିଥିଲେ ।

ମୋର ରାଗ ହେଲା । ଏ ମଧ୍ୟବିତ୍ତ ଶ୍ରେଣୀର ବ୍ୟକ୍ତିବିଶେଷମାନେ ଏତେ ସ୍ୱପ୍ନ ଦେଖନ୍ତି କାହିଁକି । ସ୍ୱପ୍ନ ଦେଖି ମନକୁ କିଛିକ୍ଷଣ ପାଇଁ ବହଲେଇ ହେବ । କିନ୍ତୁ କେତେକ୍ଷଣ ।

ମୋର ଇଚ୍ଛା ହେଲା, ତାଙ୍କ ଚନ୍ଦା ମୁଣ୍ଡରେ ଦୁଇ ଚଟକଣା ଥୋପି ମାରି ପାଟିକରି କହିବି—"ଆବେ ବୁଢ଼ା, ତୁ ଯେଉଁ ସ୍ୱପ୍ନ ଦେଖୁଛୁ ସେଇମିତି ସ୍ୱପ୍ନ ମୁଁ ଦେଖୁଛି । ଆମ ଆଗରୁ ଆହୁରି ଅନେକ ଏଇମିତି ଅନେକ ସ୍ୱପ୍ନ ଦେଖିଥିବେ । ହେଲେ ଫଳ କଅଣ ହୋଇଛି । ତା'ଠାରୁ ବରଂ ଯାହା ରୋଜଗାର କରୁଛୁ, ତାହା ଖାଇ ପିଇ ଦେଇ ନିଶ୍ଚିନ୍ତରେ ଶୋଇପଡ଼ । ମଣିଷ ବର୍ତ୍ତମାନରେ ହିଁ ବଞ୍ଚେ । ତୋର ଯଦି ବର୍ତ୍ତମାନ ନାହିଁ, ତେବେ ଭବିଷ୍ୟତରେ କେଉଁ ଅଜାତ ପାଇଁ ବଞ୍ଚିବୁ ? ତୋ ମଲାପରେ ତୋ ପୁଅଝିଅ ତୋତେ ଭୁଲିଯିବେ । ତେଣୁ ମସ୍ତରହି ଖାଇପିଇ । ତୋ ମଲାପରେ ତୋ ପୁଅଝିଅ ତାଙ୍କ ଭାଗ୍ୟ ନେଇ ବଞ୍ଚିବେ ।"

କିନ୍ତୁ ଏତେକଥା ମୁଁ କହିପାରିଲି ନାହିଁ । କାରଣ ମୋର ଏତେ କଥାର ଉତ୍ତରରେ ଯଦି ସେ କେବଳ ପଦେ କଥା କହିଦେବ, "ମୁଁ ଯାହାକଲି, ତୋର କଅଣ ଗଲା ? ଏତେ ଉପଦେଶ ଦେବାପାଇଁ ତୁ କିଏ ?" ତାହାହେଲେ ମୁଁ ଅପମାନିତ ହୋଇ ତା'ର ଅମୂଲ୍ୟ ବନ୍ଧୁତ୍ୱ ହରାଇ ବସିବି । ବରଂ ନିଜ ଈର୍ଷାକୁ ଚାପିରଖି ହସିବା ଶ୍ରେୟସ୍କର । ତେଣୁ ମୁଁ ହସିଲି ।

ସେଥର ସେଇଟା ଥିଲା ଆମର ପ୍ରଥମ ସାକ୍ଷାତ ଓ ବନ୍ଧୁତାର ପ୍ରଥମ ଦିବସ ।

ତା'ପରେ ପ୍ରତିଦିନ ସନ୍ଧ୍ୟାରେ ତାଙ୍କୁ ଖୋଜି ଖୋଜି ସେଇ ରାସ୍ତାକଡ଼ ବରଗଛ ତଳ ବାହାଘର ହୋଟେଲରେ ମୁଁ ପହଞ୍ଚିଯାଏ ଏବଂ ସେ ମଧ୍ୟ ମୋତେ

ଟୋକା ଖୋଜି ସେଠି ପହଞ୍ଚଯାନ୍ତି । ତାଙ୍କୁ ଦେଖି ମୁଁ ଜୋରରେ ପାଟିକରେ "ନମସ୍କାର, ରାଧାରମଣ ବାବୁ ।" ସେ ଦୂରରୁ ହାତ ହଲାଇ ହଲାଇ ହସି ହସି ମୋ ନିକଟକୁ ଚାଲିଆସନ୍ତି ଏବଂ ଆମେ ଚା' କମ୍ବା କଫି ପିଉ ପିଉ ଦେଶର ବିଭିନ୍ନ ସମସ୍ୟା ଓ ନିଜର ବିଭିନ୍ନ ସମସ୍ୟା ଉପରେ ଆଲୋଚନା କରୁ । ମୁଁ ଅଫିସର ଭାରାକ୍ରାନ୍ତ ମନକୁ ତାଙ୍କ ସହିତ ଯୁକ୍ତ କରି ହାଲକା କରିବାକୁ ଚେଷ୍ଟାକରେ ।

ଆମ ବନ୍ଧୁତା ଘନିଷ୍ଠ ହୋଇଗଲା ପରେ ମୁଁ ପ୍ରଥମେ 'ଶିଟାସ୍କାର୍' କଲି । ମୁଁ ଆପଣ ବଦଳରେ ତୁମେ କହିଲି ବେଳକୁ ତାଙ୍କ ପୁଅ ସୁରଜିତ ଏମ୍.ଏ. ଦ୍ୱିତୀୟ ଶ୍ରେଣୀରେ ପାସ୍ କଲା ଏବଂ ଯେଉଁଦିନ ପରୀକ୍ଷା ଫଳ ପ୍ରକାଶ ପାଇଥିଲା, ସେ ଦିନ ରାଧାରମଣ ବାବୁ ଆନନ୍ଦରେ ଉଲ୍ଲସିତ ହୋଇ ଉଠିଥିଲେ । ସତେ ଯେମିତି କହୁଥିଲେ, ଦେଖିଲେ ମୁଁ କେଡ଼େ ଭାଗ୍ୟବାନ ! ମୋ ସ୍ୱପ୍ନ ସଫଳ ହୋଇଛି । ମୋ ପୁଅ ଆଜି ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଉପାଧି ଲାଭ କରିଛି । ଯାହା ମୁଁ କରିପାରି ନ ଥିଲି, ଯାହା ମୋ ବାପ ଅଜା ଚଉଦପୁରୁଷ କରିପାରି ନ ଥିଲେ, ଆଜି ସେ ତାହା କରିଛି ।"

ସେଦିନ ତାଙ୍କୁ ମୁଁ ଈର୍ଷା କରିଥିଲି । ଅନ୍ୟର ସୁଖ ଓ ଆନନ୍ଦ ଦେଖିଲେ ତାକୁ ଈର୍ଷା କରିବା ମଣିଷର ପ୍ରବୃତ୍ତି । ଈର୍ଷା ନ କଲେ ମଣିଷ ବଞ୍ଚି ପାରିବ ନାହିଁ ।

ତା' ପରଦିନ ରାଧାରମଣ ବାବୁ ଡାକ୍ତର ମହାନ୍ତିଙ୍କ ନିକଟରୁ ଶେଷ ବିଦାୟ ନେଇ ବରଗଛ ତଳ ବିହାରୀ ହୋଟେଲରେ ଅତୀବ କ୍ଲାନ୍ତ ହୋଇ ବସି ପଡ଼ିଲେ । ମୁଁ ମନେ ମନେ ଖୁସି ହୋଇଥିଲି । ନିଜକୁ କହୁଥିଲି । "ଶଳା ବୁଢ଼ା, ମନେ ମନେ ଭାରି ଖୁସି ହୋଇଥିଲା । ଏଥର କୁଆଡ଼େ ଯିବ ବେଟା !"

"ଏଥରକି ସବୁ ଦାୟିତ୍ୱରୁ ମୁକ୍ତ ପାଇ ଭଗବତ ଚିନ୍ତାରେ ମନୋନିବେଶ କର ।" ମୁଁ ପରିହାସ କରିଥିଲି ।

"ତମେ ଜାଣନି ହରି ତିନି ତିନୋଟି ଝିଅ ଯା'ର ତା'ର ମୃତ୍ୟୁ ପର୍ଯ୍ୟନ୍ତ ମଧ୍ୟ ଦାୟିତ୍ୱରୁ ମୁକ୍ତି ନାହିଁ । ମୋର ତ ପେନ୍‌ସନ ମଧ୍ୟ ନାହିଁ । ହାତ ଅରୁଚ କହି ଡାକ୍ତର ବାବୁ ବିଦାୟ ଦେଇଦେଲେ । ହେଲେ···ଚିନ୍ତାରେ ମଗ୍ନଥାଇ ସେ ଉତ୍ତର ଦେଇଥିଲେ ।

ମୁଁ ସବୁ ଜାଣିଥିଲି, ନିଜର ବି ତ ଝିଅ ଦୁଇଟି ଥିଲେ । ବିଧବା ଭଉଣୀର ଝିଅ ଦୁଇଟିର ଦାୟିତ୍ୱ ବି ଥିଲା ମୋର ଉପରେ । କିନ୍ତୁ ତଥାପି

ଅନ୍ୟକୁ ଦୁର୍ବଳ କରି ତା' ମୁଖରୁ ନିଜ ଅସହାୟତାର କାହାଣୀ ଶୁଣିବାକୁ ମୋତେ ଭଲ ଲାଗେ । ଏବଂ ଶୁଣିଲାବେଳେ ମୋତେ ଲାଗେ, ଯେମିତି ଏ ପଥରେ ମୁଁ ଏକା ନୁହେଁ, ଆହୁରି ଅନେକ ବି ଅଛନ୍ତି । କିନ୍ତୁ ଅବଶ ହୋଇ ନିଜ ଜୀବନର ଭଙ୍ଗା ଦାଦରା ଗାଡ଼ିକୁ ଟାଣି ନେଇ ଚାଲିଛନ୍ତି ମୃତ୍ୟୁ ଉଦ୍ଦେଶ୍ୟରେ ।

"ଓ ! ଚିନ୍ତା···।" ସେ ଦୀର୍ଘଶ୍ୱାସ ତ୍ୟାଗ କରିଥିଲେ ।

"ହଁ···ଚିନ୍ତା·· ଖାଲି ଚିନ୍ତା ଆଉ ଚିନ୍ତା ।" ମୁଁ ମନେ ମନେ କହିଥିଲି ।

ଏଇ ଚିନ୍ତା ମଣିଷକୁ କେତେ ଅସହାୟ କରି ପକାଉଛି, ମୁଁ ଭାବିଲି । ହଠାତ୍ ତାଙ୍କ ଉପରେ ଦୟାହେଲା । ମୋ ବଡ଼ ଝିଅ ଡାକ୍ତରୀ ପଢ଼ୁଛି । ମା' ନାହିଁ । ଘରେ ମୋ ବାପାଙ୍କ, ବିଧବା ଭଉଣୀ ହିଁ ହର୍ତ୍ତାକର୍ତ୍ତା । ହେଲେ ସେ କେବେ ଏମାନଙ୍କ ପାଇଁ ଚିନ୍ତା ସୁଦ୍ଧା କରେନି । ପୁରୁଷମାନଙ୍କୁ ହିଁ ସମସ୍ତ ଚିନ୍ତା କରିବାକୁ ପଡ଼େ । ଚାକିରି ଥିଲାବେଳେ ଏମାନଙ୍କ ପାଇଁ ମୋତେ ନାନା ପ୍ରକାରର ନୈତିକତା ବିରୁଦ୍ଧ କାମ କରିବାକୁ ପଡ଼ୁଥିଲା । ଏଥର ତ ରିଟାୟାରମେଣ୍ଟ ପରେ ନିଜ ଝିଅଗୁଡାକ ମୁହଁ ବୁଲେଇ ଦେଇ ଚାଲିଯାଉଛନ୍ତି । ମୁଁ ବି ଆଉ ସେମାନଙ୍କ କଥା ଚିନ୍ତା କରୁନି । ତାଙ୍କୁ ଯଥେଷ୍ଟ ବୟସ ହୋଇଛି । ନିଜ ଭଲ ମନ୍ଦ ସେମାନେ ନିଜେ ବିଚାର କରିବେ । ମୁଁ କାହିଁକି ଅଯଥାରେ ନିଜ ମୁଣ୍ଡ ଖରାପ କରିବି । ତାଙ୍କ ଭାଗ୍ୟ ନେଇ ସେମାନେ ବଞ୍ଚିବେ ।

"ତମେ କେବେ ସ୍ୱପ୍ନ ଦେଖିଚ ??" ସେ ମୋତେ ପଚାରିଲେ ।

ମୁଁ ହସିଲି । ସେ ଆଶ୍ଚର୍ଯ୍ୟ ହେଲେ—"ହସୁଛ ଯେ !"

"ତମ କଥା କୁହ ।" ମୁଁ ତାଙ୍କୁ ପଚାରିଲି ।

ସେ ମୋତେ କିମିତେ ଲକ୍ଷ୍ୟକଲେ । ତା'ପରେ ସାମ୍ନା ରାସ୍ତାକୁ ଅନେଇଲେ ଏବଂ ସ୍ୱପ୍ନ ଦେଖିବାକୁ ଲାଗିଲେ—"ହରି ମୁଁ ତ ଆଜି ପର୍ଯ୍ୟନ୍ତ କେବଳ ସ୍ୱପ୍ନ ହିଁ ଦେଖି ଆସିଛି । ସୁରଜିତକୁ ନେଇ କେବଳ ସ୍ୱପ୍ନ ହିଁ ଦେଖି ଆସିଛି । ସେ ବଡ଼ ହେବ । ବଡ଼···ଖୁବ୍ ବଡ଼ ଅଫିସର ହେବ । ଟଙ୍କା ରୋଜଗାର କରିବ । ମୁଁ ତାକୁ ଦେଖି ଗର୍ବରେ ମୁଣ୍ଡଟେକି ଚାଲିବି । ସମସ୍ତେ ମୋତେ ପ୍ରଶଂସାଭରା ଦୃଷ୍ଟିରେ ଚାହିଁବେ । ସତରେ ହରି ··ମୋ ଜୀବନର ଲକ୍ଷ୍ୟ ଏଇଆ । ମୋ ଜୀବନର ସ୍ୱପ୍ନ ଏଇଆ । ମୋ ପାଇଁ ମୁଁ କେବେ ସ୍ୱପ୍ନ ଦେଖିନି । ଦେଖିଚି ନିଜ ସନ୍ତାନମାନଙ୍କ ପାଇଁ । ଝିଅଟିଏ ଘର ହେବ । ନିଜ

ଘର । ବାହାରେ ଖୋଲା ଲନ୍ । ମୁଁ ଲନ୍‌ରେ ଆର୍ମଚେୟାରରେ ଆଜିକି ବସିଥିବ । ଏସବୁ ତ ନିଜ ଜୀବନକାଳ ଭିତରେ କରିପାରିଲି ନାହିଁ । ଏଥର ସ୍ୱପ୍ନ ଦେଖୁଛି, ସୁରଜିତର ଜୀବନକୁ ନେଇ ।"

ମୁଁ ହସିଲି । ଚିତ୍କାର କଲା ପରି ମୁଁ ହସିଲି । ପରକ୍ଷଣରେ ମନେହେଲା ମୁଁ ହସୁନାହିଁ । ଖାଲି ପାଟିଟାକୁ ଆଁ କରି ହୋ ହୋ ହେଉଛି, ଈର୍ଷାରେ, ବିରକ୍ତିରେ ଅଥବା ଦୁଃଖରେ । ସେ ବଲବଲ କରି ମୋ ମୁହଁକୁ ଚାହିଁ ରହିଥିଲେ ।

ମୁଁ ସ୍ୱପ୍ନ ଦେଖିବା ଅନେକଦିନୁ ଛାଡ଼ି ଦେଇଥିଲି । ସ୍ୱପ୍ନର ଅସ୍ଥିତ୍ୱ ବିଷୟରେ ଜାଣିବା ପରେ । କୌଣସି ସୁନ୍ଦରୀ ତରୁଣୀକୁ ନେଇ ସ୍ୱପ୍ନ, କୌଣସି ଏକ ସୁନ୍ଦର ଘରର ସ୍ୱପ୍ନ, ଏକ ସୁନ୍ଦର ଭବିଷ୍ୟତର ସ୍ୱପ୍ନ । ଅନ୍ତତଃ ମୋପରି ବା ସାଧାରଣ ପରି ବ୍ୟକ୍ତିମାନଙ୍କ ପକ୍ଷେ ଶୋଭନୀୟ ନୁହେଁ । ଆମେ ସ୍ୱପ୍ନ ଦେଖି ଚାଲିଥିବା ଏବଂ ସେ ସ୍ୱପ୍ନମାନଙ୍କୁ ହୃଦୟ ଭିତରେ ବନ୍ଦ କରି ଦିନେ ନିଆଁ ଉପରେ ଶୋଇଯିବା । ଏବଂ ଦୂରରୁ ପ୍ରତିଧ୍ୱନି ଶୁଭୁଥିବ, "ରାମ ନାମ ସତ୍ୟ ହାଏ ।"

ମୁଁ ହୋଟେଲ ଘଡ଼ିକୁ ଲକ୍ଷ୍ୟକଲି । ଅଧଘଣ୍ଟାଏ ଯାଏ ସେ ଆସି ନାହାନ୍ତି । ମୁଁ ବ୍ୟସ୍ତ ହୋଇପଡ଼ିଲି । ଏ ବୟସରେ ଆଉ କାହାରି ପ୍ରତୀକ୍ଷା କରି ହୁଏନାହିଁ । ତାଙ୍କର ତ ଏତେ ବିଳମ୍ବ କେବେ ହୁଏନାହିଁ । ବରଂ ମୋର ପ୍ରାୟ ବିଳମ୍ବ ହୁଏ ।

ସେଥର ମଧ୍ୟ ମୁଁ ଟିକେ ବିଳମ୍ବରେ ପହଞ୍ଚିଥିଲି । ମେଡ଼ିକାଲରୁ ଝିଅକୁ ଆଣି ଘରେ ଛାଡ଼ିବା ପରେ ମୁଁ ରାସ୍ତାରେ ଚାଲିବା ଅବସ୍ଥାରେ ନ ଥିଲି । ଝିଅଟା ମେଡ଼ିକଲରେ ପଢ଼ୁଛି । ହେଲେ ଟିକେ ବି ବୁଦ୍ଧି ନାହିଁ । ଗର୍ଭ ନିରୋଧର ଏତେ ଉପକରଣ ଥାଉ ଥାଉ ଏବଂ ନଅ ସପ୍ତାହ ପରେ, ଗର୍ଭପାତ ଆଇନ ବିରୁଦ୍ଧ ଜାଣିଥିଲେ ତା' ସିନିୟର ପ୍ରଫେସର ଡାକ୍ତର ବିଶ୍ୱାମିତ୍ର ତା' ଅନୁରୋଧରେ ସବୁ ବ୍ୟବସ୍ଥା କରି ନ ଥିଲେ···ଝିଅ ।"

ପ୍ରଥମେ ତ ସେ କିଛି କହିଲା ନାହିଁ । ପରେ ମୁଣ୍ଡ ତଳକୁ କରି ଉତ୍ତର ଦେଲା, ଡାକ୍ତର ବିଶ୍ୱାମିତ୍ରଙ୍କ ବଡ଼ ପୁଅ ଅଭିରାମ ।"

"ସିଏ ଏଥର I.A.S. ପାଇଲା ?" ମୁଁ ପ୍ରଶ୍ନ କରିଥିଲି ।

"ହଁ ।"

"କିନ୍ତୁ... ?" ମୁଁ ଏଇ ଗୋଟିଏ ପଦ ପ୍ରଶ୍ନରେ ଅନେକ କଥା ପଚାରି ଦେଇଥିଲି ।

"ମୁଁ ଭାବିଥିଲି ଏକଥା ହୋଇଛି ଜାଣିଲେ, ସେ ବାଧ୍ୟ ହେବେ ମୋତେ ଗ୍ରହଣ କରିବାକୁ ।" ଶେଷ ବେଳକୁ ଝିଅ ମୋର କାନ୍ଦି ଉଠିଲା ।

ଏବଂ ମୁଁ ଗତ ଦୁଇଦିନ ତଳେ ଡାକ୍ତର ବଶିଷ୍ଠମିଶ୍ରଙ୍କ ବଡ଼ ପୁଅ ଅଭିରାମର ବିବାହ ଭୋଜି କଥା ମନେ ପକାଇ ଦୀର୍ଘଶ୍ୱାସ ଛାଡ଼ିଲି । ବାନ୍ତି ବାନ୍ତି ଲାଗିଲା । ଝିଅ ମୋର ଠିକ୍ କହୁଥିଲା । କିନ୍ତୁ ତା' ଭାବନାର କୌଣସି ଗୁରୁତ୍ୱ ରହିଲା ନାହିଁ । ତା' ସ୍ୱପ୍ନର କୌଣସି ଅସ୍ତିତ୍ୱ ରହିଲା ନାହିଁ । ସବୁ ନଷ୍ଟ ହୋଇଗଲା । ଏବଂ ସେ ବଦନାମ ହୋଇଗଲା ।

ଭଗ୍ନ ଓ ବ୍ୟଥିତ ହୃଦୟକୁ ନେଇ ସାମାନ୍ୟ ବିଳମ୍ବରେ ଯେତେବେଳେ ମୁଁ ବରଗଛ ତଳ ବିହାରୀ ହୋଟେଲରେ ପହଞ୍ଚିଥିଲି, ସେତେବେଳେ ରାଧାରମଣ ମୋତେ ଏକ ଅନୁସନ୍ଧାନୀର ଦୃଷ୍ଟିରେ ଚାହିଁ ପ୍ରଶ୍ନ କଲେ, "ଏତେ ଡେରି, ଘରେ କିଛି ଦୁର୍ଘଟଣା ଘଟିଲା କି ?"

ମୁଁ ଡରିଗଲି । ଏ ଶଳା ବୁଢ଼ା କେମିତି ଜାଣିଲା, ମନେ ମନେ ଭାବିଲି । କହିଲି "ନାହିଁ ଖାଲି ଦେହଟା ଟିକେ ଭଲ ଲାଗୁନାହିଁ ବୋଲି ·· ।"

"ହଁ, ଋତୁ ପରିବର୍ତ୍ତନ ଯୋଗୁଁ ଅଣ୍ଡା ପର୍ଦ୍ଦି ତ ହେଉଛି ଆଜିକାଲି ।" ସେ ହସିଲେ ଏବଂ ହଠାତ୍ ନୀରବ ହୋଇ ସାମ୍ନା ରାସ୍ତାକୁ ଚାହିଁଲେ । କେତେଜଣ ଯୁବକ ସ୍ଲୋଗାନ ଦେଇ, ପ୍ଲାକାର୍ଡ଼ ଧରି ଚିତ୍କାର କରି କରି ଚାଲିଗଲେ । ରାଧାରମଣ ସେଇପରି ରାସ୍ତାକୁ ଚାହିଁ ରହିଥିଲେ । ଏମିତି ଅନେକ ଥର ହୁଏ । କଥା କହୁ କହୁ ସେ ଅଚାନକ ନୀରବ ହୋଇଯାନ୍ତି ଏବଂ ମଗ୍ନ ହୋଇଯାନ୍ତି ନିଜ ସ୍ୱପ୍ନ ଭିତରେ । ଆଜିକାଲି ସେ ସ୍ୱପ୍ନ ବହୁତ ଦେଖୁଥିଲେ ।

ମୁଁ ଠିକ୍ ଦେଖିଛି ଏଇ କେତେଦିନ ମଧ୍ୟରେ ରାଧାରମଣ ନିଜ ବୟସ ଅପେକ୍ଷା ଅଧିକ ବୁଢ଼ା ହୋଇଯାଇଛନ୍ତି । ପ୍ରତିଦିନ ତାଙ୍କ କାନ୍ଧ ଦୁଇଟା ପୂର୍ବଦିନ ଅପେକ୍ଷା ଅଳ୍ପ ଟିକେ ଆଗକୁ ଢ଼ୁଲିପଡ଼େ । ଏବଂ ତାଙ୍କ ମୁଖର ଭାଙ୍ଗଗୁଡ଼ାକ ଆହୁରି ଘନ ହୋଇଯାଏ । ଯେତେବେଳେ ସେ ସ୍ୱପ୍ନ ଦେଖନ୍ତି ନୀରବ ହୋଇ, ସେତେବେଳେ ସେ ଏକ ମୃତବ୍ୟକ୍ତି ଅଥବା ଏକ ଦକ୍ଷ କଳାକାରର ମୂର୍ତ୍ତି ପରି ଦେଖାଯାନ୍ତି ।

ମୁଁ ପଚାରିଲି—"କଣ, ଏଥରକ ତମର କଅଣ ହେଲା ?"

"ଉଁ ।" ସେ ଚମକିପଡ଼ି ଆଖି ପୋଛିଲେ—"ନାଇଁ କିଛି ନାଇଁ ।"

"ତମେ କାନ୍ଦୁଛ ?"

ସେ ଦୀର୍ଘନିଃଶ୍ୱାସ ଛାଡ଼ିଲେ—"ସୁରଜିତ ଜେଲରେ ।"

"ଜେଲରେ···କାହିଁକି ?" ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନକଲି । ମୋର ମନେ ପଡ଼ିଲା ରାଧାରମଣର ପୁଅ ଦି' ବର୍ଷ ହେଲା ଇତିହାସରେ ଏମ୍.ଏ. ପାସ୍ କରି ବେକାର ହୋଇ ବୁଲୁଥିଲା ।

"କଂପିଟେଟିଭ ଦେଇ ପାରିଲା ନାହିଁ । ଚାକିରି ପାଇଁ ଚେଷ୍ଟା କରି ଖଣ୍ଡେ ଭଲ ଚାକିରି ପାଇପାରିଲା ନାହିଁ । ଗତକାଲି ଦଳେ ଶିକ୍ଷିତ ବେକାର ଯୁବକ ମୁଖ୍ୟମନ୍ତ୍ରୀଙ୍କ ବାସଭବନ ଆଗରେ ବିକ୍ଷୋଭ ପ୍ରଦର୍ଶନ କରୁଥିବାବେଳେ, ପୋଲିସ ସେମାନଙ୍କୁ ଆରେଷ୍ଟ କରିଛି । ସେ ଯୁବକମାନଙ୍କ ମଧ୍ୟରେ ସୁରଜିତ ମଧ୍ୟ ଥିଲା । ଏଥରକ କଅଣ ହେବ ? ପୋଲିସ ରେକର୍ଡ଼ରେ ତା' ନା ରହିଗଲା । ତା' 'କ୍ୟାରିୟର' ନଷ୍ଟ ହୋଇଗଲା ।" ଶେଷବେଳକୁ ସେ କଇଁ କଇଁ ହୋଇ ଛୁଆଙ୍କପରି କାନ୍ଦି ଉଠିଲେ ।

ତାଙ୍କୁ ସାନ୍ତ୍ୱନା ଦେବା ପାଇଁ ମୋ ନିକଟରେ ଭାଷା ନ ଥିଲା । କାନ୍ଦୁ···ବୁଢ଼ା କାନ୍ଦୁ । ଏମିତି କାନ୍ଦି କାନ୍ଦି ଲୁହ ଝରାଇ ଯଦି ସେ ନିଜେ ଦେଖିଥିବା ସ୍ୱପ୍ନର ଅସ୍ତିତ୍ୱକୁ ଭୁଲିଯାଇ ପାରନ୍ତା, ତେବେ ହୁଏତ ସେ ମଧ୍ୟ ଆଜି ମୋ ପରି ପ୍ରତି ଆଘାତକୁ ସାମାନ୍ୟ କରି ଅତି ସହଜରେ ଗ୍ରହଣ କରିନେଇ ପାରନ୍ତା । ସ୍ୱପ୍ନ ଦେଖିବା ଅତି ସହଜ । କିନ୍ତୁ ତା'ର ଅସ୍ତିତ୍ୱ ବିଷୟରେ ସଚେତନ ହେବା ଅନେକ କଷ୍ଟ । ରାଧାରମଣ ନିଜ ଜୀବନସାରା କେବଳ ସ୍ୱପ୍ନ ମଧ୍ୟରେ ଡୁବି ରହିଛି । ତେଣୁ ଟିକେ ଟିକେ ଆଘାତରେ ସେ କାନ୍ଦୁଛି ।

ସେ ପ୍ରକୃତିସ୍ଥ ହୋଇ ପାଣି ଗିଲାସେ ପିଇ, ମୋତେ ଅନେଇଲେ । ଆଖିରେ ଥିଲା ଅନେକ ପ୍ରଶ୍ନ । ପ୍ରତି ବ୍ୟକ୍ତିର ଆଖିରେ ଥାଏ ସେଇପରି ଅନେକ ପ୍ରଶ୍ନ । ଏଇଟା ଏମିତି ହେଲା କାହିଁକି ? ମୁଁ ଯାହା ଚାହିଁଥିଲି ତାହା ପାଇ-ପାରିଲି ନାହିଁ କାହିଁକି ? ଇତ୍ୟାଦି ଅନେକ ପ୍ରକାରର, ଅନେକ ପ୍ରଶ୍ନ । କିନ୍ତୁ ଜୀବନସାରା ସଂଘର୍ଷ ଭିତରେ ବଞ୍ଚି ମଧ୍ୟ ସେ ନିଜର ଏଇ କେତୋଟି ପ୍ରଶ୍ନର ଉତ୍ତର ପାଏ ନାହିଁ । ଯେମିତି ରାଧାରମଣ ପାଉ ନାହାନ୍ତି । ମୁଁ ପାଉନାହିଁ । କେହି ପାଇପାରି ନାହାନ୍ତି ।

"ମୁଁ ଅନେକ ସ୍ୱପ୍ନ ଦେଖିଛି ହରି, ଅନେକ । ତାଙ୍କୁ କେଉଁଠି ସାଇତି ରଖିଛି ଜାଣ ?" ସେ ପ୍ରଶ୍ନକଲେ ।

ମୁଁ କିଛି କହିଲି ନାହିଁ । ସେ ନିଜେ କହିଲେ, "ମୋ ଅଜା ଅମଳର ଗୋଟିଏ ପୁରୁଣା ସିନ୍ଦୁକ ଅଛି । ତା' ଭିତରେ ମୋ ଅଜାର ସ୍ୱପ୍ନ, ମୋ ବାପାର ସ୍ୱପ୍ନ ସହିତ ମୁଁ ନିଜ ସ୍ୱପ୍ନ ମଧ୍ୟ ମିଶାଇ ରଖି ଦେଇଛି । ତମକୁ ଦିନେ ଦେଖାଇବି ।"

ମୁଁ ବଡ଼ ବ୍ୟସ୍ତ ହୋଇ ଉଠି ଚାଲିଯିବାକୁ ବାହୁଥିଲିବେଳେ ଦୂରରୁ ରାଧାରମଣ ଦେଖାଗଲେ । ସେ ଖୁବ୍ ଜୋରରେ ହାତ ହଲାଇ ହଲାଇ ମୋ ଆଡ଼କୁ ଦୌଡ଼ିଲା ପ୍ରାୟ ଆଗେଇ ଆସୁଥିଲେ । ଏହା ଭିତରେ ତାଙ୍କ ପୁଅ ଜେଲରୁ ଓ ପୋଲିସ କେଶରୁ ମୁକ୍ତ ହୋଇ ଚାକିରି ପାଇଁ ଏ ସହରର ଗଳି-କନ୍ଦିରେ ବୁଲୁଥିବାର ତାଙ୍କଠାରୁ ଅନେକ ଥର ଶୁଣିଛି ଏବଂ ଥରେ ଦେଶୀ ମଦଭାଟିରୁ ତାକୁ ବାହାରୁଥିବାର ମଧ୍ୟ ନିଜ ଆଖିରେ ଦେଖିଛି । କିନ୍ତୁ ରାଧାରମଣଙ୍କୁ କିଛି କହିନାହିଁ । ଶୁଣିଲେ ଆଘାତ ପାଇବ ।

"ମୋର ଟିକେ ଡେରି ହୋଇଗଲା ନା ।" ସେ ମୋତେ ଅନେଇ ହସିଲେ ।

ତାଙ୍କ ପ୍ରଫୁଲ୍ଲତା ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି ।

"କୁହ କଅଣ ଖାଇବ ?" ସେ ମୋତେ ଏକ ଦଶ ଟଙ୍କାର ନୋଟ ଦେଖାଇଲେ ।

"କଥା କଅଣ ?" ମୁଁ ପଚାରିଲି ଆଶ୍ଚର୍ଯ୍ୟ ହୋଇ ।

"ପୁରଞ୍ଜୟକୁ ଚାକିରି ମିଳିଯାଇଛି ।" ସେ ରହସ୍ୟ ଉଦ୍‌ଘାଟନ କଲା ପରି କହିଲେ ।

ମୁଁ ଖୁସି ହେଲି । ଯାହାହେଉ ଏଥରକ ଏ ପ୍ରାଣୀମାନେ ବଞ୍ଚିଯିବେ । ତିନୋଟି ଯୁବତୀ କନ୍ୟା, ଠିକ୍ ମୋ ଝିଅ ପରି··· । ମୁଁ ଚିନ୍ତା କରିବା ବନ୍ଦ କରିଦେଲି ଏ ବିଷୟରେ, ଠିକ୍ ଏଇଠି ପହଞ୍ଚି ।

ସେ ସିଙ୍ଗଡ଼ା, ମିଠା ଓ ଚା' ପାଇଁ ବହାଗିକୁ କହିଲେ । ସେ ଯେପରି ଆନନ୍ଦରେ ନାଚୁଛନ୍ତି । ତାଙ୍କର ସବୁ ଅଙ୍ଗପ୍ରତ୍ୟଙ୍ଗ ମଧ୍ୟ ନାଚୁଅଛି । ମୁଁ ପଚାରିଲି, "ପୋଷ୍ଟଟା କଅଣ ?"

ମୋର ଏ ପ୍ରଶ୍ନ ପ୍ରତି ସେ ଟିକେ ବେଖାତିର ଭାବ ଦେଖାଇ ମୋତେ ଚାହିଁଲେ । ତା'ପରେ ତଳକୁ ମୁହଁ ପୋତି ଧୀର ସ୍ୱରରେ କହିଲେ, "ଯାହା ମୋ ବାପ ଅଜା ଚଉଦ ପୁରୁଷ କେବେ କରି ନ ଥିଲେ । ସେ ଡ୍ରାଇଭର ହୋଇଯାଇଛି ।"

ମୋ ଗ୍ରୁହରେ, ମୋ ମସ୍ତିଷ୍କରେ କିଏ ଯେପରି ଏକ ଶକ୍ତ ପାହାର ଦେଇଥିଲା । ମୁଁ କିଛି କହିପାରିଲି ନାହିଁ, କେବଳ ବୋକାଙ୍କ ପରି, କିଛି ବୁଝି ନ ପାରିଲା ପରି ତାଙ୍କୁ ଚାହିଁ ରହିଲି ।

"କାଲି ଦରମା କୋଡ଼ିଏ ଟଙ୍କା ଓ ପୋଷାକ ମଧ୍ୟ ମାଗଣା । ସହର ବାହାରକୁ ଗଲେ ଦିନକୁ ପାଞ୍ଚ ଟଙ୍କା । ଆଜି ତା'ର ପ୍ରଥମ ଦରମା ମିଳିଛି । ଏତେଦିନ ହେଲା ଆମ କାହାକୁ କହୁ ନ ଥିଲୁ । କାଳେ ମୁଁ ମନା କରିବି, ସେଥିପାଇଁ ମୋତେ ବି ଆଗରୁ ଜଣେଇଲା ନାହିଁ ।" ସେ ପୁନର୍ବାର ଆନନ୍ଦିତ ହୋଇ ଉଠିଲେ ।

"ତମର ସେ ସ୍ୱପ୍ନ... ! ତା'ର କଅଣ ହେଲା ?" ମୁଁ ଅତ୍ୟନ୍ତ ନିଷ୍ଠୁର ହୋଇ ପ୍ରଶ୍ନକଲି ।

"ଯେତେବେଳେ ସେ ନିଜ ଦରମା କୋଡ଼ିଏ ଟଙ୍କା ମୋ ହାତକୁ ବଢ଼େଇଦେଲା, ସେତେବେଳେ ମୁଁ ସେ ଟଙ୍କାକୁ ଜାବୁଡ଼ି ଧରି ନିଜ ଅଜା ଅମଳର ପୁରୁଣା ସିନ୍ଦୁକ ଭିତରେ ରଖିଦେଲି ଏବଂ ତା' ଭିତରେ ଅନେକ ଦିନରୁ ସାଇତି ରଖିଥିବା ସ୍ୱପ୍ନମାନଙ୍କୁ ଆକାଶକୁ ଉଡ଼େଇ ଦେଲି ।" ସେ କହିଲେ ।

ଏବଂ ଫକ୍ କରି କାନ୍ଦି ପକାଇଲେ ।



(ଆସନ୍ତାକାଲି, ଏପ୍ରିଲ୍-୧୯୭୩)

# ବିଚ୍ଛିନ୍ନାଞ୍ଚଳ

ସେଇଟା ଥିଲା ଏକ ବିଚ୍ଛିନ୍ନ ଅଞ୍ଚଳ ଏବଂ ସେମାନେ ତିନିଜଣ ଓ କୁକୁର ଦଳଟି ଥିଲେ ସେଠାକାର ଅଧିବାସୀ ।

ବାୟୁମଣ୍ଡଳଟା ଖୁବ୍ ଆର୍ଦ୍ର । ରାସ୍ତାରେ ଗୋଟାଏ ମଧ୍ୟ ଲୋକ ନାହାନ୍ତି । ସବୁଦିନ ଏ ପାଖେ ବୁଲୁଥିବା କୁକୁର ଦଳଟା ମଧ୍ୟ କେଉଁ କେବିନ ତଳେ ଥଣ୍ଡାରୁ ରକ୍ଷା ପାଇବାପାଇଁ ଲୁଚି ଗଲେଣି । ଚତୁର୍ଦ୍ଦିଗରେ ଏକ ଅସମ୍ଭବ ନିସ୍ତବ୍ଧତା ।

ମାସକ ତଳେ କିନ୍ତୁ ଏଠାରେ ଖୁବ୍ ଗହଳି ରହୁଥିଲା । ବାଁ ପଟରୁ ଡାହାଣ ପଟକୁ ଏବଂ ଡାହାଣ ପଟରୁ ବାଁ ପଟକୁ, ସକାଳୁ ରାତିର ଶେଷ ପ୍ରହର ପର୍ଯ୍ୟନ୍ତ ବସ୍ ଆସୁଥିଲା, ଅଟକୁଥିଲା । ଯାତ୍ରୀ ଚଢ଼ୁଥିଲେ, ଓହ୍ଲାଉଥିଲେ । କୁକୁର ଦଳଟା ରାତିସାରା ଅଇଁଠାପତ୍ର ଖାଇବାପାଇଁ ନିଜ ନିଜ ଭିତରେ ଝଗଡ଼ା ଲଗି ଭୁକୁଥିଲେ ଏବଂ ଯାତ୍ରୀମାନଙ୍କୁ ବିରକ୍ତ କରି ପକାଉଥିଲେ । ନୃସିଂହ ଗୁଡ଼ିଆର ଚା' ଓ ଜଳଖିଆ ଦୋକାନରୁ ସାରା ରାତି ଗ୍ରାମଫୋନ ବାଜୁଥିଲା । ଅନ୍ଧ ନରୋତ୍ତମ ମୀରା ଭଜନ ଗାଇ, ଖଞ୍ଜଣୀ ବଜାଇ ନିଜ ଗୁଜୁରାଣ ପାଇଁ ଯଥେଷ୍ଟ ଉପାର୍ଜନ କରି ପାରୁଥିଲା । ପାଗଳ ହରିଆର ଦସ୍ତୁମାସ୍ତି ବେଶ ମଧ୍ୟ ତାଙ୍କୁ ଯଥେଷ୍ଟ ସାହାଯ୍ୟ କରୁଥିଲା । ଅନେକ ଦୟାଳୁ ଯାତ୍ରୀ, ତା' ହାତରେ ଜୋର କରି ପଇସା ଗୁଞ୍ଜି ଦେଉଥିଲେ । ତା'ପରେ ସେବତି ନିଜ ସାତ ମାସର ଛୁଆଟାକୁ କାନ୍ଧରେ ପକାଇ ବାବୁମାନଙ୍କ ସମ୍ମୁଖରେ ହାତ ପାତି ନିଜ ଆବଶ୍ୟକତା ଦୂର କରିପାରୁଥିଲା । ସବୁକିଛି ଏକ ସରଳରେଖା ପରି ଗତି କରୁଥିଲା ଏବଂ ସେମାନେ ନିଜର ସେହି କ୍ଷୁଦ୍ର ପରିଧି ମଧ୍ୟରେ ଅତି ନିଶ୍ଚିନ୍ତ ଥିଲେ ।

କିନ୍ତୁ ମାସେ ହେଲା ବସ୍‌ଷ୍ଟାଣ୍ଡଟା ମାଇଲିଏ ଦୂରକୁ ଉଠିଗଲା ପରେ ଏଠି ଆଉ ଗହଳି ନାହିଁ, ଆଉ ଲୋକ ନାହିଁ ଏବଂ ବିଶେଷକରି ଜୀବନ ହିଁ ନାହିଁ ।

ସବୁକିଛି ଚାଲିଯାଇଛି । ଖୁବ୍ ଜୋରରେ ଏକ ଝଡ଼ ଆସିଛି ଏବଂ ଉକ୍ତ ସ୍ଥାନର ସମସ୍ତ ଜୀବନ୍ତ ବସ୍ତୁକୁ ଉଡ଼େଇ ନେଇ ଚାଲିଯାଇଛି । ସ୍ଥାନ ଯେପରି ମୃତ । ସବୁ ଯେପରି ମୃତ । କେବଳ ନିସ୍ତବ୍ଧତା ।

ଗତ ସାତ ଆଠ ଦିନ ହେଲା ଖିପଣ ଅଣ୍ଡା ପଡ଼ିଛି । ସରକାର ଯାତ୍ରୀଙ୍କ ସୁବିଧା ପାଇଁ ଓ ନିଜ ସୁବିଧା ମଧ୍ୟରେ ନୂଆ ବସ୍‌ଷ୍ଟାଣ୍ଡ କଲେ । ସମସ୍ତେ ଆନନ୍ଦିତ ହେଲେ । ଯେଉଁଦିନ ସହରର ଉକ୍ତ ନୂତନ ବସ୍‌ଷ୍ଟାଣ୍ଡ ମଧ୍ୟରେ ଉଦ୍‌ଘାଟିତ ହେଲା । କିନ୍ତୁ ଅନ୍ଧ ନରୋତ୍ତମ, ପାଗଳ ହରିଆ, ଯୁବତୀ ସେବତୀ ଓ କୁକୁର ଦଳଟି ଆନନ୍ଦିତ ହୋଇ ପାରିଲେ ନାହିଁ । ଏମାନଙ୍କ ବ୍ୟତୀତ ବାକି ପ୍ରତ୍ୟେକ ଆନନ୍ଦିତ ହେଲେ । ଏଠି ପୂର୍ବେ ଦୋକାନ କରିଥିବା ଦୋକାନୀଙ୍କୁ ସେଠି ଘର ଦିଆଗଲା । ସେମାନେ ପକ୍‌କା ଘର ଓ ସହର ଭିତରେ ରହି ଆନନ୍ଦିତ ହେଲେ । ଦୁଃଖିତ ହେଲେ କେବଳ ଏଇ ତିନିଜଣ ମଣିଷ ଓ କୁକୁର ଦଳ ।

ପ୍ରଥମେ ଏଇଠି ପୁରୁଣା ବସ୍‌ଷ୍ଟାଣ୍ଡ ଥିଲା । ଧିରେ ଧିରେ ମାଇଲିଏ ଦୂରରେ ନୂଆ ଶିଳ୍ପାଞ୍ଚଳ ଗଢ଼ି ଉଠିଲା । ଶହ ଶହ ଲୋକ, ମଜୁରିଆ ଆସିଲେ । ଧିରେ ଧିରେ ସହରଟି ଜୀବନ ପାଇଲା । ବସ୍‌ଷ୍ଟାଣ୍ଡଟି କିନ୍ତୁ ଏତେଦିନ ଧରି ସହର ମଧ୍ୟକୁ ଯାଇ ନ ଥିଲା । ସହରବାସୀଙ୍କ ଦାବି ଯୋଗୁଁ ଠିକ୍ ମାସକ ତଳେ ବସ୍‌ଷ୍ଟାଣ୍ଡ ଉଠିଗଲା, ପଛରେ ନିଜର ସ୍ମୃତି ଛାଡ଼ିଦେଇ ଏବଂ ଦୀର୍ଘ ତିରିଶ ଦିନ ମଧ୍ୟରେ ଏଇ ତିନିଜଣ କ୍ଷୁଦ୍ର ମାନବ ଉକ୍ତ ପରିତ୍ୟକ୍ତ ଧ୍ୱଂସାବଶେଷ ମଧ୍ୟରୁ ନିଜର ସ୍ଥିତି ଖୋଜି ଖୋଜି କ୍ଳାନ୍ତ ହୋଇ ପଡ଼ିଥିଲେ ।

ନୂଆ ବସ୍‌ଷ୍ଟାଣ୍ଡ ଉଠିଗଲା ସଙ୍ଗେ ସଙ୍ଗେ ଏମାନେ ମଧ୍ୟ ଉଠି ଯାଇଥିଲେ । କିନ୍ତୁ ନୂଆ ସ୍ଥାନର ପୁରାତନ ବ୍ୟକ୍ତିମାନେ ତାଙ୍କୁ ରହିବାକୁ ଦେଲେନାହିଁ । ଅନେକ ପୂର୍ବରୁ ସେଠାକାର ସ୍ଥାୟୀ ଭିକାରୀମାନେ ନୂଆ ବସ୍‌ଷ୍ଟାଣ୍ଡରେ ନିଜର ସ୍ଥିତି ବେଶ୍ ଦୃଢ଼ କରି ନେଇଥିଲେ ଏବଂ ସହରର ଗଳିକନ୍ଦିରେ ନିଜ ଆସନ ଦୃଢ଼ କରି ନେଇଥିଲେ ଦଳଦଳ ଭିକାରୀ । ତିନିଦିନ ବୁଲି ବୁଲି ଏମାନେ ପୁନର୍ବାର ଫେରି ଆସିଥିଲେ ନିଜ ପୂର୍ବ ସ୍ଥାନକୁ । ଏଠି ବସି କାନ୍ଦିହେବ । ଆପଣାର ଦୁଃଖ ଆଉ ଜଣକୁ କହିହେବ । କିନ୍ତୁ ସେଠି କେହି କାହାକୁ ଶୁଣିବା ପାଇଁ ପ୍ରସ୍ତୁତ ହିଁ ନୁହନ୍ତି ।

ଏମାନେ ଯେମିତି ଏକ ବିଚ୍ଛିନ୍ନ ଅଞ୍ଚଳର, ଏକ ବିଚ୍ଛିନ୍ନ ଦ୍ୱୀପର ଅଧିବାସୀ । କେହି ଚହ୍ନନ୍ତି ନାହିଁ ଏମାନଙ୍କୁ । ସହରରେ ଏମାନଙ୍କର ସ୍ଥିତି

ନାହିଁ ଏବଂ ଏଠି ସେମାନେ ଯେପରି ନିର୍ବାସିତ ବ୍ୟକ୍ତିମାନଙ୍କର ଏକ ଦଳ ଶାସ୍ତି ପାଉଛନ୍ତି । କୌଣସି ଏକ ଅଜାଣତରେ କରିଥିବା ଅପରାଧ ପାଇଁ ।

ଆଜିକାଲି ଆଉ ଏ ବାଟରେ ଗାଡ଼ି କମ୍ପାନୀ ଲୋକ ଯିବା ଆସିବା କରୁନାହାନ୍ତି । ଏକଦା ଏଠାରେ କିଛି ଗୋଟାଏ ଥିଲି, ତା' ସେ ଯେମିତି ସହରବାସୀ ଭୁଲିଗଲେଣି । ଚବିଶ ଘଣ୍ଟା କେବଳ ଏକ ନୀରବତା···ଅସମ୍ଭବ ନୀରବତା, ଯାହା ଧିରେ ଧିରେ ଅସହ୍ୟ ହୋଇଉଠେ ।

ନୃସିଂହ ଗୁଡ଼ିଆର ପରିତ୍ୟକ୍ତ ଦୋକାନ ଭିତରେ ଚତୁର୍ଦ୍ଦିଗର ନିସ୍ତବ୍ଧତା ଓ ଶୂନ୍ୟତାକୁ ଜୀବନର ଏକ ଆବଶ୍ୟକ ଅଙ୍ଗ ରୂପେ ଗ୍ରହଣ କରି ଏମାନେ ରାତି ଅତିବାହିତ କରୁଥିଲେ ।

ଟ୍ରକଟାଏ ଦୂର ନୂଆ ରାସ୍ତାରେ ସହର ଭିତରକୁ ଚାଲିଗଲା । ସେବତୀ ନିଆଁ ନିକଟକୁ ସାମାନ୍ୟ ଘୁଞ୍ଚିଗଲା । ଆଜି ଖୁବ୍ ଥଣ୍ଡା । ନିଜ ଦେହଟା ତାକୁ ନିଜକୁ କେମିତି ଖାଲି ଖାଲି ଲାଗିଲା । ଥଣ୍ଡା ରାତିରେ ତାକୁ ସବୁବେଳେ ଏଇପରି ଖାଲି ଖାଲି ଲାଗେ ।

ରାସ୍ତାଟା ଶୋଇପଡ଼ିଛି କ୍ଳାନ୍ତ ହୋଇ । ଚତୁର୍ଦ୍ଦିଗରେ ନିବିଡ଼ ଅନ୍ଧକାର । ସାମ୍ନାରେ ଏକ ପୁରୁଣା ସାଇକେଲ ଟାୟାର ପୋଡ଼ା ହେଉଥିବାର ନିଆଁ ଏବଂ ପୋଡ଼ା ରବରର ଉତ୍କଟ ଅସହ୍ୟ ଗନ୍ଧ । ପାଗଳ ହରିଆ କେଉଁଠି ରୁ ନେଇ ଆସିଥିଲା ସକାଳେ । ସେବତୀ ଦୁଇ ପାପୁଲିକୁ ନିଆଁ ଉପରେ ରଖି ଗରମ କରି, ନିଜ ଥଣ୍ଡା ମୁହଁରେ ଘସିଦେଲା । ପାପୁଲି ଯୋଡ଼ାକ ମୁହଁର ସବୁ ଥଣ୍ଡା ଶୋଷି ନେଇ ମୁହଁକୁ ସମସ୍ତ ଉଷ୍ଣତା ଦେଇଦେଲେ । ଛିଣ୍ଡା ଶାଢ଼ୀଟାକୁ ନିଜ ମାଂସଳ ଦେହରେ ଗୁଡ଼ାଇ ନିଆଁ ନିକଟକୁ ସମ୍ପୂର୍ଣ୍ଣ ଘୁଞ୍ଚିଗଲା ସେ । ପାଗଳ ହରିଆଟା ଦୁଇ ଆଖି ବଡ଼ ବଡ଼ କରି ଜଳନ୍ତା ନିଆଁକୁ ନିର୍ନିମେଷ ନୟନରେ ଅନେଇ ରହିଛି । ସେବତୀ ଡରିଗଲା । ସେଦିନ ଅନ୍ଧାର ରାତିରେ ଓ ତା' ପରେ ପରେ ସବୁଦିନ ରାତିରେ କାଠ କେବିନ ତଳେ କିଏ ଯେ ତାକୁ ଜାବୁଡ଼ି ଧରେ, କିଏ ଜାଣେ, ନରୋତ୍ତମ ନା ଏ ହରିଆ । ନରୋତ୍ତମଟା ବୁଢ଼ା ହୋଇଗଲାଣି । ମୁହଁରେ କେଜାଏ ଦାଢ଼ି । ଅଧା ଧଳା ହୋଇଗଲାଣି । ଆଉ ହରିଆ ! ସମସ୍ତେ ପାଗଳ କୁହନ୍ତି । କିନ୍ତୁ ଗୋରା ଦକ୍‌ଦକ୍ ଚେହେରା । ବୟସ ଅଠେଇଶ ହେବ କି ନାହିଁ । ସେବତୀର ଇଚ୍ଛା ହେଲା ହରିଆ ନିକଟକୁ ଘୁଞ୍ଚିଯିବ । ଏ ଥଣ୍ଡା ରାତିରେ ତାକୁ ଭାରି ଖାଲି ଖାଲି ଲାଗେ । ଏ ନିଆଁ କଅଣ ଦେହର ଥଣ୍ଡାକୁ ଦୂର କରିପାରୁଛି ? ସେ ହରିଆର ଦୁଇ ଶକ୍ତ ବାହୁକୁ ଲକ୍ଷ୍ୟକଲା । ଏଇ ଦୁଇ ବାହୁର ବନ୍ଧନ ମଧ୍ୟରେ ତା' ଶରୀର ଯଦି ପେଶି ହୋଇ ଯାଆନ୍ତା··· ! କିନ୍ତୁ ପାଗଳଟା ଯଦି··· । ସେ ପୁନର୍ବାର ଡରିଗଲା ।

"ଓ଼ ! ଆଜି ବଡ଼ ଥଣ୍ଡା ।" ନରୋତ୍ତମ ଉଠି ପଡ଼ିଲା । ଝଞ୍ଜାଣିଚା ଛଲେ ପଡ଼ି ଝଁଣ୍‌କରି ଶବ୍ଦ ହେଲା ।

ସେବତୀ କିଛି କହିଲା ନାହିଁ । ହରିଆ ହାତରେ ଧରିଥିବା ଛିଣ୍ଡା ଖବର-କାଗଜ ଓ କାଠଖଣ୍ଡ ନିଆଁ ମଧ୍ୟକୁ ଫିଙ୍ଗିଦେଲା । ନରୋତ୍ତମ କିଛିକ୍ଷଣ ନୀରବ ରହି ମନକୁମନ କହିଲା—"ସମସ୍ତେ ଶୋଇପଡ଼ିଲେ ବୋଧେ ।"

"ତୋତେ ଆଜି ନିଦ ହେଉନାହିଁ କରେ ?" ସେବତୀ ପଚାରିଲା । ତାକୁ ମଧ୍ୟ ଆଜି ନିଦ ହେଉନି । ରାତିରେ ନିଦ ନ ହେଲେ ପଛ କଥାଗୁଡ଼ାକ ଭାରି ମନେପଡ଼େ । ଭାବିଲା, ହୁଏତ କଥାବାର୍ତ୍ତା କଲେ ମନଟା ବଦଳିଯିବ ।

"କାଲେ, ତୁ ବି ଶୋଇନାହୁଁ ?" ନରୋତ୍ତମ ହାଇମାରି ଅଳସ ଭାଙ୍ଗିଲା ।

ସେବତୀ ମୁଣ୍ଡ ହଲାଇ ସ୍ୱୀକାର କଲା ନୀରବରେ ।

ନରୋତ୍ତମର ଅନ୍ଧ ଆଖି ଭିତର ପରଦାରେ ଏକ ସାତ ମାସର ଶିଶୁ ନାଚଉଠି ତା' ଆଡ଼କୁ ହାତ ବଢ଼େଇ ହସି ଉଠିଲା । ସେ ଦୀର୍ଘଶ୍ୱାସ ତ୍ୟାଗକରି ଶୂନ୍ୟକୁ ନିରୁଦ୍ଦିଷ୍ଟ ଭାବେ ଲକ୍ଷ୍ୟକଲା । ପାଞ୍ଚଦିନ ହେବ ସେବତୀର ସାତ ମାସର ଛୁଆଟା ଥଣ୍ଡାରେ ଖାଇବାକୁ ନ ପାଇ ମରିଗଲା । ସେବତୀର ଏକମାତ୍ର ସାହାଭରସା । ବସ୍ତ୍ରଷ୍ଟାଣ୍ଡ ଉଠିଯିବାର ମାତ୍ର କେତୋଟା ଦିନ ମଧ୍ୟରେ ଖାଇବାକୁ ନ ପାଇ ବିଚରା ମରିଗଲା । ସେବତୀ, ପାଗଳ ହରିଆ ବା ସେ କେହି ତାକୁ ବଞ୍ଚେଇ ପାରିଲେ ନାହିଁ । ରାତିରେ ମା' ପାଖରେ ଶୋଇଥିଲା । ସକାଳୁ କାଠ ।

ଟାୟାରର ନିଆଁଟା ଲିଭି ଲିଭି ଆସୁଛି । ହରିଆ ପଛପଟେ ଥିବା ଶୁଖିଲା ପତ୍ରମାନଙ୍କୁ ନିଆଁ ଉପରେ ରଖିଦେଲା । ନିଆଁଟା ଫନ୍‌କରି ପୁନର୍ବାର ଜଳି ଉଠିଲା ।

ବାହାରେ ଯେମିତି ବରଫ ପଡ଼ୁଛି । ଗତ ଦଶ ବର୍ଷ ଧରି ଏତେ ଶୀତ ଆଜି ପର୍ଯ୍ୟନ୍ତ କେବେ ପଡ଼ି ନ ଥିଲା । ଏଇବର୍ଷ ହିଁ ଏତେ ଶୀତ ହେବାର ଥିଲା । ଏଇବର୍ଷ ହିଁ ବସ୍ତ୍ରଷ୍ଟାଣ୍ଡ ଏମାନଙ୍କୁ ଅନାଥ, ବେସାହାରା କରି ସହରକୁ ଉଠି ଯିବାର ଥିଲା ଏବଂ ଏଇବର୍ଷ ହିଁ ସେବତୀର ଛୁଆ ହେବାର ଥିଲା ।

ହରିଆ ଭାବୁଥିଲା, ତାକୁ ସମସ୍ତେ ପାଗଳ କାହିଁକି କୁହନ୍ତି ? ସତରେ କଅଣ ସେ ପାଗଳ ? ସତ କଥାକୁ ଠେକ୍‌ଠୋକ୍ କହିଲେ ଦୁନିଆ କୁହେ ପାଗଳ । ସେଇ ପାଗଳ ଭାବୁଥିଲା, ଛୁଆଟା ତା'ର ନୁହେଁ ତ ? ସେଦିନ କାଠ

କେବଳ ତଳେ ହଠାତ୍ ତା' ଶରୀରରେ ଯେଉଁ ଉତ୍ତେଜନାର ଜୁଆର ଉଠିଥିଲା ଏବଂ ଅନ୍ଧାରରେ, ତା' ଅତି ନିକଟରେ ଶୋଇଥିବା ଯୁବତୀ ସେବତୀ ମାଧ୍ୟମରେ ଯାହା ଭିତରର ତରଙ୍ଗ ପରି ଦୂରେଇ ଯାଇଥିଲା, ତା'ର ପରିଣାମ ଉକ୍ତ ସନ୍ତାନଟି ନୁହେଁ ତ ? ପରକ୍ଷଣରେ ସେ ହସିଲା, ନା···ଅସମ୍ଭବ । ଥରକରେ ଏଇଟା କିଅଣ କେବେ ସମ୍ଭବ ହୋଇପାରେ ? ସେ ହିସାବ କଲା । ସେ ବାବୁ ସହିତ ସେବତୀ ସେଇ ମାସରେ ତ ଚାଲି ଯାଇଥିଲା । କାଠ କେବିନ ତଳ ଘଟଣାର ମାତ୍ର ଚାରିଦିନ ପରେ । ସେ ସେବତୀକୁ କଟମଟ କରି ଚାହିଁଲା ।

ଅନେକ ଦିନ ପର୍ଯ୍ୟନ୍ତ ସେବତୀର ଧାରଣା ଥିଲା ସେ ବାବୁ ନିଶ୍ଚୟ ଫେରିବ । କିନ୍ତୁ ବାବୁ ଫେରିଲା ନାହିଁ । ଦିନେରୁ ମାସେ, ମାସେରୁ ବର୍ଷେ ବିତିଗଲା । ଏକ ମଣିଷ ଜନ୍ମ ହୋଇ ମରିଗଲା । କିନ୍ତୁ ବାବୁ ଫେରିଲା ନାହିଁ ।

ଚକ୍‌ଚକ୍ ନୂଆ ଗାଡ଼ିରେ ସେବତୀକୁ ଯାଉଥିବାର ଦେଖି ସେ ପ୍ରଥମେ ଆଶ୍ଚର୍ଯ୍ୟ ହୋଇଥିଲା ଏବଂ ସେବତୀର ପ୍ରସ୍ଥାନ ପରେ ତାକୁ କେମିତି ଏକ ଖାପଛଡ଼ା ଲାଗିଥିଲା ତା' ଦୃଷ୍ଟିଶକ୍ତି ମଧ୍ୟରେ ଥିବା ପୃଥିବୀର ପ୍ରତ୍ୟେକ ବସ୍ତୁ । ଏପରିକି ଗୋଲାପ ଫୁଲ ମଧ୍ୟ ତାକୁ ସୁଗନ୍ଧବିହୀନ ପରି ମନେ ହୋଇଥିଲା । ତଥାପି ସେ ବଞ୍ଚିଥିଲା ଏବଂ ତିନିଦିନ ପରେ ସେବତୀ ଫେରିଥିଲା ଏକ ନୂତନ ରୂପରେ । ଦେହଟା ତା'ର ଏତେ ଗୋରା, ତା' ଦେହରେ ଏତେ ଯୌବନ । ହିରଆ କେବେ ଅନୁଭବ କରିପାରି ନ ଥିଲା ପୂର୍ବରୁ, ଏପରିକି ସେଦିନ କାଠ କେବିନ ତଳ ଅନ୍ଧାର ମଧ୍ୟରେ ବି ନୁହେଁ ।

ଫେରିବା ସଙ୍ଗେ ସଙ୍ଗେ ସେ ହିରଆକୁ ହସି ହସି କହିଥିଲା, "ଜାଣିଲୁ ହିରଆ, ମୁଁ ସହର ଚାଲିଯିବି । ଜଣେ ବାବୁ ମୋତେ ନେଇଯିବେ । ସେ ଏ କାରଖାନାର ଜଣେ ବଡ଼ ଅଫିସର । ସେ ଫେରି ମୋତେ ତାଙ୍କ ଘରକୁ ନେଇଯିବେ । ସାତଦିନ ଭିତରେ ମୁଁ ଏଠୁ ଚାଲିଯିବିରେ ହିରଆ ।"

ସେ ଉତ୍ତରରେ ହସିଥିଲା, "କେହି ଆସିବେନି ସେବତୀ, କେହି ଆସିବେନି ।"

ସେବତୀ ବାଜି ମାରିଥିଲା, "ଦେଖିବୁ ରହିଥା ।"

ବାଜିମାରି ଜିତେ ହାରିଗଲା ସେବତୀ । ସାତ ଦିନରୁ ସାତ ମାସ ଅତିବାହିତ ହୋଇଗଲା । ହେଲେ ବାବୁ ଫେରିଲା ନାହିଁ । ପ୍ରଥମେ ତାକୁ ଖୁବ୍ ଦୁଃଖ ଲାଗିଥିଲା । ଆଶା ଓ କଳ୍ପନା ହଠାତ୍ ଭାଙ୍ଗିଗଲେ ମନରେ ଯେଉଁ

ଆଘାତର ଚହ୍ନ ରହିଯାଏ, ତାହା ଏତେ ସହଜରେ ଦୂର ହୋଇ ପାରେନ । ତଥାପି ସେବତି ନଜକୁ ଧିରେ ଧିରେ ଆସ୍ୱସ୍ତ କରନେଲ ।

"ପାଣି ଗିଲସେ ଦେବୁ ସେବତି ।" ନରୋତ୍ତମ କହିଲ ।

ହରିଆ ଆଖି ବଡ଼ବଡ଼ କର ତାକୁ ଚାହିଁଲ । ସେବତି ପୁନର୍ବାର ଡରଗଲ । ଆଜ ଏ ହରିଆ ଏମିତ ଆଖିରେ କାହିଁକ ଚାହୁଁଛ ?

"ପାଣି କାହିଁ ? ଆଜ ତ କଳରେ ପାଣି ବ ଅସିନ ।" ସେବତି ହରିଆ ଉପରୁ ଆଖି ଫେରାଇ ନରୋତ୍ତମକୁ ଅନେଇଲା, "ଏ ଅଣ୍ଡାରେ ଖାଲି ପାଣି ପିଇ ମରିବୁ ନା କଅଣ ?"

ନରୋତ୍ତମ ହସିଲ ଅତ ଉଦାସ ଭାବେ । କହିଲ, "ବଡ଼ ଭୋକ ହେଉଛ ଲେ ।"

"ଭୋକ ! ଏଇ ଭୋକ ପାଇଁ ମଣିଷ ଚୋରି କରେ । ପେଟର ଜ୍ୱାଳା ସହି ହୁଏନ । ଏଇ ପେଟ ପାଇଁ ମୁଁ ପାଗଳ, ତୁ ଅନ୍ଧ ଏବଂ ଏ ସେବତି··· ।" ହରିଆ ଅଟକଗଲ ହଠାତ୍ । ସେବତି କେମିତକା ଏକ ଆଖିରେ ତାକୁ ଅନେଇ ରହିଛ ।

"ଏଥର ଆମେ କରିବା କଅଣ ହରିଆ ? ସହରରେ ତ ଆମ ପାଇଁ ସ୍ଥାନ ନାହିଁ । ଏଠି ତ ଲୋକ ନାହାନ୍ତି । ଆମେ ଖାଇବା କେମିତ ?" ନରୋତ୍ତମ କଥାଁ କଣ୍ଠକୁ ଘୁଞ୍ଚି ଆସିଲ ।

"ଭଗବାନ ଭରସା ।" ଦୀର୍ଘଶ୍ୱାସ ତ୍ୟାଗ କର ସେବତି ଆଉଥରେ ଦୁଇ ହାତ ପାପୁଲକୁ ଗରମ କର ମୁହଁରେ ଘସିଲ ।

ପାଗଳ ହରିଆ ହସିଲ, "ଭଗବାନ···କାହିଁ ଭଗବାନ ? ତୁ ଦେଖିଛୁ ସେବତି ତୁ ବ ଶୁଣିଛୁ ନରୋତ୍ତମ··ଅମର ଚକ୍ରବର୍ତ୍ତୀ ଏଇଠି ଭଗବାନଙ୍କୁ ଡାକ ଡାକ ମରଗଲ । କେହି ଶୁଣିଲେ ନାହିଁ । ତୋ ପରି ମୋ ପରି ଭୋକରେ ଖାଲି ପେଟରେ ପାଣି ପିଇ ଛଟପଟ ହୋଇ ଏଇଠି ଆମର ଆଖି ଆଗରେ ମଲ । କାହାର କଅଣ କ୍ଷତ ହେଲ ? ପୃଥିବୀରେ କେହି ତା' ଅଭାବ ଉପଲବ୍ଧି କଲେ ?" ଶେଷ ବେଳକୁ ତା' ଆଖିଦୁଇଟି ଲଲ୍ ହୋଇ ଯେମିତ ଜଳ ଉଠିଲ ଉତ୍ତେଜନାରେ ।

ସେବତି କଥାଁ ଭିତରକୁ ଲକ୍ଷ୍ୟକଲ । ଟାୟାରଟା ଜଳ ଯାଉଛ । ଗୋଲ ତାର ଦୁଇଟା ତଳେ ପଡ଼ିଛ । କାଠ ଖଣ୍ଡଟା ଜଳୁଛ । ବାତାବରଣରେ

ଉବର ଘୋଡ଼ାର ଉତ୍କଟ ଗନ୍ଧ । ସେବତୀ ଆଖିରେ ଅମର ଚକ୍ରବର୍ତ୍ତୀ ବା ଅମର ବାବୁର ମୁହଁଟା ହଠାତ୍ ଭାସି ଉଠିଲା ।

ବସ୍‌ଷ୍ଟାଣ୍ଡ ଉଠିଯିବାର ପୂର୍ବଦିନ । ଦୋକାନ ବଜାର ସବୁ ଉଠି ଯାଇଥାଏ ପ୍ରାୟ ସପ୍ତାହକ ତଳେ । ଯାତ୍ରୀମାନେ ଆଉ ନରୋତ୍ତମର ଝଞ୍ଜଣି ଶବ୍ଦ ଶୁଣିବାପାଇଁ ପସନ୍ଦ କରୁ ନ ଥିଲେ । ଅତ୍ୟଧିକ ଥଣ୍ଡା ଯୋଗୁଁ ଯାତ୍ରୀମାନେ ବସ୍ ଭିତରେ ଶାଲ୍ ଘୋଡ଼ାଇ ହୋଇ ବସି ରହିବାକୁ ଭଲ ପାଉଥିଲେ । ବସ୍ ଆସୁଥିଲା, ଯାଉଥିଲା । କିନ୍ତୁ କେହି ଜାଣିପାରୁ ନ ଥିଲେ । ପ୍ରତ୍ୟେକ ମୁହୂର୍ତ୍ତ ଯେପରି ଏକ ଅସମ୍ଭବ ସ୍ଥିରତା ମଧ୍ୟ ଦେଇ ଗତି କରୁଥିଲା । କୋଳାହଳହୀନ ଉକ୍ତ ବାତାବରଣରେ ବ୍ୟାପି ଯାଇଥିଲା ଏକ ଅସମ୍ଭବ ନିସ୍ତବ୍ଧତା । ଠିକ୍ ଏଇପରି ଏକ ଦିନରେ ଅମର ବାବୁ ଆସି ପହଞ୍ଚିଥିଲେ । ଟ୍ରେନ୍‌ଟା ଅଟକି ଯାଇଥିଲା ଏବଂ ଏକ ଅଶାନ୍ତ ଆତ୍ମା ପରି ସେ ଓହ୍ଲାଇ ପଡ଼ିଥିଲେ । ଛିଣ୍ଡା ତାଳପକା ପ୍ୟାଣ୍ଟ ଓ ଝଣ୍ଡେ ମଇଳା ଚଦ୍‌ର ଗଞ୍ଜି ଥିଲା ତାଙ୍କର ପରିଧାନ ।

ପାଣିକଳରେ ମୁହଁ ଲଗାଇ ସେ ପାଣି ପିଇଥିଲେ ଏବଂ ଏ ଶୂନ୍ୟ ଅଭିଶପ୍ତ ବସ୍ ଷ୍ଟାଣ୍ଡକୁ ଥରେ ଲକ୍ଷ୍ୟ କରିଥିଲେ ବିହଙ୍ଗମ ଦୃଷ୍ଟିରେ । ହରିଆକୁ ଦେଖିଥିଲେ, ଅନ୍ଧ ନରୋତ୍ତମକୁ ଦେଖିଥିଲେ ଏବଂ ଦେଖିଥିଲେ ଯୁବତୀ ସେବତୀକୁ ।

"ମୋତେ କିଛି ଖାଇବାକୁ ଦେଇ ପାରିବ ତୁମେମାନେ ?" ଅମର ବାବୁ ହଠାତ୍ ପ୍ରଶ୍ନ କରିଥିଲେ ।

ସେବତୀ ଆଶ୍ଚର୍ଯ୍ୟ ହୋଇଥିଲା । ଆଜି ପ୍ରଥମ ଥର ପାଇଁ ଜଣେ କେହି ବାବୁ ଏକ ଭିକାରିକୁ ଖାଇବାପାଇଁ ମାଗୁଥିବାର ଦେଖି । ସେ ଅସ୍ପଷ୍ଟ ସ୍ୱରରେ କହିଥିଲା, "ବାବୁ, ଆମେ ଭିକାରି ।"

ଆଜି ଯେମିତି ହରିଆ ହସୁଛି, ଠିକ୍ ସେଇମିତି ଅମର ବାବୁ ହସିଥିଲେ । କହିଥିଲେ, "ଆମେ ସମସ୍ତେ ଭିକାରି ଭଉଣୀ । ଏ ବିରାଟ ପୃଥିବୀର ପ୍ରତ୍ୟେକ ମଣିଷ ଭିକାରି । କେବଳ ଏଇ ପେଟ ପାଇଁ ଅନ୍ୟମାନଙ୍କ ସମ୍ମୁଖରେ ପ୍ରତ୍ୟେକଙ୍କୁ ହାତ ପତାଇବାକୁ ପଡ଼ୁଛି ।"

ଖାଇବା ପୂର୍ବରୁ ଅମର ବାବୁ ହସି ହସି, ଆଖିରେ ଲୁହ ଭରି ବାଷ୍ପାରୁଦ୍ଧ କଣ୍ଠରେ କହିଥିଲେ, "ଜାଣ, ମୁଁ ନଅଦିନ ହେଲା କିଛି ଖାଇନି । ଖାଲି ପାଣି ପିଉଛି । ଆଜି ନଅଦିନ ପରେ ତୁମମାନଙ୍କ ଦୟାରୁ··· ।"

ସେବନ୍ତୀ ପ୍ରଶ୍ନ କରିଥିଲା, "ବାବୁ, ତମେ ଇଆଡ଼େ କେଉଁ ଉପାୟରେ ଏମିତି କାହିଁକି ବୁଲୁଛ ? ତମର କଅଣ କେହି ନାହାନ୍ତି ?"

"ଅଛନ୍ତି । ସମସ୍ତେ ଅଛନ୍ତି । ଏକ···ଦୁଇ···ତିନି···ଚାରି ଏଇପରି ସର୍ବମୋଟ ଏଗାର ଜଣ ଅଛନ୍ତି ମୋ ପରିବାରଟିରେ ଏବଂ ଅର୍ଜନକ୍ଷମ ବ୍ୟକ୍ତି ମୁଁ ଏକା । ମଜାକଥା କଅଣ ଜାଣିଛ···?" ଅମର ବାବୁ ପୁଣି ଥରେ ଅସ୍ୱାଭାବିକ ଭାବେ ହସିଥିଲେ । "ମୁଁ ଆଠମାସ ହେଲା ବେକାର । ପ୍ରଥମେ ଯେଉଁଠି ଥିଲି, ସେ ମିଲ୍ ବନ୍ଦ ହୋଇଗଲା । ତା'ପରେ ଆଜି ପର୍ଯ୍ୟନ୍ତ କେବଳ କାମ ହିଁ ଖୋଜୁଛି । ଆଠମାସ ହେଲା ଘରକୁ ଯାଇନି । ସେମାନଙ୍କ ଖବର ମଧ୍ୟ ରଖିନି ।" ତାଙ୍କ ସ୍ୱରଟା ଭାରି ହୋଇ ଆସୁଥିଲା ।

ହରିଆ ଚିତ୍କାର କରିଥିଲା, "ସ୍ୱାର୍ଥପର·· ତୁମେ ନିହାତି ସ୍ୱାର୍ଥପର ।"

"ମୁଁ ସ୍ୱାର୍ଥପର ନୁହେଁ ଭାଇ । ଆଜି ମଧ୍ୟ ରୁଟି ଟୁକୁଡ଼ାଏ ପାଟିକୁ ନେଲା-ବେଳେ ମୋ ଆଖି ସମ୍ମୁଖରେ ଏଗାର ଜଣ ଲୋକଙ୍କ ବିକଳ, କରୁଣ ଚାହାଣି ମୂର୍ତ୍ତ ରୂପେ ନାଚି ଉଠୁଛି । କିନ୍ତୁ ମୁଁ କଅଣ କରିବି ? ମୁଁ ବଞ୍ଚିଲେ ତ ଚେଷ୍ଟା କରିବି । ଆଉ ମୁଁ ଯଦି ମରିଯାଏ ।" ହସିଥିଲେ ସେ, "ଚାକିରି ପାଇଁ ଘର ଛାଡ଼ିଲି । ଘର ଗଲା କିନ୍ତୁ ଚାକିରି ମିଳିଲା ନାହିଁ । ଜାତି ଗଲା କିନ୍ତୁ ପେଟ ପୂରିଲା ନାହିଁ । ବେଶ୍ୟା ତାଲିକାରେ ନାଁ ଲେଖାଇଲି···ହେଲେ ବେଶ୍ୟା ହୋଇ ପାରିଲି ନାହିଁ । ସେଇଟା ହିଁ ମୋର ଏକମାତ୍ର ଦୁଃଖ ।" ସେ ଶେଷ ବେଳକୁ କାନ୍ଦି ଉଠିଥିଲେ ।

ଅନ୍ଧ ନରୋତ୍ତମ ଖଞ୍ଜଣି ବଜାଇବା ବନ୍ଦ କରି ଗାଉଥିଲା, "ମୀରା କେ ପ୍ରଭୁ ଗିରିଧର ଗୋପାଳ··· ।"

"ମୁଁ ଆଉ କଅଣ କରିବି ? ମୋ ସମ୍ମୁଖରେ ଏକମାତ୍ର ପଥ—ଆତ୍ମ-ହତ୍ୟା । ଆତ୍ମହତ୍ୟା କଲେ ହୁଏତ ମୁଁ ମୁକ୍ତି ପାଇଯିବି ।"

ହରିଆ ପୁନର୍ବାର ଚିତ୍କାର କରିଥିଲା, "ତୁମେ ଏକ ନିର୍ବୋଧ ବ୍ୟକ୍ତି । ଆତ୍ମହତ୍ୟାରେ ମୁକ୍ତି ନ ଥାଏ । ବରଂ ଆତ୍ମା ଅଭିଶପ୍ତ ହୋଇଉଠେ ।"

"ତୁମେ ଠିକ୍ କହୁଛ । ନିର୍ବୋଧମାନେ ହିଁ ଆତ୍ମହତ୍ୟା କରନ୍ତି । ଏବଂ ମୁଁ ନିର୍ବୋଧ ନୁହେଁ । ସଂଘର୍ଷ ମଧ୍ୟରେ ଯା'ର ଜନ୍ମ, ସିଏ ସଂଘର୍ଷକୁ ଭୟ କରିବ କାହିଁକି ?" ଅମର ବାବୁ ପୁନର୍ବାର ହସିବା ଆରମ୍ଭ କରି ଦେଇଥିଲେ ଏବଂ ପାଗଳ ହରିଆଟା ମଧ୍ୟ ତାଙ୍କ ସହିତ ହସି ଚାଲିଥିଲା ।

"ଏ ସହରରେ ମଧ୍ୟ ମୋତେ ଚାକିରି ମିଳିଲା ନାହିଁ । ଆସନ୍ତାକାଲି ସକାଳୁ ଅନ୍ୟ ଏକ ସହରକୁ ଯିବି । ସେଠାରେ ମଧ୍ୟ ଚେଷ୍ଟା କରି ଦେଖିବି ।" ଅମର ବାବୁ ହରିଆକୁ କହୁଥିଲେ ।

ତା'ପରେ ସକାଳେ ତାଙ୍କ ଶବକୁ ଅନ୍ୟମାନଙ୍କ ସାହାଯ୍ୟରେ ଜଙ୍ଗଲ ମଧ୍ୟରେ ଫାଳି ଦେଇ ଆସିଥିଲା ହରିଆ । ଅମର ବାବୁ ସେଇଦିନ ରାତିରେ ମରି-ଯାଇଥିଲେ । ଏ ସହର ଛାଡ଼ି ସେ ଯେଉଁ ସହରକୁ ଗଲେ ସେଠାରେ ସେ ଏକ ସ୍ଥାୟୀ ଚାକିରି ପାଇ ପାରିଥିଲେ ଏବଂ ତାଙ୍କ ପରିବାରର ସଦସ୍ୟମାନେ ଆକାଶକୁ ଅନେଇ କାନ୍ଦୁଥିଲେ, "ବାପା, ଶୀଘ୍ର ଫେରିଆସ ।" ସେମାନେ ସ୍ୱପ୍ନରେ ସୁଦ୍ଧା କେବେ ଭାବିପାରି ନ ଥିବେ ଯେ ତାଙ୍କର ବାପା ଆଉ କେବେ ଫେରିବେ ନାହିଁ । ଅମର ବାବୁଙ୍କ ସ୍ତ୍ରୀ ମଧ୍ୟ ଜାଣିପାରି ନ ଥିବେ ଯେ ତାଙ୍କର ସ୍ୱାମୀ ଦୂର ବିଦେଶରେ ଭୋକ ଉପାସରେ ମୃତ୍ୟୁବରଣ କରିଛନ୍ତି । ସେ ନିଜର ମୃତ୍ୟୁ ପର୍ଯ୍ୟନ୍ତ ନିଜ ହାତର ଚୁଡ଼ି ଓ ସୀମନ୍ତର ସିନ୍ଦୂର ପାଇଁ ପ୍ରତିଦିନ ଭଗବାନଙ୍କୁ ପ୍ରାର୍ଥନା କରିବେ ଏବଂ ନିଜ ସ୍ୱାମୀଙ୍କ ଆଗମନକୁ ଅଧୀର ହୋଇ ପ୍ରତୀକ୍ଷା କରି ରହିବେ ।

ଯେଉଁଦିନ ସକାଳେ ଅମର ବାବୁ ମରିଗଲେ ସେଇଦିନ ବସ୍‌ଷ୍ଟାଣ୍ଡ ଛଡିଗଲା ସହର ଭିତରକୁ । ସେ ଦିନସାରା, ରାତିସାରା ସେମାନଙ୍କ ଆଖି କେବଳ ଅମର ବାବୁଙ୍କ ପାଇଁ ଛଳଛଳ ହୋଇ ଉଠିଥିଲା ।

ସେ ଘଟଣା ମାସେ ହୋଇଗଲାଣି । ସେବତୀର ସନ୍ତାନ ମରିଗଲା, ସେ ଘଟଣାକୁ ମଧ୍ୟ ପାଞ୍ଚଦିନ ହୋଇଗଲାଣି । ସେବତୀ କିନ୍ତୁ କୌଣସି କଥା ଭାବୁନି । ଅମର ବାବୁ ଠିକ୍ କହୁଥିଲେ, ଭାବି ଲାଭ କଅଣ ?

ଆଜି ପର୍ଯ୍ୟନ୍ତ ସେ ସେପରି ନିଜକଥା କେବେ ଭାବି ପାରିନି । ସେ ନିଜେ କେଉଁଠୁ ଆସିଲା, କିଏ ତାକୁ ସୃଷ୍ଟି କଲା, ତା' ଘର କେଉଁଠି କିଛି ବି ଜାଣିନି । ଜ୍ଞାନ ପାଇଲା ଦିନୁଁ ଚ୍ଛେଟା ହାଫିଜ୍ ଖାଁର ହାତ ଧରି ବୁଲୁଥିଲା । ତା'ପରେ ଦିନେ ଏଇ ବସଷ୍ଟାଣ୍ଡରେ ହାଫିଜ୍ ଖା ମରିଗଲା ଏବଂ ସେବତୀ ସ୍ୱାଧୀନ ହେଲା । ନିଜେ ସ୍ୱାଧୀନ ଭାବେ ନିଜ ପାଇଁ ସଂଘର୍ଷ କଲା ।

ଏଇଟା ସଂଘର୍ଷର ଦୁନିଆ । ନିଜର ସ୍ଥିତି ପାଇଁ ପ୍ରତ୍ୟେକ କେବଳ ସଂଘର୍ଷ ହିଁ କରି ଚାଲିଛନ୍ତି । ସହରର ଭିକାରୀମାନେ ନିଜର ସ୍ଥିତି ପାଇଁ ଏଇ ଆଗନ୍ତୁକମାନଙ୍କୁ ସହର ଭିତରେ ପ୍ରବେଶ କରିବାକୁ ଦେଉନାହାନ୍ତି । ତେଣୁ

ଏମାନେ ନିଜର ସ୍ମୃତିକୁ ଏଇ ଭଗ୍ନାବଶେଷ ମଧ୍ୟରୁ ଖୋଜୁଛନ୍ତି । ବିଶ୍ଳେଷଣ କରୁଛନ୍ତି ଅତୀତକୁ ।

ଅନ୍ଧ ନରୋତ୍ତମ ଏଠି ଅଛି ଅନେକ ଦିନରୁ । ନିକଟ ଗାଁରେ ତା'ର ଘର । ବସନ୍ତରେ ସ୍ତ୍ରୀ ସନ୍ତାନ ମୃତ୍ୟୁ ବରଣ କଲେ ଓ ନିଜେ ଅନ୍ଧ ହୋଇଗଲା । ଭାଇ ଭାଉଜ ଘରୁ ବାହାର କରିଦେଲେ । ଏଇ ବସ୍ତିଷ୍ଟାଣ୍ଡରେ ନରୋତ୍ତମ ଗୀତ ଗାଇଲା, ଖଞ୍ଜଣି ବଜାଇଲା । ଲୋକମାନେ ଭିକ ଦେଲେ । ତା'ପରେ ସେବତୀ ଆସିଲା । ନରୋତ୍ତମ ଆଶ୍ରୟ ପାଇଲା ସେବତୀର ଏବଂ ସେବତୀ ଆଶ୍ରୟ ପାଇଲା ଅନ୍ଧ ନରୋତ୍ତମର ।

ତା'ପରେ ହରିଆ । ତା' ନାଁ କେହି ଜାଣନ୍ତି ନାହିଁ । ବସ୍ ଦୁର୍ଘଟଣା ପରେ କିଛିଦିନ ନିକଟସ୍ଥ ଅସ୍ଥାୟୀ ହସ୍ପିଟାଲରେ ସଂଜ୍ଞାହୀନ ରହିଲା ପରେ ସେ ନିଜ ପୂର୍ବ ସ୍ମୃତି ହରାଇ ଏଇ ବସ୍ ଷ୍ଟାଣ୍ଡରେ ବୁଲିଲା । କେହି ତା'ର ଖୋଜ ଖବର ମଧ୍ୟ ନେଲେନାହିଁ ।

ହରିଆ ସବୁ ଭୁଲିଛି । କେବଳ ମନେ ପଡ଼େନି ନିଜ ପିତାମାତା, ଘର କଥା । ମସ୍ତିଷ୍କରେ ଯେମିତି ଏକ ନିର୍ଦ୍ଦିଷ୍ଟ ସୀମା ପରେ କିଏ ଏକ କଳା ପରଦା ପକାଇ ଦେଇଛି । କିଛି ଦେଖି ହେଉନି । ଥରେ ଥରେ ଦେଖିବାପାଇଁ ଚେଷ୍ଟାକରେ । ସବୁ ଗୋଳମାଳ ହୋଇଯାଏ । ଯନ୍ତ୍ରଣା ଆରମ୍ଭ ହୁଏ । ଏବଂ ସେ ହସେ ।

ରାତି ଟା' ତା' କ୍ରମରେ ଆଗକୁ ବଢ଼ି ଚାଲିଛି । ଅଣ୍ଡା ମଧ୍ୟ ପୂର୍ବପରି ଅପରିବର୍ତ୍ତିତ । କୁକୁର ଦଳଟା ମଝିରେ ଥରେ ଭୁକ ଦେଇ ପୁଣି ନୀରବ ହୋଇ ଯାଇଛନ୍ତି । ନୃସିଂହ ଗୁଡ଼ିଆ ଦୋକାନ ଭିତରେ ନିଆଁକୁ ଘେରି ତିନିଜଣ ବସିଥିଲେ ଏବଂ ନିଆଁ ଟା ଲିଭିଲିଭି ଆସୁଥିଲା ।

"ମୁଁ ତ ଆଉ ବେଶିକ ସହି ପାରୁନି । ଆଉ କେତେଦିନ ଆମେ ଏମିତି ଭାବେ ଜୀବନ ଧରି ରହିବା ?" ନରୋତ୍ତମ ନିଜ ମନର ଉଦ୍‌ଗାରକୁ ସ୍ପଷ୍ଟ ପ୍ରକାଶ କରିଦେଲା ।

"ଗତକାଲି ପାଖ ଗାଁରେ ଜଣେ କହୁଥିଲା, ଏଠି ମଧ୍ୟ କଅଣ ଗୋଟାଏ କାରଖାନା ହେବ, ଆଉ ତିନି ଚାରିଦିନ ମଧ୍ୟରେ କାମ ମଧ୍ୟ ଆରମ୍ଭ ହୋଇଯିବ । କାମ ଆରମ୍ଭ ହେଲେ ତ ଆଉ ଆମର ଚିନ୍ତା ରହିବ ନାହିଁ । ଏତେ ଲୋକ ଆସିବେ, କେହି କଅଣ ଦି'ପଇସା ଦେବେନାହିଁ । ତୁ ଆଉ ତିନିଟା ଦିନ ଅପେକ୍ଷା କର ।" ସେବତୀ ନରୋତ୍ତମକୁ ଆଶ୍ୱାସନା ଦେଲା ।

ହରିଆ ହସିଲା, ଏଥରକ ଖୁବ୍ ଜୋରରେ । ସେବତୀ ବିରକ୍ତ ହେଲା ମନେ ମନେ । ଏ ପାଗଳଟା ଭଲ କଥାରେ ଏତେ ହସେ କାହିଁକି ?

"ଏଠି କାମ କରିବାକୁ କୁଲି ମଜଦୁର ଆସିବେ ସେବତୀ । ବାବୁମାନେ ବି । କୁଲି ମଜଦୁର ତୋତେ ଭିକ ଦେବେନାହିଁ ତୋ ଯୌବନକୁ ଦେଖି, ବାବୁମାନେ ଦେବେ । ଆଜି ମୁଁ—ମୋ କଥା ଛାଡ଼ । ଶେଷରେ ଏ ଅନ୍ଧ ନରୋତ୍ତମକୁ କିଏ ଭିକ ଦେବ ।" ହରିଆ ସେବତୀକୁ ବୁଝାଇବାକୁ ଚେଷ୍ଟା କଲା ।

ନରୋତ୍ତମ ଅନ୍ଧାରରେ ନିଜ ଝିଅଟିକୁ ଜାବୁଡ଼ି ଧରି କହିଲା—ମୋତେ ଛାଡ଼ି ଯାଅନି । ମୁଁ ଅନ୍ଧ, ଦେଖାହାରା । ଏକାକୀ ମୁଁ ନିଶ୍ଚୟ ମରିଯିବି । ଯୁଆଡ଼େ ଯିବୁ, ମୋତେ ସାଙ୍ଗରେ ନେଇଯିବୁ ।"

ତାହାହେଲେ ଏ ବିଚ୍ଛିନ୍ନ ଅଞ୍ଚଳଟା ମିଶିଯିବ ସହର ସହିତ । ଏଠାକୁ ମଧ୍ୟ ଆସିବ ସଭ୍ୟତା । ଏ ଜଙ୍ଗଲ ବଣର ଜନ୍ତୁ, ଉନ୍ମୁକ୍ତ ପ୍ରାନ୍ତର ସମସ୍ତ ଶେଷ ହୋଇଯିବ । ଏଠି ଗଢ଼ି ଉଠିବ ବଡ଼ବଡ଼ ପ୍ରାସାଦ, କାରଖାନା, ଗହଳି ଏବଂ କୋଳାହଳରେ ଭରିଯିବ ଏ ସମସ୍ତ ଅଞ୍ଚଳ । ଏ ଅଞ୍ଚଳଟି ବଞ୍ଚି ଉଠିବ ସଭ୍ୟତାର ପରଶ ପାଇ । ବଞ୍ଚି ଉଠିବ ନାହିଁ କେବଳ ଅମର ଚକ୍ରବର୍ତ୍ତୀର ଆତ୍ମା, ବଞ୍ଚି ଉଠିବ ନାହିଁ କେବଳ ସେବତୀର ସନ୍ତାନ, ଯେଉଁଟା ତା'ର ମଧ୍ୟ ସନ୍ତାନ ହୋଇପାରେ, ମନେ ମନେ ଭାବୁଥିଲା ପାଗଳ ହରିଆ ।

ସେ ଚିନ୍ତାକଲା, କିନ୍ତୁ ଲାଭ ? ବିଚ୍ଛିନ୍ନ ଅଞ୍ଚଳ ସଭ୍ୟତାର ପରଶ ପାଇଲେ ସେମାନଙ୍କର ଲାଭ କଅଣ ହେବ । ସେମାନେ ସେଇପରି ଭିକ ମାଗିବେ । ସେ ବିକଳ ହୋଇ ଉଠିଲା, କୁଆଡ଼େ ସେ ଯିବ ?

ନିଆଁଟା ଦପ୍‌କରି ଲିଭିଗଲା । ବାକି ରହିଲା କେବଳ ଅଙ୍ଗାର । ଜଳନ୍ତା ଅଙ୍ଗାର · ଲାଲ୍ ଲାଲ୍ । ହରିଆ ଭାବିଲା ଯଦି ସେ ଏଇ ଅନ୍ଧାର ମଧ୍ୟରେ ସେବତୀର ବାହୁ ଧରି ନିଜ ଆଡ଼କୁ ଟାଣିଅଣେ, ତେବେ, କଅଣ ସେବତୀ ଆପତ୍ତି କରିବ, ଚିତ୍କାର କରିବ । ଚିତ୍କାର କଲେ ବି ଶୁଣିବ କିଏ ? ନା···ଅନ୍ଧାର କାନ ଖିପଣ ତୀକ୍ଷ୍ଣ ।

ସେ ହଠାତ୍ ଉଠି ବାହାରକୁ ଚାଲିଗଲା । ଆକାଶରେ ତାରାମାନେ ଫୁଲ ପରି ବିଛେଇ ହୋଇ ଯାଇଛନ୍ତି । ଦୂର ଜଙ୍ଗଲ ମଧ୍ୟରେ ଅନ୍ଧାର ଆତ୍ମଗୋପନ କରି ହସୁଛି । ଜଙ୍ଗଲଟା ଠିକ୍ ଏକ କଳା ପର୍ବତ ପରି ଦେଖାଯାଉଛି । ସେ

ଦୁଇ ହାତ ଟେକେ ଅଳସ ଭାଙ୍ଗିଲା । ଅଣ୍ଡାରେ ତା' ଶରୀରଟା କମ୍ପି ଉଠିଲା ଏବଂ ତା'ର ମନେ ପଡ଼ିଲା ସେବତୀର ନରମ ମାଂସଳ ଦେହ··· । ସେ ଉତ୍ତପ୍ତ ମୁହୂର୍ତ୍ତିଟିରେ ହିଁ ଉତ୍ତେଜିତ ହୋଇ ଉଠିଲା । ସେବତୀକୁ ସବୁଦିନ ପାଇଁ ନଜର କରନେଲେ କ୍ଷତି କଅଣ ? ସେ ମନେ ମନେ ଚିନ୍ତାକଲା ଏବଂ ଶୂନ୍ୟ ପ୍ରାନ୍ତରକୁ ଦୁଇ ବାହୁ ପିଠିରେ ବାନ୍ଧି ପରିକ୍ରମା କରିବାକୁ ଲାଗିଲା । ଦୂର ଜଙ୍ଗଲ ମଧ୍ୟରେ କୁଲିହାମାନେ ରଡ଼ି ଛାଡ଼ୁଥିଲେ ।

ସେବତୀ ଝଣ୍ଟେ ମୋଟା କାଠ ଲିଭି ଯାଇଥିବା ନିଆଁ ମଧ୍ୟକୁ ଫିଙ୍ଗି-ଦେଲା । ଅନ୍ଧ ନରୋତ୍ତମ ନିଆଁ ନିକଟକୁ ଘୁଞ୍ଚି ଘୁଞ୍ଚି ଆସୁଛି । ସେବତୀ ସାମାନ୍ୟ ଭୟଭୀତା ହୋଇ ଉଠିଲା । ଥରେ ଥରେ ଏମିତ ନିସ୍ତବ୍ଧ ରାତିରେ ଅନ୍ଧ ନରୋତ୍ତମର ଉପସ୍ଥିତି ତାକୁ ଭୟଭୀତା କରିପକାଏ । ଆଜି ମଧ୍ୟ ସେ ଭୟଭୀତା ହୋଇ ଉଠିଲା । ନରୋତ୍ତମର ଦୁଇ ଅନ୍ଧ ଆଖି ଘରର ଚତୁର୍ଦ୍ଦିଗରେ ବୁଲିବୁଲି ସେବତୀ ଉପରେ ନିରୁଦ୍ଦିଷ୍ଟ ଭାବେ ବନ୍ଦ ହୋଇଗଲା । ନିଜର ଅସୁନ୍ଦର ହଳଦିଆ ଦାନ୍ତ ଦେଖାଇ ସେ ହସିଲା । ଦଲକାଏ ଅଣ୍ଡା ପବନ ଘର ଭିତରକୁ ଆସି ସେବତୀର ଭୟଭୀତ ଶରୀରରେ ଭରିଦେଲା ଏକ ଶିହରଣ । ନରୋତ୍ତମ ସେବତୀର ବାଁ ହାତଟାକୁ ଦୃଢ଼ ଭାବେ ଧରି ପୁନର୍ବାର ହସିଲା ।

"ଆଜି ବଡ଼ ଭୋକ ଲୋ ।"

ସେବତୀ ବିରକ୍ତ ହେଲା, "ହାତ ଛାଡ଼ । କଅଣଟା ଅଛି ଯେ ଖାଇବୁ ?"

ଅନ୍ଧ ଶୂନ୍ୟକୁ ଚାହିଁ ହସିଲା, "ଆଲୋ ମୁଁ ପେଟର ଭୋକ କଥା କହୁନି ।" ସେବତୀର ବାଁ ହାତ ପାପୁଲିକୁ ଚିପିଧରି କହିଲା, "ଦେହର ଭୋକ କଥା କହୁଛି, ମନର ଭୋକ କଥା କହୁଛି ।"

ସେବତୀ ଠିଆ ହୋଇ ପଡ଼ିଲା, "ତୋର ଏତେ ସାହସ ।"

ଅନ୍ଧ ହସି ଉଠିଲା । ବାହାରେ ଉନ୍ମୁକ୍ତ ପ୍ରାନ୍ତରରେ ବିଚରଣ କରୁଥିବା ହରିଆ ମଧ୍ୟ ସେ ହସର ପ୍ରତିଧ୍ୱନିରେ ରୋମାଞ୍ଚିତ ହୋଇ, ଉକ୍ତ ଘର ଅଭିମୁଖେ ଦ୍ରୁତ ପାଦରେ ଅଗ୍ରସର ହେଲା ।

ଦାଢ଼ିରେ ହାତ ମାରି ଅନ୍ଧ ପୁନର୍ବାର ଶୂନ୍ୟରେ ଦୃଷ୍ଟିବଦ୍ଧ କରି କହିଲା, "ତୁ ତାହାହେଲେ ଏତେଦିନ ଯାଏ ଜାଣି ପାରିଲୁ ନାହିଁ । ଏ ବୁଢ଼ା

ଅନ୍ଧର ଶକ୍ତି କେତେ ତୁ ଜାଣି ପାରିଲୁ ନାହିଁ । ସବୁଦିନ ରାତିରେ କାଠ କେବିନ ତଳେ ତୁ କାହା ଗୁଡିବରେ ମୁହଁ ଗେଞ୍ଜି ଶୋଇପଡ଼ୁ ।"

ସେବତୀ ଆଶ୍ଚର୍ଯ୍ୟରେ କମ୍ପି ଉଠିଲା । ଯେଉଁ ପ୍ରଶସ୍ତ ଓ ଦୃଢ଼ ବକ୍ଷରେ ସେ ମୁହଁ ଲୁଚାଇ ଶୋଇ ପଡ଼ୁଥିଲା ନିଶ୍ଚିନ୍ତରେ, ତାହା ପାଗଳ ହରିଆର ନୁହେଁ, ଏଇ ଅନ୍ଧ କୁରୂପ ନରୋତ୍ତମର । ସେ ବିଶ୍ୱାସ କରିପାରିଲା ନାହିଁ ।

"ବିଶ୍ୱାସ କର । ମୁଁ ସତ କହୁଛି । ମୁଁ ଭାବିଥିଲି ତୁ ଜାଣୁ । ତେଣୁ ଆଜି ପ୍ରଥମ କରି ମୁଁ ତୋତେ କହିଲି···" ଅନ୍ଧ କହୁଥିଲା । ସେବତୀ ଆଶ୍ଚର୍ଯ୍ୟ ହୋଇ ନିଅାଁକୁ ଚାହିଁଥିଲା ଏବଂ ପାଗଳ ଦ୍ୱାରବନ୍ଧରେ ଠିଆ ହୋଇ ଜଡ଼ ହୋଇ ଯାଇଥିଲା । କିଛିକ୍ଷଣ ପୂର୍ବର ସମସ୍ତ କଳ୍ପନା ଓ ଆକାଂକ୍ଷା ଯେପରି କ୍ଷଣିକ ମଧ୍ୟରେ କେଉଁ ଦୂର ପାହାଡ଼ ପଛପଟେ ବାୟୁ ସହିତ ମିଶି ଏକାକାର ହୋଇ ଯାଇଥିଲା । ତା'ର ସମସ୍ତ ଅନୁଭୂତି ସ୍ଥାଣୁ ହୋଇ ଯାଇଥିଲା ଏବଂ ସେ ଏକ ପଥର ମୂର୍ତ୍ତି ପରି ଦ୍ୱାର ବନ୍ଧରେ ଠିଆ ହୋଇ ରହିଥିଲା ।

ଅନ୍ଧ ସେବତୀର ହାତକୁ ଧରିବାକୁ ଚେଷ୍ଟାକଲା, "ଆ·· ମୋ ପାଖକୁ ଆ ।"

"ନା···ଅଉ ନୁହେଁ ।" ସେବତୀ ଦୃଢ଼ କଣ୍ଠରେ ପ୍ରତିବାଦ କଲା ।

ହଠାତ୍ ନରୋତ୍ତମର ଦୁଇ ଅନ୍ଧ ଆଖି ଯେପରି ଉତ୍ତେଜନାରେ ଇଲେକ୍‌ଟ୍ରିକ ବଲ୍‌ବ ପରି ଜଳି ଉଠିଲା । ସେ ହିଂସ୍ର ହୋଇ ଉଠିଲା ଏବଂ ସେବତୀକୁ ଚିପିଧରି ହସି ଉଠିଲା ବିକୃତ ଭାବେ, "ଶାଲୀ ନଖରା ଦେଖାଉଛୁ । ସବୁଦିନେ ନିଜେ ଆସି ଦେହରେ ଗୁଡ଼େଇ ହୋଇଯାଉ । ଆଜି ନଖରା ।"

ସେବତୀ ନିଜକୁ ରକ୍ଷା କରିବାପାଇଁ ପ୍ରାଣପଣେ ଚେଷ୍ଟା କରୁଥିବା ସମୟରେ ହରିଆ ଦ୍ୱାର ବନ୍ଧରେ ପଥର ପରି ନୀରବ ନିସ୍ପନ୍ଦ ଭାବେ ଠିଆ ହୋଇ ରହିଥିଲା । ଅନ୍ଧ ସେବତୀକୁ ନିଜ ଶକ୍ତି ଦ୍ୱାରା ପରାଜିତ କରିବାପାଇଁ ତାକୁ ମାଡ଼ି ବସିଲା । କିଛିଟିର ବାୟୁମଣ୍ଡଳରେ ଉଷ୍ମତା ଭରିଗଲା । ଦୁହେଁ ପାଗଳର ଉପସ୍ଥିତି ଭୁଲି ଚିତ୍କାର କରିବାକୁ ଲାଗିଲେ ।

ହଠାତ୍ ସେବତୀ ହରିଆକୁ ଦ୍ୱାରବନ୍ଧରେ ନୀରବରେ ଠିଆ ହୋଇଥିବାର ଦେଖି ବିକଳ ହୋଇ କାନ୍ଦି କାନ୍ଦି ଚିତ୍କାର କଲା, "ହରିଆରେ··· ।"

ହରିଆ କିନ୍ତୁ କିଛି ଶୁଣିପାରୁ ନ ଥିଲା । କେବଳ ଦେଖୁଥିଲା ଏକ ମେସିନ ପରି । ଏବଂ ତା'ର ଆଖି ସମ୍ମୁଖରେ ତା'ର ନିଜର ସମସ୍ତ ସ୍ୱପ୍ନ, କଳ୍ପନା ପଭୃତି ଭାଙ୍ଗି ମାଟିରେ ମିଶି ଯାଉଥିଲେ । ସେ ଏକ ଅସହାୟ ବ୍ୟକ୍ତି ପରି ଠିଆ ହୋଇ ରହିଥିଲା ।

ସେବତୀ ଶେଷଥର ପାଇଁ ଉଦ୍ୟମ କଲା ଏବଂ ନିଆଁରୁ ଜଳନ୍ତା କାଠଖଣ୍ଡ ଉଠାଇ ଅନ୍ଧ ମୁଣ୍ଡରେ ପାଗିଲୀଙ୍କ ପରି ସଶବ୍ଦରେ ପିଟି ଚାଲିଲା । ଅନ୍ଧ ଶେଷଥର ପାଇଁ ଯନ୍ତ୍ରଣାରେ ଚିତ୍କାର କଲା ଏବଂ ଅଣଓସର ଭୂମିରେ ପଡ଼ିଗଲା । ନିଆଁର ଉକ୍ତ ରକ୍ତିମ ବାତାବରଣରେ ମଣିଷ ରକ୍ତ ପ୍ରତ୍ୟେକ ବସ୍ତୁକୁ ସାଙ୍ଗସ୍ତ କରି ପକାଇଲା ଏବଂ କ୍ଷଣିକ ମଧ୍ୟରେ ଏକ ବିରାଟ ଅନ୍ତହୀନ ନିସ୍ତବ୍ଧତା ଚତୁର୍ଦ୍ଦିଗରେ ବ୍ୟାପିଗଲା । ସେବତୀର ହାତରେ, ଶାଢ଼ୀରେ, ମୁହଁରେ··· ଚାରିଆଡ଼େ ରକ୍ତ । ହାତମୁଠା ରକ୍ତମୟ । ପାଗଳୀ ଭୟରେ ଅର୍ତ୍ତ ଚିତ୍କାର କଲା ଏବଂ ଦ୍ରୁତ ଗତିରେ କଳା ପର୍ବତ ପରି ଦେଖାଯାଉଥିବା ହେଇ ଜଙ୍ଗଲ ଆଡ଼କୁ ଦୌଡ଼ିବାକୁ ଲାଗିଲା ।

ଅନେକ ମୂହୂର୍ତ୍ତ ପର୍ଯ୍ୟନ୍ତ ସେବତୀ ପରିସ୍ଥିତିକୁ ଠିକ୍ ଭାବେ ବୁଝି ପାରିଲା ନାହିଁ । ତା'ପରେ ସେ ଦେଖିଲା ଅନ୍ଧର ରକ୍ତମୟ ଶରୀର ଏବଂ ନିଜ ହାତମୁଠାର କାଠଖଣ୍ଡ । ଚମକି ପଡ଼ିଲା । ସମ୍ପୂର୍ଣ୍ଣ ଶରୀର ତା'ର କମ୍ପିବାକୁ ଲାଗିଲା । ଏବଂ ସେ କାଠ ଫିଙ୍ଗି ବାହାରକୁ ଆସି ପୁନର୍ବାର ବିକଳ ହୋଇ, କାନ୍ଦି କାନ୍ଦି କୋହଭରା କଣ୍ଠରେ ଚିତ୍କାର କଲା । ଦୂରରେ ଦୌଡ଼ୁଥିବା ଛାୟା ମୂର୍ତ୍ତିକୁ ଲକ୍ଷ୍ୟକରି, "ଅରେ ହରିଆରେ ମୋତେ ଛାଡ଼ି ଯାଅନା ।"

ତା' ଚିତ୍କାରର ପ୍ରତିଧ୍ୱନି ତା' ନିକଟକୁ ଫେରି ଆସିଲା । ସେ ନିଜର ଜ୍ଞାନ ହରାଇ ସାରିଥିଲା । ବର୍ତ୍ତମାନର ଏଇ କ୍ଷଣରେ ସେ କେବଳ ଖୋଜୁଥିଲା ହରିଆକୁ, ଯାହାକୁ ସେ ସ୍ୱପ୍ନରେ ଅନେକ ଥର ଦେଖିଛି ଏବଂ ଯାହାର ବକ୍ଷ ଭାବି ସେ ପ୍ରତି ରାତିରେ ଅନ୍ଧ କୁରୂପ ନରୋତ୍ତମର ବକ୍ଷରେ ଲାଗିଯାଇଛି ।

ସେ ଅନ୍ଧାରକୁ ନିରେଖି ଚାହିଁଲା । ଦୂରରେ ଏକ କଳାଛାଇ କଳା ପର୍ବତ ପରି ଜଙ୍ଗଲ ଉଦ୍ଦେଶ୍ୟରେ ଦୌଡ଼ି ଚାଲିଥିଲା । ସେ ହଠାତ୍ ଉଲ୍ଲସିତ ହୋଇ ଉଠିଲା ଏବଂ ସବୁକିଛି ଭୁଲି ଉକ୍ତ ଜଙ୍ଗଲ ମଧ୍ୟକୁ, ଯାହା ମଧ୍ୟରେ ଅନ୍ଧାର ଆତ୍ମଗୋପନ କରି ରହିଥିଲା । ଉକ୍ତ ଛାଇ ପଛେ ପଛେ ଦ୍ରୁତ ଗତିରେ ଦୌଡ଼ିବାକୁ ଲାଗିଲା ।

ବାତାବରଣ ତଥାପି ନିସ୍ତବ୍ଧ ଥିଲା । କୁକୁର ଦଳଟି ଭୟରେ କେଉଁଠି ଆତ୍ମଗୋପନ କରି ଉଙ୍କିମାରି ଦେଖୁଥିଲେ । ଆକାଶରେ ଚନ୍ଦ୍ର ଏକ ମୃତ ବ୍ୟକ୍ତିର ମୁଖ ପରି ପ୍ରତୀୟମାନ ହେଉଥିଲା ଏବଂ ନୃସିଂହ ଗୁଡ଼ିଆର ପରିତ୍ୟକ୍ତ ଘର ଭିତରେ ଅନ୍ଧ ନରୋତ୍ତମର ରୁଗ୍ଣ ଶରୀର ପଡ଼ିଥିଲା ସଂଜ୍ଞାହୀନ ଅବସ୍ଥାରେ ଅଥବା ମୃତାବସ୍ଥାରେ ।

ଏବଂ ଜଙ୍ଗଲ ମଧ୍ୟରେ ଦୁଇଟି ପ୍ରାଣୀ ଦୌଡ଼ି ଚାଲିଥିଲେ ରାତିର ଉକ୍ତ ନିସ୍ତବ୍ଧ ପ୍ରହରରେ ।



('ସହକାର' ଜୁଲାଇ, ଅଗଷ୍ଟ ୧୯୭୪)
('କଥାକାର' ଜୁଲାଇ ୧୯୭୪)

# ଶେଫାଳି ଓ ହେନାର ଗନ୍ଧ

ଲଣ୍ଠନଟା ଧପ୍ କରି ଲିଭିଗଲା । ସେଇ ନିବିଡ଼ ଅନ୍ଧକାରରେ ଦୁହେଁ କିଛିକ୍ଷଣ ଚୁପ୍ ହୋଇ ବସି ରହିଲୁ । ନିସ୍ତବ୍ଧତାର ସେହି ବାତାବରଣକୁ ହଠାତ୍ ସେ ଭାଙ୍ଗିଲା । "ତୁମେ ଟିକିଏ ବସିଥାଅ । ଏଇ ପାଞ୍ଚ ମିନିଟ୍‌ରେ ମୁଁ ତେଲ ନେଇ ଆସୁଛି ।" ଦଉଡ଼ିଆ ଖଟଟିରୁ ଖାଲି ବୋତଲଟାଏ ବାହାର କରି ସେ ବାହାରିଗଲା । ପୂର୍ବର ସେ ଅପ୍ରୀତିକର ପରିସ୍ଥିତିରୁ କିଛିକ୍ଷଣ ପାଇଁ ନିସ୍ତାର ପାଇଲି । ଚପଲ ଦୁଇଟାକୁ ପାଦରୁ ଖସାଇ ଦେଇ ଖଟ ଉପରେ ଗଡ଼ି ପଡ଼ିଲି । ତକିଆରୁ ତେଲମିଶା ମଇଳା ଗନ୍ଧ ବାହାରୁଥାଏ । ହାତର ପାପୁଲିକୁ ମୁଣ୍ଡତଳେ ରଖି ମୁଁ ଘରର ଚତୁର୍ଦ୍ଦିଗ ନିରୀକ୍ଷଣ କଲି । ଛପର ବୋଧହୁଏ ଅନେକ ଦିନରୁ ହୋଇନାହିଁ । ଗୋଟାଏ ଜାଗାରୁ ମେଞ୍ଚାଏ ନଡ଼ା ବାହାରି ଯାଇ ଗୃହ ମଧ୍ୟରେ ଥିବା ବ୍ୟକ୍ତିକୁ ଆକାଶ ଦେଖିବାର ଏକ ଅଦ୍ଭୁତ ସୁଯୋଗ ଦେଉଛି ।

"ପାଗଟା ଆଜି ଖୁବ୍ ଭଲ ହୋଇଛି", ମୁଁ ଭାବିଲି । ସକାଳେ ଯେତେବେଳେ ମୁଁ ଗାଁରୁ ବାହାରିଥିଲି ଖୁବ୍ ଜୋର୍‌ରେ କୁଆପଥର ସହ ବର୍ଷାଟା ହୋଇଥିଲା । ବର୍ଷାରେ ଭିଜି ଭିଜି ଶରୀର ଅବଶ ହୋଇ ଯାଇଥିଲା । ଜୋର୍‌ରେ ନିଃଶ୍ୱାସ ମାରିଲି । ବାଁପଟ ନାକଟା କାହିଁକି କେଜାଣି ବନ୍ଦ ହୋଇ ଯାଇଛି । ବୋଧହୁଏ ବର୍ଷାରେ ଭିଜିବା ଯୋଗୁଁ ସର୍ଦ୍ଦିଟା ହୋଇଗଲା । ଖଟରୁ ଉଠି ନାକ ପୋଛିଲି । ଦ୍ୱାର ପାଖେ ଠିଆହୋଇ ଆଖପାଖର ଦୃଶ୍ୟାବଳୀ ନିରୀକ୍ଷଣ କରିବାକୁ ଲାଗିଲି । ସହରର ପ୍ରଖ୍ୟାତ ମହାବିଦ୍ୟାଳୟର ସୁ-ଉଚ୍ଚ ଅଟ୍ଟାଳିକା ଶାନ୍ତିଭାବରେ ମୁଣ୍ଡଟେକି ଦଣ୍ଡାୟମାନ । ଅଟ୍ଟାଳିକାର ସମ୍ମୁଖରେ ବିଖ୍ୟାତ କବି ଗଙ୍ଗାଧରଙ୍କର ବ୍ରୋଞ୍ଜ ଦ୍ୱାରା ନିର୍ମିତ ନିର୍ଜୀବ ପ୍ରତିମୂର୍ତ୍ତି ବିଦ୍ୟୁତାଲୋକ ଦ୍ୱାରା ଆଲୋକିତ । କବିଙ୍କୁ ତ କେବେ ଦେଖିବାର ସୌଭାଗ୍ୟ ପ୍ରାପ୍ତ ହୋଇ ନ ଥିଲା । ତେଣୁ ଚକ୍ଷୁ ଦୁଇଟି ମୋର ଲାଖି ରହିଲା କବିଙ୍କର ପ୍ରତିମୂର୍ତ୍ତିଟି ଉପରେ କିଛି

ସମୟ । ସୁଉଚ୍ଚ ଇଉକାଲିପଟ୍‌ସ ବୃକ୍ଷଗୁଡ଼ାକ ମନ୍ଦ ସମୀର ଦ୍ୱାରା ଦୋଳାୟିତ ହେଉଥାନ୍ତି । ଯେଉଁ ଅଟ୍ଟାଳିକାଟି ସକାଳେ ଛାତ୍ର-ଛାତ୍ରୀ ଏବଂ ଅଧ୍ୟାପକମାନଙ୍କର କଣ୍ଠସ୍ୱର ଦ୍ୱାରା ଗୁଞ୍ଜରିତ ହୋଇଉଠେ, ତାହା ବର୍ତ୍ତମାନ ନୀରବ । ଅଟ୍ଟାଳିକାର ଦୁଇପଟେ ମହାବିଦ୍ୟାଳୟର ଦୁଇଟି ଛାତ୍ରାବାସ । ବାଁପଟ ଛାତ୍ରାବାସକୁ ଲକ୍ଷ୍ୟକଲି କିଛି ସମୟ । ତା'ପରେ ବହୁଦିନରୁ ସଞ୍ଚିତ ହୋଇ ରହିଥିବା ଦୁଃଖ ଏକ ଦୀର୍ଘନିଃଶ୍ୱାସ ରୂପେ ଆତ୍ମପ୍ରକାଶ କଲା । ମୁଁ ମଧ୍ୟ ଏହି ଛାତ୍ରାବାସରେ କଟାଇଥିଲି କେତୋଟି ସୁନ୍ଦର ଋତୁ । ଛାତ୍ରାବାସର ପ୍ରତ୍ୟେକ କୋଠରୀର ଗବାକ୍ଷ ଦେଇ ଆଲୋକ ରଶ୍ମି ଆତ୍ମପ୍ରକାଶ କରୁଛି ବାହାରକୁ । ମୁହଁ ବୁଲାଇଲି । ମହାବିଦ୍ୟାଳୟ ହତା ସମ୍ମୁଖସ୍ଥ ପାନ ଦୋକାନରେ ରେଡ଼ିଓ ପୁରା ଶକ୍ତିରେ ଚିତ୍କାର କରି ଚାଲିଛି କେଉଁ ଏକ ପୁରୁଣା ଛବିର ଗୀତ । ପାନ ଦୋକାନଟି ଉଜ୍ଜ୍ୱଳ ଆଲୋକରେ ଆଲୋକିତ । କେତୋଟି ଛାତ୍ର ମନଖୋଲା ହସ ହସୁଛନ୍ତି । ବଡ଼ ଅତଷ୍ଟ ଲାଗିଲା । ଅସହ୍ୟ ହୋଇ ପଡ଼ିଲା ମୋ ପକ୍ଷେ ଉପରୋକ୍ତ ଦୃଶ୍ୟଗୁଡିକ । ଅତୀତର ଅମ୍ଳାନ ସ୍ମୃତିଗୁଡ଼ାକ ଉଙ୍କି ମାରିଲା । ମୁଁ ଧୀର ପଦକ୍ଷେପରେ ଫେରିଲି ପୂର୍ବ ପରିତ୍ୟକ୍ତ ସ୍ଥାନକୁ । ପାଖ କୋଠାରୁ ହେନାର ସୁମଧୁର ସୁଗନ୍ଧ ଭାସି ଆସୁଥାଏ ବାୟୁ ସଙ୍ଗେ ସଙ୍ଗେ । ମନେ ପଡ଼ିଲା, ହେନା ଫୁଲର ସୁଗନ୍ଧକୁ ସେ ଖୁବ୍ ଭଲ ପାଉଥିଲା । ଘରେ ତା'ର ହେନାର ବଗିଚା ନ ଥିଲା । କୋଠା ମଧ୍ୟ ନ ଥିଲା । ଏକ ଛୋଟ କୁଡ଼ିଆ ଘରେ ରହୁଥିଲା ସେ । ତା'ର ମହତାକାଂକ୍ଷା ମନେ ପଡ଼ିଲେ ଏବେ ମଧ୍ୟ ହସଲାଗେ ।

ଦ୍ରୁତଗାମୀ ଟ୍ରକ୍‌ର ଶବ୍ଦରେ ଭାବନାର ଧାରା ଛିଣ୍ଡିଗଲା । ଚନ୍ଦ୍ରର ଆଲୋକ ଏବେ ସ୍ପଷ୍ଟରୂପେ ଛପର ଦେଇ ଗୃହ ମଧ୍ୟରେ ପ୍ରବେଶ କରି ଚଟାଣ ଉପରେ ପ୍ରତିଫଳିତ ହୋଇଅଛି । ଚଟାଣକୁ ଲକ୍ଷ୍ୟକଲି । ଗୋଟାଏ ମୂଷିକ ଦୁଇଟି ଜହ୍ନା ଧରି ଖୁବ୍ ଶୀଘ୍ର ଶୀଘ୍ର ଆଗେଇ ଚାଲିଛନ୍ତି । ମୂଷିକୁ ଦେଖି ଛିଣ୍ଡି ଯାଇଥିବା ଭାବନାର ଧାରା ପୁଣି ଥରେ ଯୋଡ଼ି ହୋଇଗଲା । ସେ ମଧ୍ୟ ମୁଢ଼ିକୁ ଖୁବ୍ ଭଲ ପାଉଥିଲା । ପାର୍କରେ ସନ୍ଧ୍ୟା ପରେ ବସି ହେନାର ଗନ୍ଧ ଆହରଣ କରୁ କରୁ ମୁଢ଼ି ଖାଇବାଟା ତା'ର ନିତିଦିନିଆ ଅଭ୍ୟାସ । ଦିନକର କଥା ଏବେ ମଧ୍ୟ ମନେଅଛି । କହିଥିଲା, "ସବୁଦିନେ ତୁମେ ପଇସା ଖର୍ଚ୍ଚ କରୁଛ ମୋ ପାଇଁ, ଆଜି ମୁଁ ଖର୍ଚ୍ଚ କରିବ ।" ମୁଁ ହସି ଉଠିଥିଲି । ରାଗିଯାଇ କହିଥିଲା, "ପରତେ ଯାଉନାହିଁ ନା ମୋ କଥାକୁ ? ଏଇ ଦେଖ !" ମୋତେ ପାଞ୍ଚ ଟଙ୍କାର ନୋଟ୍‌ଟିଏ ଦେଖାଇଥିଲା । ମୁଁ ଚକ୍ଷୁରେ ପ୍ରଶ୍ନଭରି ତାକୁ ଲକ୍ଷ୍ୟ କରିଥିଲି । ସେ ବୋଧହୁଏ ମୋ ପ୍ରଶ୍ନ ବୁଝି ପାରିଥିଲା । ହାତ ହଲାଇ ହଲାଇ

କହୁଥିଲି, "ଗ୍ରେଟ କରୁନାହିଁ ମ । ହକ୍ ଗ୍ରୁକର କରି ଆଣିଛି । ସେଇ ଯେଉଁ ବାବୁ ନାହାନ୍ତି, ପୋଲିସରେ କାମ କରନ୍ତି; ତାଙ୍କର ସ୍ତ୍ରୀ ମଁ । ଖାଲି ସୁନ୍ଦରୀ ଦେଖିବାକୁ । ସେ ପରା ମୋତେ ତାଙ୍କ ଛୁଆ ଖେଳାଇବା ପାଇଁ ଗ୍ରୁକରରେ ରଖିଛନ୍ତି । ମାସକୁ ଦଶଟଙ୍କା । ଦେଖିବ ଏଥର ସବୁଦିନେ ତୁମକୁ ଦେବି ମୁଢ଼ି ଖାଇବାକୁ । ମୁଁ ତା'ପରେ ଟଙ୍କା ଜମାଇ ଜମାଇ ଏକ ବଗିଚ କୋଠା କରିବି···।" କହି ଚାଲିଥିଲି ଅନେକ କଥା ସେଦିନ ସେ । ମୁଁ ମନ୍ତ୍ରମୁଗ୍ଧ ପରି ତା'ର କଥା ଶୁଣିଥିଲି । ତା'ପରେ ପ୍ରତିଦିନ ଦୁଇଟି ଛୁଆଙ୍କୁ ଧରି ପାର୍କକୁ ଆସେ ସଞ୍ଜବେଳେ । ହଠାତ୍ ଚଡ଼କ ପଡ଼ିଲା ମୋ ଉପରେ । ଜନ୍ମରୁ ତ ପିତାମାତା ନ ଥିଲେ । ଯାହାଙ୍କ ତତ୍ତ୍ୱାବଧାନରେ ମହାବିଦ୍ୟାଳୟରେ ପାଦ ଦେଇଥିଲି, ସେ ରହିଲେ ନାହିଁ । ତାଙ୍କ ପରେ ତାଙ୍କ ପରିବାରର ସଦସ୍ୟମାନେ ମୋତେ ସାହାଯ୍ୟ କରିବାକୁ ଆଗଭର ନ ହେବାରୁ ଟେଷ୍ଟ ପରୀକ୍ଷା ଦିନ କଲେଜ ଛାଡ଼ିଲି । ତା' ସହିତ ସାକ୍ଷାତ୍ କରି ପାରିଲି ନାହିଁ । କିମିତି ବା ସାକ୍ଷାତ୍ କରଥାନ୍ତି ? ଗାଁକୁ ଫେରିଗଲି ।

"ବହୁତ ଡେରି ହୋଇଗଲା । କ'ଣ କରିବ ଏତେ ରାତିରେ ବି କ୍ରାସିଙ୍ଗ ଟୋପାଏ ପାଇଁ କେତେ ଲୋକ ଯେ ଲାଗିଛନ୍ତି ଲାଇନ୍‌ରେ !" ପ୍ରବେଶ କଲା ସେ । ମୁଁ ଉଠି ପଡ଼ିଲି ବିଛଣା ଉପରୁ । ପୁରୁଣା ଖଟଟା କଟ୍‌କଟ୍ କରି ଉଠିଲା ।

ଲଣ୍ଠନଟା ପୁଣି ଜଳି ଉଠିଲା । ଉପରକୁ ଲକ୍ଷ୍ୟକଲି । ଚନ୍ଦ୍ର ନିଜ ସ୍ଥାନରୁ ଟିକିଏ ଆଗକୁ ଅଗ୍ରସର ହୋଇ ସାରିଥାଏ । ବାଦଲଗଣ ନିଜ ସୈନ୍ୟବଳ ସହିତ ଚନ୍ଦ୍ରକୁ ଆକ୍ରମଣ କରିବାକୁ ବାହାରି ପଡ଼ିଥାନ୍ତି । ସେ ମୋ ଦୃଷ୍ଟି ସହିତ ଦୃଷ୍ଟି ମିଶାଇ ବୋଧହୁଏ ଛପର ନ ହୋଇଥିବା ସ୍ଥାନଟିକୁ ଦେଖି ପକାଇଲା । କହିଲା, "କ'ଣ କରିବ ? ଘରବାଲାକୁ ୩ ମାସର ଘରଭଡ଼ା ନ ଦେବାରୁ ଛପର କରୁନାହିଁ ସେ ।" ମୁଁ କେବଳ ଟିକିଏ ହସିଦେଲି । ଏପରି ପରିସ୍ଥିତିରେ କ'ଣ କହିବାକୁ ପଡ଼ିବ, ତାହା ମୁଁ ଜାଣି ପାରିଲି ନାହିଁ ହଠାତ୍ । "ନିଅ ପକୋଡ଼ି ଦି'ଖଣ୍ଡ ଖାଇଦିଅ । କେତେବେଳୁ ଖାଇଥିବ ।" ସ୍ୱରରେ ତା'ର ଆଗ୍ରହ ଭରି ରହିଥିଲା । ଗାମୁଛା ତଳୁ କାଗଜ ଠୁଙ୍ଗା ବାହାର କରି ମୋ ସମ୍ମୁଖରେ ରଖିଦେଇ ପାଖ ଭଙ୍ଗା ସୁଟ୍‌କେଇରୁ ଆଲ୍‌ମୁନିୟମ୍ ଗିଲାସରେ ପାଣି ଢାଳି ରଖିଲା ଠୁଙ୍ଗା ପାଖରେ । ମୁଁ ପକୋଡ଼ିଟାଏ ପାଟିରେ ପକାଇଲି । ଥରେ ଗ୍ରେବାଇ ସାରିବା ପରେ ବାଦାମ ତେଲର ଗନ୍ଧ ଏବଂ ବେସନ ସହିତ ବାଲିର ସତ୍ତା ସ୍ପଷ୍ଟ ଅନୁଭବ କରି ପାଣି ଗିଲାସକୁ ଉଦରସାତ୍ କଲି । ସେ କହିଲା, "କାଛ

ଖାଇଲ ନାହିଁ ଯେ ? ଖାଇଦିଅ ।" ବାଧ୍ୟ ହୋଇ ତା'ର ଆଗ୍ରହ ଭାଙ୍ଗି ନ ପାରି କଷ୍ଟେମଷ୍ଟେ ଦୁଇଟାରୁ ପକୋଡ଼ି ଶେଷକଲି ।

"ତା'ହେଲେ ଯେ ମରିଗଲା ?" କଣ୍ଠରେ ତା'ର କୋହର ଆଭାସ । ଅନ୍ଧକାରରେ ମୁଁ ମୁଣ୍ଡ ହଲାଇଲି । ଲଣ୍ଠନଟା ଅନେକବେଳୁ ଲିଭି ଯାଇଥାଏ । ଚନ୍ଦ୍ର କେତେବେଳୁ ତା' ସ୍ଥାନ ପରିବର୍ତ୍ତନ କରି ସାରିଥାଏ । ଗୃହ ମଧ୍ୟରେ ନିବିଡ଼ ଅନ୍ଧକାର ବିରାଜମାନ କରୁଥାଏ ଅନେକବେଳୁ । ଅତିଥିଙ୍କୁ ଏକମାତ୍ର ଖଟ ଉପରେ ଶୋଇବାକୁ ସୁଯୋଗ ଦେଇ ସ୍ୱୟଂକୁ ଚଟାଣ ଉପରେ ଲୋଟାଇ ଦେଇଥାଏ ସେ । ଦୁହିଁଙ୍କ ମନରେ ଏକପ୍ରକାର ଚିନ୍ତା । ଶୋଇବାର ଛଳନା କରି ସୁଦ୍ଧା ଶୋଇ ପାରିଲୁ ନାହିଁ । ଆସିବା ସଙ୍ଗେ ସଙ୍ଗେ ମୁଁ ଯେଉଁ ଖବରଟି ତା' କାନରେ କହି ଦେଇଥିଲି, ତାହା ଏ ପର୍ଯ୍ୟନ୍ତ ତା'ର ମନ ମଧ୍ୟରେ ଖେଳି ବୁଲୁଥାଏ ବୋଧହୁଏ ।

"ତା'ହେଲେ ସେ ମରିଗଲା ?" ପୁଣି ଥରେ ପ୍ରଶ୍ନକଲା ସେ । ପୂର୍ବଥର ଭଳି ଏଥର ମୁଁ ଆଉ ମୁଣ୍ଡ ହଲାଇଲି ନାହିଁ । ଉତ୍ତର ଶୁଣି ଚୁପ୍ ହୋଇ କିଛିକ୍ଷଣ ନୀରବ ରହିଲା ସେ । ମୁଁ କାନ ପାତିଲି । କଲେଜ ସାମନା ପାନ ଦୋକାନର ରେଡ଼ିଓ ବନ୍ଦ ହୋଇ ସାରିଥାଏ କେତେବେଳୁ । କେବଳ ବେଳେବେଳେ ଟ୍ରକ୍, କାର୍ ବା ଜିପ୍‌ର ତୀବ୍ର ସ୍ୱର ବାତାବରଣର ନିସ୍ତବ୍ଧତାକୁ ଭାଙ୍ଗି ଦେଉଥାଏ । "ଭଲ ହେଲା ।" ଏକ ଦୀର୍ଘନିଃଶ୍ୱାସ ତ୍ୟାଗକଲା ସେ । "ଶେଷ ପର୍ଯ୍ୟନ୍ତ ତୁମକୁ ଖୋଜିଥିଲା ।" 'ହୁଁ' ! ଗମ୍ଭୀର ସ୍ୱରରେ ଅନ୍ତରର ସମସ୍ତ କୋହକୁ ସେ ଗୋଟିଏ 'ହୁଁ'ରେ ପ୍ରକାଶ କରିଦେଲା । "ଆଚ୍ଛା କହି ପାରିବ କେତେବର୍ଷ ହେଲା ମୁଁ ଗାଁ ଛାଡ଼ିଲି ?" ମୁଁ ଉତ୍ତର ଦେଲି, "ସ୍ତରି ବର୍ଷ ତ ହୋଇଥିବ । ଲୋକେ କୁହନ୍ତି ଯେ ତାକୁ ନିଜର ସାନଭାଇ ସହିତ ଏକ ଅସଯତ ଅବସ୍ଥାରେ ଦେଖି ଗୃହ ତ୍ୟାଗ କରିଥିଲ ।" ସେ ଚୁପ୍ ରହିଲା । ପ୍ରଶ୍ନକଲି, କିନ୍ତୁ କାହିଁକି ? ପରେ ତ ପ୍ରମାଣିତ ହୋଇଥିଲା ଯେ, ସଙ୍କୋଚନ ଥିଲାବେଳେ ତୁମର ସାନଭାଇ ତାକୁ ଧରିଥିଲା । ତୁମେ ମଧ୍ୟ ଏହା ଜାଣିଲ । ଏହା ବିଶ୍ୱାସ ମଧ୍ୟ କଲ । ତେବେ କାହିଁକି ତା' ପ୍ରତି ଏ ଅବିଚାର କଲ । କୋଡ଼ିଏ ବର୍ଷ ଧରି ସେ ତୁମର ପ୍ରତୀକ୍ଷା କରିଛି । ତା'ପରେ ଜଳି ଜଳି ପାଉଁଶ ହୋଇଗଲା । ମଲାବେଳେ କହିଲା, "ତାଙ୍କୁ କହିବ, ଆଉ ପ୍ରତୀକ୍ଷା କରି ପାରିଲି ନାହିଁ । କ୍ଷମା କରିବେ ।" କାନ୍ଦି ଉଠିଲା ସେ । ସବୁ ଜାଣିଥିଲି । ସବୁ ବୁଝୁଥିଲି । ହେଲେ ଥରେ ଯେତେବେଳେ ଉତ୍ତେଜିତ ଅବସ୍ଥାରେ ତାକୁ ଲାଞ୍ଛିତ କରିଥିଲି, ସେତେବେଳେ ପରେ ତା'ର

ନିର୍ଦ୍ଦୋଷତାର ପ୍ରମାଣ ପାଇ ମଧ୍ୟ କିପରି ନିଜର ମୁହଁ ଦେଖାଇଥାନ୍ତି । ଯେତେବେଳେ ସେ ଚକ୍ଷୁରେ ଘୃଣା ଓ ହେୟ ଭରି ମୋତେ ଲକ୍ଷ୍ୟ କରିଥାନ୍ତା, ସେତେବେଳେ କିପରି ତା'ର ସେ ଦୃଷ୍ଟିକୁ ସହ୍ୟ କରିଥାନ୍ତି ? ବହୁ ଅନୁତାପ କରିଛି ପରେ ମୁଁ । କିନ୍ତୁ ସବୁ ବ୍ୟର୍ଥ । ଶିକ୍ଷା ଚଳାଇ ଯାହା ପାଏ, ସବୁ ଖାଇ ପିଇ ଉଡ଼ାଇ ଦିଏ । ଏକ ନିର୍ଦ୍ଦୋଷ ପ୍ରାଣୀକୁ ଦଣ୍ଡ ଦେଇଥିବା ହେତୁ ମୁଁ ନିଜେ ନିଜକୁ ନିଜ ଦ୍ୱାରା ଦଣ୍ଡିତ କରୁଛି ।'' ମୁଁ ତା'ର କୋହ ବନ୍ଦ ହେବା ପର୍ଯ୍ୟନ୍ତ ଚୁପ୍ ରହିଲି । କିଛି ସମୟର ନୀରବତା ପରେ ବାତାବରଣ ଶାନ୍ତ ହୋଇଗଲା ।

ରାତି ବହୁତ ହେବ । ଯାନବାହନ ଚଳାଚଳ ବହୁ ବେଳ ହେବ ବନ୍ଦ ହୋଇ ସାରିଲଣି । କିନ୍ତୁ ଦୁଇଜଣଙ୍କ ଚକ୍ଷୁରେ ନିଦର ନାମଗନ୍ଧ ସୁଦ୍ଧା ନାହିଁ । ହଠାତ୍ ପ୍ରଶ୍ନକଲା ସେ, "ଏବେ କ'ଣ କରୁଛ ?" "ଟେକାଏ ଜମି ଥିଲା ତାକୁ ଚାଷ କରି ପେଟକୁ ଦାନା ମିଳି ଯାଉଛି ।" "ବାହା ହେଲଣି ?" ପୂର୍ବର ଦୁଃଖାନ୍ତ ପରିବେଶର ଟିକିଏ ପରିବର୍ତ୍ତନ ହେଲା । ମୁଁ ହସିଲି । "ନାଃ ।" "ବାହା ହୋଇପଡ଼ । ହାତକୁ ଦୁଇହାତ ହୋଇଯାଅ ।" ସ୍ୱରରେ ଅପନତ୍ୱଭରା ଆଗ୍ରହ । ମୁଁ ଟିକିଏ ହାଲୁକା ସ୍ୱରରେ କହିଲି, "ଦେଖିବା ।" ଅତୀତ ଉର୍କି ମାରିଲା । ବହୁ ବେଳ ଧରି ଚାପି ରଖିଥିବା ପ୍ରଶ୍ନ ଉଙ୍କିମାରି ଆତ୍ମପ୍ରକାଶ କଲା । "ଶେଫାଳି ବର୍ତ୍ତମାନ କେଉଁଠି ?" କେଉଁ ଶେଫାଳି ପ୍ରଶ୍ନକଲା ସେ, "ସେଇ ମେଡ଼ିକାଲର ବେହେରାଣୀର ଝିଅ ନୁହେଁ ତ ? ଯାହା ସହିତ ତୁମେ ପାର୍କରେ ବସୁଥିଲ ?" ମୁଁ 'ହଁ' ଭରିଲି । ସ୍ୱରରେ ରହସ୍ୟ ଭରି ସେ କହିଲା, "ଜାଣିନ ତା'ହେଲେ ?" ମୁଁ ତା' ନିକଟକୁ ଘୁଞ୍ଚିଗଲି । "ସିଏ ପରା କେବେଠୁଁ ଜେଲ୍‌ରେ ।" "ଜେଲ୍‌ରେ ?" ମୁଁ ଚମକି ପଡ଼ିଲି । "ହଁ ଜେଲ୍‌ରେ ।" ଯେଉଁ ବାବୁଘରେ କାମ କରୁଥିଲା, ତାକୁ ଖୁନ୍ କରିଦେଲା । ତା'ପରେ କୋର୍ଟ, କଚେରୀ । କେହି ନ ଥିଲେ ତା' ପକ୍ଷରୁ । ମା' ତ କେବେଠୁଁ ମରି ସାରିଥିଲା । ଜଜ୍ ପଚାରିଲା, "ତୁ ମାରିଛୁ ?" ସେ କହିଲା, "ହଁ । ସେ ବାବୁ ମୋର ଇଜ୍ଜତ ନେବାର ଚେଷ୍ଟା କରିଥିଲା । ମୁଁ ମୋର ଇଜ୍ଜତ ବଞ୍ଚାଇବା ପାଇଁ ତାକୁ ମାରିଛି ।" ସମସ୍ତେ କହିଲେ ଖଲାସ ହୋଇଯିବ । କିନ୍ତୁ ସେ ବାବୁଜି ପୋଲିସରେ କାମ କରୁଥିଲା ନା, ତେଣୁ କ'ଣ ହେଲା ଭିତରିଆ କାରବାର ଯେ, ତାକୁ ଜୀବନସାରା ପାଇଁ ଜେଲ୍ ହୋଇଗଲା ।" "କେବେ ? କେବେ ଏ ଘଟଣା ଘଟିଲା ?" ମୁଁ ଖଟବାଡ଼ା ଉପରେ ମୁଣ୍ଡ ଡେରିଦେଲି । ଯାହାପାଇଁ ଏତେ ଦୂରରୁ ଆସିଥିଲି, ସେ ଆଜି ଜେଲ୍‌ରେ । କାହାଣୀ ଆରମ୍ଭ ହେବା

ପୂର୍ବରୁ ଶେଷ ହୋଇଗଲା । "ତୁମେ ଗଲ କଲେଜରୁ ଗାଁକୁ । ତା'ର କଛଦିନ ପରେ ତୁମକୁ ଖୋଜି ଆସିଥିଲା ଏଠିକୁ । ପୂର୍ବରୁ ଥରେ ଆସିଥିଲା ନା ତୁମ ସହିତ । ତା'ର ଦୁଇ ମାସ ପରେ ଟ ଏ ଘଟଣା ।"

"ମୋତେ ଖୋଜି ଆସିଥିଲା ?" ଅସ୍ପଷ୍ଟ ସ୍ୱରରେ ଏହି ବାକ୍ୟକୁ ଉଚ୍ଚାରଣ କରି କରି ମୁଁ ଶିଥିଳ ପାଦରେ ଦ୍ୱାରଦେଶରେ ଠିଆହେଲି । ଚନ୍ଦ୍ର ଦୂର ଦିଗ୍ ବଳୟ ତଳେ ଅସ୍ତଗାମୀ । ମନ୍ଦ ସମୀରରେ ଆଉ ସେ ମଧୁରତା ନାହିଁ । ହେନାର ଗନ୍ଧରେ ଆଉ ସେତେ ମହକ ନାହିଁ । ରାସ୍ତାଟା ଏକ କଳା ନାଗପରି ସ୍ଥିର ହୋଇ ଶୋଇ ରହିଛି । ମୁଁ ଦୀର୍ଘନିଃଶ୍ୱାସ ତ୍ୟାଗକଲି । ଯାହାହେଉ ସବୁ ବନ୍ଧନ ତୁଟିଗଲା ।



( ଲେଖକଙ୍କର ପ୍ରଥମ ପ୍ରକାଶିତ ଗଳ୍ପ । ଦୈନିକ ପ୍ରଜାତନ୍ତ୍ରର ସ୍ୱାଧୀନତା ଦିବସ ବିଶେଷାଙ୍କ । ୧୫ ଅଗଷ୍ଟ ୧୯୬୮ )

# ଚତେଶ୍ୱାପୂଳା ପବ୍ଲିକେଶନ୍ସର
# ପ୍ରକାଶିତ ପୁସ୍ତକାବଳୀ

## ପ୍ରବନ୍ଧ / ଆଲୋଚନା :

| | | | |
|---|---|---|---|
| ଲୋକ ଜୀବନ ଓ ଲୋକ ସାହିତ୍ୟ | ଅଧ୍ୟାପକ ଚୌଧୁରୀ ଅଜୟ ପ୍ରଧାନ<br>ଅଧ୍ୟାପକ ଦିଲ୍ଲୀପ କୁମାର ସ୍ୱାଇଁ | ଟ | ୮୫-୦୦ |
| ଶାରଳା ସାହିତ୍ୟରେ ନାରୀ | ଡଃ ସୁରେନ୍ଦ୍ର ନାଥ ତ୍ରିପାଠୀ | ଟ | ୮୦-୦୦ |
| ଅଭିରାମ ପରମହଂସଙ୍କ<br>ସାହିତ୍ୟ ଓ ଦର୍ଶନ | ବିଧୁପ୍ରଭା ରଥ | ଟ | ୪୫-୦୦ |
| ସୀତାକାନ୍ତ ମହାପାତ୍ରଙ୍କ<br>କାବ୍ୟମାନସ ସିଦ୍ଧି | ବିଧୁପ୍ରଭା ରଥ | ଟ | ୬୦-୦୦ |
| କଳା ସଂସ୍କୃତି | ଚିତ୍ରଶିଳ୍ପୀ ଦୁର୍ଗାପ୍ରସାଦ ଦାସ | ଟ | ୫୦-୦୦ |
| ବନମାଳୀ ସୃଷ୍ଟି ମାନସ | ସମ୍ପାଦନା-ସମରେନ୍ଦ୍ର ନାୟକ | ଟ | ୧୦୦-୦୦ |

## କାବ୍ୟ କବିତା :

| | | | |
|---|---|---|---|
| ଉର୍ମିଳା (କାବ୍ୟ) | କୃଷ୍ଣ ସିଂ | ଟ | ୬୦-୦୦ |
| ନୃତ୍ୟ ପଦ୍ମତୋଳା | ସଦାଶିବ ଦାଶ | ଟ | ୪୫-୦୦ |
| କାଳ ନିରବଧି | ସଦାଶିବ ଦାଶ | ଟ | ୩୫-୦୦ |
| ଅକ୍ଷାଂଶ ଦ୍ରାଘିମା (୨ୟ ସଂସ୍କରଣ) | ସଦାଶିବ ଦାଶ | ଟ | ୪୦-୦୦ |
| ଅବଧୂତ ଭ୍ରାନ୍ତି | ସଦାଶିବ ଦାଶ | ଟ | ୫୫-୦୦ |
| ଜୀବନ ଯେମିତି | ବ୍ରହ୍ମାନନ୍ଦ ଦାସ | ଟ | ୩୦-୦୦ |
| ଶିଖା ସ୍ୱାକ୍ଷର | ପ୍ରଶାନ୍ତ ମିଶ୍ର | ଟ | ୪୦-୦୦ |

## କ୍ଷୁଦ୍ରଗଳ୍ପ ଓ ରମ୍ୟରଚନା :

| | | | |
|---|---|---|---|
| ସାତ ସମୁଦ୍ର ତେର ନଈ | ସଦାଶିବ ଦାଶ | ଟ | ୪୦-୦୦ |
| ରବି ପୁହାଣଙ୍କ ଶ୍ରେଷ୍ଠ ଗଳ୍ପ | ରବି ପୁହାଣ | ଟ | ୫୫-୦୦ |
| ସ୍ୱପ୍ନ ସିଂହାସନରେ ପ୍ରିୟତମା | ରମେଶ ପଟ୍ଟନାୟକ | ଟ | ୫୦-୦୦ |
| ପାଦର ପାଣ୍ଡୋଇ | ଅଭିମନ୍ୟୁ ନାୟକ | ଟ | ୪୫-୦୦ |
| ସୌଜନ୍ୟ | ଅଭିମନ୍ୟୁ ନାୟକ | ଟ | ୫୦-୦୦ |

## ଜୀବନୀ ଓ ଶିଶୁ ସାହିତ୍ୟ :

| | | | |
|---|---|---|---|
| ଇତିହାସରେ ନାରୀ | ବିଭୂତି ଭୂଷଣ ପଟ୍ଟନାୟକ | ଟ | ୩୦-୦୦ |
| ହିରହାର | କୁମୁଦଲତା ମହାନ୍ତି | ଟ | ୩୦-୦୦ |
| ଝୁମୁକୁ ଝୁମା ଝୁମୁରୁ ଝାଇଁ | ବନମାଳୀ ସେନାପତି | ଟ | ୧୫-୦୦ |
| ଇକଡ଼ି ମିକଡ଼ି ଝିକଡ଼ି ଝାଇଁ | ବନମାଳୀ ସେନାପତି | ଟ | ୧୫-୦୦ |
| ତୁଳସୀର ଔଷଧୀୟ ଗୁଣ (୨ୟ ସଂସ୍କରଣ) | ଚନ୍ଦ୍ରମଣି ଭୂୟାଁ<br>ହରେକୃଷ୍ଣ ଷଡ଼ଙ୍ଗୀ | ଟ | ୧୨-୦୦ |

ପ୍ରାପ୍ତିସ୍ଥାନ :

**ଚନ୍ଦ୍ରୋତ୍ପଳା ପବ୍ଲିକେଶନ୍ସ**

ବଟେଶ୍ୱର / ସାଲେପୁର, କଟକ-୭୫୪୨୦୨

ଫୋନ୍—୦୬୭୧ / ୭୪୨୩୨୫